# ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର



ଡକ୍ଟର ସତ୍ୟନାରାୟଣ ରାଜଗୁରୁ

ଓଡ଼ିଶା ସାହିତ୍ୟ ଏକାଡେମୀ

# ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର

ଡକ୍ଟର ସତ୍ୟନାରାୟଣ ରାଜଗୁରୁ




ଓଡ଼ିଶା ସାହିତ୍ୟ ଏକାଡେମୀ

# ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର

ଲେଖକ :
ଡକ୍ଟର ସତ୍ୟନାରାୟଣ ରାଜଗୁରୁ

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୧୪

ପ୍ରକାଶ କାଳ : ୧୯୯୬

ମୁଦ୍ରଣ :
ସପ୍ତର୍ଷି ପ୍ରିଣ୍ଟର୍ସ, କଟକ-୧୦

ମୂଲ୍ୟ : ଏକାବନ ଟଙ୍କା ମାତ୍ର

# SRIPURUSOTTAMA O SRIMANDIRA

*Written by*

Dr. Satyanarayan Rajguru

*Published by*

Orissa Sahitya Akademi

Bhubaneswar-14

First Edition : 1996

Price : Rs. 51-00

ISBN No. 81-7586-009-x

# ଅଗ୍ରଲେଖ

ଓଡ଼ିଶାର ବର୍ଷୀୟାନ୍ ସାହିତ୍ୟସାଧକ ପଦ୍ମଶ୍ରୀ ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ବିଭିନ୍ନ ସମୟରେ ରଚିତ ପ୍ରବନ୍ଧଗୁଡ଼ିକ ମଧ୍ୟରୁ ୨୩ଟି ପ୍ରବନ୍ଧର ସମାହାରରେ "ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର" ନାମକ ସଂକଳନଟି ଶ୍ରୀ ଶ୍ରୀପୁରୁଷୋତ୍ତମଜଗନ୍ନାଥଙ୍କର ଚଳିତ ଶତାବ୍ଦୀର ଷଷ୍ଠ ଓ ଅନ୍ତିମ ନବକଳେବର ଅବସରରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହେବାର ସୌଭାଗ୍ୟ ଲାଭ କରିଛି । ଶ୍ରୀଜଗନ୍ନାଥ ତତ୍ତ୍ୱ ଏବଂ ଏହାର ଐତିହାସିକତା ଏବେବି ସୁସ୍ପଷ୍ଟ ନୁହେଁ ବୋଲି ବହୁ ଗବେଷକ ମତପୋଷଣ କରିଛନ୍ତି ଏବଂ ଡକ୍ଟର ରାଜଗୁରୁଙ୍କର ମତାମତ ସହିତ ସହମତି ପ୍ରକାଶ କରିବା-ପାଇଁ ଅନେକ ସମୟରେ କୁଣ୍ଠା ପ୍ରକାଶ କରିଛନ୍ତି । ତଥାପି ଉକ୍ତ ସଂକଳନରେ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକରେ ଡକ୍ଟର ରାଜଗୁରୁ ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ ଓ ଶ୍ରୀଜଗନ୍ନାଥ ସଂସ୍କୃତି ସମ୍ପର୍କରେ ଐତିହାସିକ, ପ୍ରତ୍ନତାତ୍ତ୍ୱିକ ଓ ଗବେଷଣା-ପ୍ରସୂତ ବହୁ ପ୍ରାମାଣିକ ତଥ୍ୟ ଉପସ୍ଥାପନ ପୂର୍ବକ ଶ୍ରୀମନ୍ଦିର ଇତିହାସର ବହୁ ଅଜ୍ଞାତ ତଥା ବିସ୍ମୟକର ଅଧ୍ୟାୟ ଉନ୍ମୋଚନ କରିବାପାଇଁ ସ୍ୱକୀୟ ଅଧ୍ୟବସାୟ ବଳରେ ପ୍ରୟାସ କରିଛନ୍ତି ।

ଏହି ପରିଣତ ବୟସରେ ତାଙ୍କର ଏତାଦୃଶ ଐକାନ୍ତିକ ସାରସ୍ୱତ ସାଧନା ପାଇଁ ତାଙ୍କୁ ଏକାଡେମୀ ପକ୍ଷରୁ ସାଧୁବାଦ ଜ୍ଞାପନ କରୁଛି । ଓଡ଼ିଶା ଇତିହାସର ଗବେଷଣା କ୍ଷେତ୍ରରେ ଏହି ସଂକଳନଟି ନୂତନ ତଥ୍ୟପ୍ରଦାନରେ ସହାୟକ ହେବ ବୋଲି ବିଶ୍ୱାସ କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥ ସଂସ୍କୃତିପ୍ରେମୀ ଜନସାଧାରଣଙ୍କ ଦ୍ୱାରା ଏହା ସମ୍ୟକ୍ ଆଦୃତି ଲାଭ କରିବ ବୋଲି ମୁଁ ଆଶା କରୁଛି ।

ଶ୍ରୀଗୁଣ୍ଡିଚା
ନବକଳେବର
ଜୁଲାଇ ୧୭, ୧୯୯୬

ଶ୍ରୀ ରାଜକିଶୋର ମିଶ୍ର
ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ

# ବିଷୟ-ସୂଚୀ





# ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର

ଓଡ଼ିଶାର ଦୁଇଟି ମୁଖ୍ୟ ମନ୍ଦିର ହେଉଛି, ଭୁବନେଶ୍ୱରର ଶ୍ରୀଲିଙ୍ଗରାଜ ମନ୍ଦିର ଓ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର । ପ୍ରଥମଟି ଶୈବ-କ୍ଷେତ୍ର ଓ ଦ୍ୱିତୀୟଟି ବିଷ୍ଣୁ-କ୍ଷେତ୍ର । ଧର୍ମଶାସ୍ତ୍ରୀୟ ସ୍ତରରେ ଏ ଦୁଇ କ୍ଷେତ୍ରର ପ୍ରାଧାନ୍ୟ ବହୁ କାଳରୁ ସୁପରିଚିତ । ଶ୍ରୀଲିଙ୍ଗରାଜଙ୍କର ପ୍ରାଚୀନ ନାମ ଥିଲା 'କୃତ୍ତିବାସ' ଏବଂ ଶ୍ରୀଜଗନ୍ନାଥଙ୍କ ପ୍ରାଚୀନ ନାମ 'ଶ୍ରୀପୁରୁଷୋତ୍ତମ' । ଲିଙ୍ଗରାଜ ମନ୍ଦିରର ନିର୍ମାତା ସୋମବଂଶୀୟ ମହାରାଜା ଯଯାତି ମହାଶିବଗୁପ୍ତ (୨ୟ) ବୋଲି ଐତିହାସିକ ଗବେଷଣାରୁ ଉପଲବ୍ଧ ହୋଇଛି ଏବଂ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରର ନିର୍ମାତା ଗଙ୍ଗବଂଶର ମହାରାଜା ଅନନ୍ତବର୍ମ-ଚୋଡ଼ଗଙ୍ଗ ବୋଲି ତାମ୍ରଲିପିମାନଙ୍କରୁ ପ୍ରକଟିତ ହୋଇଛି । ଉଭୟ ମନ୍ଦିର ଗାତ୍ରରେ ଯେଉଁ ଶିଳାଲିପିଗୁଡ଼ିକ ଖୋଦିତ ହୋଇଥିବା ଦେଖାଯାଏ, ସେଥିରୁ ପ୍ରମାଣିତ ହୋଇଛି ଯେ, ସୋମବଂଶୀ ରାଜାମାନଙ୍କ ନାମ ଲିଙ୍ଗରାଜ ମନ୍ଦିରରେ ନାହିଁ, କିନ୍ତୁ ଗଙ୍ଗବଂଶୀ ରାଜାମାନଙ୍କ ନାମ ସେହି ଲିପିମାନଙ୍କରେ ଖୋଦିତ ହୋଇଛି । ସେହିପରି ପୁରୀର ଶ୍ରୀମନ୍ଦିର ଗଙ୍ଗବଂଶୀୟ ରାଜାମାନଙ୍କ ମହାନ୍ କୀର୍ତ୍ତି ହୋଇଥିଲେ ସୁଦ୍ଧା ସେ ବଂଶର ରାଜାମାନେ ଓଡ଼ିଶାରେ ଦୀର୍ଘ ତିନିଶହ ବର୍ଷ ରାଜତ୍ୱ କରି ସୁଦ୍ଧା ଗୋଟିଏ ହେଲେ ଶିଳାଲେଖରେ ତାଙ୍କ ନାମ ଖୋଦିତ କରାଇ ନାହାନ୍ତି, ଅଥଚ ତାଙ୍କ ପରବର୍ତ୍ତୀ ସୂର୍ଯ୍ୟ ବଂଶୀୟ ରାଜାମାନଙ୍କ ଶିଳାଲେଖ ସେଥିରେ ପୂରି ରହିଛି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି, ଯେଉଁ ବଂଶର ରାଜା ସେହି ସେହି ମନ୍ଦିର ଗଢ଼ିଥିଲେ ସେ ବା ତାଙ୍କ ବଂଶଧର କେହି ହେଲେ ସ୍ୱୀୟ କୀର୍ତ୍ତି ପ୍ରଚାର କରି ମନ୍ଦିର ଗାତ୍ରରେ ପ୍ରଶସ୍ତିମୂଳକ ଅଭିଲେଖ ସଂଯୋଗ କରୁ ନଥିଲେ । 'ମାଦଳାପାଞ୍ଜି'ରେ ଲେଖା ଅଛି, ଶ୍ରୀମନ୍ଦିର ଗଠନ ପରେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ଦେବତାଙ୍କୁ ବର ମାଗିଥିଲେ, ତାଙ୍କ କୀର୍ତ୍ତି ପ୍ରଚାର କରିବାକୁ କେହି ଯେପରି ତାଙ୍କ ବଂଶରେ ନ ରହନ୍ତି । ଉତ୍କଳୀୟ ରାଜାମାନେ ସ୍ୱକୃତ କୀର୍ତ୍ତି ନିଜ ନିଜ ବଂଶଜଙ୍କ ଦ୍ୱାରା ମନ୍ଦିରରେ ଲିପିବଦ୍ଧ

କରିବା ଦେଖାଯାଏ ନାହିଁ । କିନ୍ତୁ ଅନ୍ୟ ବଂଶୀୟ ରାଜାମାନଙ୍କ ନିର୍ମିତ ମନ୍ଦିର ଗାତ୍ରରେ ଅଖଣ୍ଡଦୀପ କିମ୍ବା ଅନ୍ୟ କିଛି ଦେବତାଙ୍କ ଉଦ୍ଦେଶ୍ୟରେ ଦାନ ସମ୍ବଳିତ ଶିଳାଲେଖମାନ ଦେଖିବାକୁ ମିଳେ । ଏହି ମତକୁ ଭିତ୍ତି କରି ଆମ୍ଭେ ସ୍ଥିର କରିପାରୁ ଯେ, ଶ୍ରୀମନ୍ଦିର ବେଢ଼ା ଭିତରେ ଯେଉଁ ଯେଉଁ ମନ୍ଦିର ଗାତ୍ରରେ ଗଙ୍ଗବଂଶୀୟ ରାଜାମାନଙ୍କ ଦାନଲିପି ରହିଛି, ତାହା ତାଙ୍କ ପୂର୍ବବର୍ତ୍ତୀ ସୋମ କିମ୍ବା ଅନ୍ୟ ବଂଶୀୟ ରାଜାମାନଙ୍କ କୀର୍ତ୍ତି ।

ବର୍ତ୍ତମାନ ଶ୍ରୀଜଗନ୍ନାଥ ମନ୍ଦିରର ଦକ୍ଷିଣ ଭାଗରେ ଯେଉଁ ନୃସିଂହ ମନ୍ଦିର ବିଦ୍ୟମାନ, ସେଥିରେ ଗଙ୍ଗବଂଶୀୟ ମହାରାଜା ଚୋଡ଼ଗଙ୍ଗ, ତାଙ୍କ ପୁତ୍ର କାମାର୍ଣ୍ଣବ, ରାଘବ ଓ ରାଜରାଜ ଏବଂ ତାଙ୍କ ପ୍ରପୌତ୍ର ଦ୍ୱିତୀୟ ଅନଙ୍ଗଭୀମଙ୍କ ଦାନପତ୍ରଗୁଡ଼ିକ ସେହି ମନ୍ଦିର ଗାତ୍ରରେ ସଂଯୁକ୍ତ ହୋଇଛି । ତେଣୁ ନିଶ୍ଚିତ ଭାବେ ସେ ମନ୍ଦିରଟି ତାଙ୍କ ପୂର୍ବବର୍ତ୍ତୀ ସୋମବଂଶୀୟ କୌଣସି ରାଜା ନିର୍ମାଣ କରିଥିବେ । "ମାଦଳା ପାଞ୍ଜି" ଏକ କିମ୍ବଦନ୍ତୀମୂଳକ ଇତିହାସ ହେଲେ ସୁଦ୍ଧା, ସେଥିରେ ଏପରି କେତେ ବିଷୟ ଉଲ୍ଲେଖ ଅଛି, ଯାହାକି ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ଇତିବୃତ୍ତର ଅନ୍ଧକାରକୁ କିଛି କିଛି ଆଲୋକ ଦାନ କରେ । ସେଥିରେ ଲେଖା ଅଛି, ରକ୍ତବାହୁ (ଯବନର) ଆକ୍ରମଣ ବେଳେ ଶ୍ରୀବିଗ୍ରହଙ୍କୁ ସୁବର୍ଣ୍ଣପୁର ପରି ଏକ ଦୂର ଅଜ୍ଞାତ ସ୍ଥାନରେ ଲୁଚାଇ ରଖାଯାଇ ଥିଲା । ସେଥିର ବହୁ ବର୍ଷ ପରେ ଯଯାତି କେଶରୀ ଯେତେବେଳେ ଉତ୍କଳ ସିଂହାସନ ଅଧିକାର କରନ୍ତି, ସେତିକବେଳେ ସେ ଶ୍ରୀବିଗ୍ରହଙ୍କୁ ସେଠାରୁ ଉଦ୍ଧାର କରି ପୁରୁଷୋତ୍ତମ-କ୍ଷେତ୍ରରେ ପ୍ରତିଷ୍ଠା କରିଥିଲେ । ଏ ଘଟଣାର ଐତିହାସିକ ସତ୍ୟତା ଅନୁସନ୍ଧାନ କରିବାକୁ ହେଲେ, ଖ୍ରୀ: ଦଶମ ଓ ଏକାଦଶ ଶତାବ୍ଦୀରେ ସୋମବଂଶୀୟ କେଉଁ ଯଯାତି କେଶରୀ ଭୌମକର ବଂଶ ଲୋପ ହେବା ପରେ ଉତ୍କଳ ସିଂହାସନ ଅଧିକାର କରିଥିଲେ, ତାହା ସ୍ଥିର କରିବା ଆବଶ୍ୟକ ।

ସୋମବଂଶର ମୁଖ୍ୟ ରାଜଧାନୀ ସୁବର୍ଣ୍ଣପୁରଠାରେ ଯଯାତି (୧ମ) ମହାଶିବଗୁପ୍ତ ରାଜତ୍ୱ କଲେ ଖ୍ରୀଷ୍ଟ ୧୦ମ ଶତାବ୍ଦୀ ମଧ୍ୟଭାଗରେ । ତାଙ୍କ ପିତା ଜନ୍ମେଜୟ-ମହାଭବ ଗୁପ୍ତଙ୍କର ଅପର ନାମ ଥିଲା 'ସ୍ୱଭାବ ତୁଙ୍ଗ' । ତାଙ୍କ କନ୍ୟା ତ୍ରିଭୁବନ ମହାଦେବୀ ଓରଫ୍ ପୃଥ୍ୱୀ ମହାଦେବୀ ଭୌମକର ବଂଶର ଶେଷ ରାଜା କୁସୁମହାରଙ୍କ ମହିଷୀ । ରାଜାଙ୍କ ଅକାଳ ମୃତ୍ୟୁ ପରେ ରାଣୀ ପୃଥ୍ୱୀମହାଦେବୀଙ୍କ ଉପରେ ଶାସନଭାର ଅର୍ପିତ ହେଲା । ସେତେବେଳେ ଭୌମବଂଶରେ କେହି ରାଜା ନଥିବାରୁ ବିଭିନ୍ନ ଅଞ୍ଚଳରୁ ଶତ୍ରୁସେନାମାନେ

ଆସି ଉତ୍କଳ ଅଧିକାର କରିବାକୁ ଆକ୍ରମଣ ଚଳାଇଲେ । ଆଉ ମଧ୍ୟ ଉତ୍କଳର ଖଣ୍ଡପାଳ ସାମନ୍ତ ରାଜାମାନେ ବିଦ୍ରୋହରେ ଲିପ୍ତ ହେଲେ । ଏପରି ସଙ୍କଟ ପରିସ୍ଥିତିରେ ଆତ୍ମରକ୍ଷା କରିବା ଜଣେ ନିଃସହାୟା ରାଣୀ ପକ୍ଷରେ ଅସମ୍ଭବ । ତେଣୁ ସେ ନିଶ୍ଚିତ ଭାବେ ତାଙ୍କ ପିତୃରାଜ୍ୟ ଦକ୍ଷିଣ-କୋଶଳରେ ଆଶ୍ରୟ ନେଇଥିବା ଅନୁମେୟ । ଭୌମାବ୍ଦ ୧୬୮ (=ଖ୍ରୀ: ୮୯୪)ରେ ଖୋଦିତ ପୃଥ୍ୱୀମହାଦେବୀଙ୍କ ଦୁଇଟି ତାମ୍ରଶାସନ ବୌଦ୍ଧରୁ ମିଳିଥିଲା । ସେଥିରୁ ପ୍ରକଟିତ ହୋଇଛି ଯେ, ଉତ୍ତର-ତୋଶଳୀରେ ଦଣ୍ଡଭୁକ୍ତି-ମଣ୍ଡଳ ପର୍ଯ୍ୟନ୍ତ, ଅର୍ଥାତ୍ ମେଦିନୀପୁର ଜିଲ୍ଲା ପର୍ଯ୍ୟନ୍ତ ରାଜ୍ୟ ତାଙ୍କ ଅଧିକାରଭୁକ୍ତ ହୋଇଥିଲା । ସେ ନିଜକୁ "ପରମ ବୈଷ୍ଣବୀ" ଉପାଧିରେ ଭୂଷିତ କରିଥିଲେ ।

ଯେଉଁ ସମୟରେ ସେ ଉତ୍ତର-ତୋଷଳୀର ଶାସନ କାର୍ଯ୍ୟ ଚଳାଉଥିଲେ, ଠିକ୍ ସେହିକବେଳେ ଭୌମ-ରାଜବଂଶରେ ପର୍ଯ୍ୟାୟକ୍ରମେ ଦଣ୍ଡିମହାଦେବୀ, ବକୁଳ ମହାଦେବୀ ଓ ଧର୍ମମହାଦେବୀ ସେହି ରାଜବଂଶର ସର୍ବଶେଷ ଶାସନାଧିକାରିଣୀ ରୂପେ କେତୋଟି ତାମ୍ରଶାସନ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ଭୌମାବ୍ଦ ୨୦୪ (ଖ୍ରୀ:୯୪୨) ପରେ ସେମାନଙ୍କ ସମ୍ବନ୍ଧରେ ଆଉ କିଛି ସନ୍ଧାନ ମିଳିନାହିଁ । ସୁତରାଂ ଖ୍ରୀ: ୧୦ମ ଶତାବ୍ଦୀର ପ୍ରାୟ ମଧ୍ୟଭାଗରେ ସମଗ୍ର ଉତ୍କଳ, ଅର୍ଥାତ୍ ଦକ୍ଷିଣ ତୋଷଳୀର କୋଙ୍ଗଦ-ମଣ୍ଡଳ ଠାରୁ ଉତ୍ତର ତୋଷଳୀର ଦଣ୍ଡଭୁକ୍ତି-ମଣ୍ଡଳ (ଗଞ୍ଜାମ ଜିଲ୍ଲାଠାରୁ ମେଦିନୀପୁର ଜିଲ୍ଲା) ପର୍ଯ୍ୟନ୍ତ ରାଜ୍ୟରେ ଘୋର ଅରାଜକତା ସୃଷ୍ଟି ହେଲା । ଏଣୁ ଉତ୍କଳର ବିଶିଷ୍ଟ ଖଣ୍ଡପାଳ ଓ ରାଜକର୍ମଚାରୀମାନଙ୍କ ଆହ୍ୱାନ କ୍ରମେ ଯଯାତି ମହାଶିବଗୁପ୍ତ ତାଙ୍କ ଭଗ୍ନି ପୃଥ୍ୱୀ ମହାଦେବୀଙ୍କ ରକ୍ଷକ ରୂପେ ଉତ୍କଳରେ ରାଜତ୍ୱ ବିସ୍ତାର କଲେ । ସେ ତାଙ୍କ ରାଜଧାନୀ ସୁବର୍ଣ୍ଣପୁର ତ୍ୟାଗକରି ମହାନଦୀ କୂଳରେ ନିଜ ନାମରେ ଏକ ସୁରମ୍ୟନଗରୀ ପ୍ରତିଷ୍ଠା କରନ୍ତି । ତାହା 'ଯଯାତି ନଗର" ନାମରେ ପରିଚିତ ହୋଇ ସୋମବଂଶୀ ରାଜାମାନଙ୍କ ମୁଖ୍ୟ ରାଜଧାନୀରେ ପରିଣତ ହେଲା । ଆମ୍ଭେ ମନେକରୁ, ଯଯାତି (ପ୍ରଥମ)ଙ୍କ ସମୟରେ ସେହି ମହାନଗରୀକୁ ଶତ୍ରୁ ଆକ୍ରମଣରୁ ରକ୍ଷାକରିବା ସକାଶେ ମହାନଦୀ-କାଠଯୋଡ଼ି ମଧ୍ୟରେହିଁ ତାଙ୍କ ରାଜଧାନୀ ସ୍ଥାପିତ ହୋଇଥିଲା । ନଦୀବନ୍ୟାରୁ ତାହା ସୁରକ୍ଷିତ କରିବା ସକାଶେ ସୋମବଂଶୀ ରାଜାମାନେ ସେଥିରେ ପଥର-ବନ୍ଧ ସମେତ ବାରବାଟୀ-ଦୁର୍ଗ ନିର୍ମାଣ କରାଇଥିବେ ବୋଲି ଅନୁମିତ ହୁଏ । 'ମାଦଳାପାଞ୍ଜି'ରେ ତାହା "ଅଭିନବ ଯଯାତି ନଗର" ନାମରେ ପ୍ରଥମେ ପରିଚିତ ଥିଲା । କାଳକ୍ରମେ ସୋମବଂଶକୁ ଧ୍ୱଂସ କରି କଳିଙ୍ଗର ଗଙ୍ଗାବଂଶୀୟ ରାଜାମାନେ ତ୍ରୟୋଦ୍ଧ ଅଭିନବ

ଯଯାତି ନଗରର ନୂତନ ନାମକରଣ କଲେ, "ଅଭିନବ-ବାରଣାସୀ", କାରଣ ନୂତନ ରାଜଧାନୀ ନିର୍ମାଣ କରି ଶ୍ୱେତଗଙ୍ଗଙ୍କ ରାଜଧାନୀ କଳିଙ୍ଗ-ନଗରରୁ ହଟାଇ ଉତ୍କଳରେ ଏତେ ଚଞ୍ଚଳ ରାଜଧାନୀ ନିର୍ମାଣ କରି ଶାସନ କାର୍ଯ୍ୟ ଚଳାଇବା ସମ୍ଭବ ନଥିଲା ।

ଯଯାତିଙ୍କ ରାଜତ୍ୱ କାଳ ଓ ମହାନଦୀ କୂଳରେ ରାଜଧାନୀ ପ୍ରତିଷ୍ଠାର ସମୟ ପ୍ରାୟ ଖ୍ରୀ: ୯୫୦ ବୋଲି ଅନୁମିତ ହୁଏ । ସେ ତାଙ୍କ ଭଗ୍ନି 'ପରମବୈଷ୍ଣବୀ' ପୃଥ୍ୱୀ ମହାଦେବୀଙ୍କ ଇଚ୍ଛା ଅନୁସାରେ ଭୁବନେଶ୍ୱରଠାରେ ଏକ ବିଷ୍ଣୁମନ୍ଦିର ନିର୍ମାଣ କରିଥିବା ଜଣାଯାଏ । ସେହି ମନ୍ଦିରଟି ସମ୍ଭବତଃ ପରବର୍ତ୍ତୀ କାଳରେ "ପରମ ମାହେଶ୍ୱର" ଉପାଧିଧାରୀ ସୋମବଂଶୀ ରାଜାଙ୍କ ଦ୍ୱାରା ମଣିଭଦ୍ରେଶ୍ୱର-ଶିବଙ୍କୁ ଅର୍ପଣ କରାଗଲା ଓ ସେଥିର ବିଷ୍ଣୁପ୍ରତିମାଙ୍କ ପାଇଁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଅନ୍ୟ ଏକ ପ୍ରତୀକ ମନ୍ଦିର ନିର୍ମାଣ କରାଗଲା । ମଣିଭଦ୍ରେଶ୍ୱର ମନ୍ଦିରର ଚତୁଃପାର୍ଶ୍ୱରେ ଯେପରି ବିଷ୍ଣୁଙ୍କ ଦଶ ଅବତାର ପ୍ରଦର୍ଶିତ ହୋଇଛି, ଠିକ୍ ସେହିପରି ପୁରୀର ନୃସିଂହ-ମନ୍ଦିରରେ ମଧ୍ୟ ଦଶାବତାର ବିଗ୍ରହମାନ ଭିତ୍ତିଗାତ୍ରରେ ପ୍ରତିଷ୍ଠିତ । କୌଣସି ଶିବ-ମନ୍ଦିରରେ ବିଷ୍ଣୁଙ୍କ ଅବତାର ମୂର୍ତ୍ତି ପ୍ରଦର୍ଶିତ ହୁଏ ନାହିଁ । ତେଣୁ ଯଯାତି (୧ମ)ଙ୍କ ପୌତ୍ର ଯଯାତି (୨ୟ) ପୁରୀର ସେହି ବିଷ୍ଣୁ-ମନ୍ଦିରଟି ନିର୍ମାଣ କରି ସେଥିରେ ଶ୍ରୀପୁରୁଷୋତ୍ତମ (ବିଷ୍ଣୁ)ଙ୍କ ବିଗ୍ରହ ପ୍ରତିଷ୍ଠା କରିଥିବା ସମ୍ଭବ । ଏହା ପରେ ଭୁବନେଶ୍ୱରସ୍ଥ ସେହି ଅର୍ଦ୍ଧନିର୍ମିତ ବା ଭଙ୍ଗିଯାଇଥିବା ମଣିଭଦ୍ରେଶ୍ୱର ମନ୍ଦିରର ପ୍ରାଧାନ୍ୟ ନଷ୍ଟ ହେଲା । ମାଦଳାପାଞ୍ଜିରେ ବର୍ଣ୍ଣିତ ଯଯାତିକେଶରୀ ସୋମବଂଶୀୟ ମହାରାଜା ଯଯାତି (୨ୟ) ବୋଲି କୁହାଯାଇପାରେ । କାରଣ ବହୁ ଦେଶ ଜୟକରି ଯେଉଁ ସମ୍ପଦ ସେ ଅର୍ଜନ କରିଥିଲେ, ସେଥିରେ ବିରାଟ ଆକାରରେ ଶ୍ରୀଲିଙ୍ଗରାଜ ମନ୍ଦିର ପରି ଏକ ମନ୍ଦିର ନିର୍ମାଣ କରିଥିବା ସମ୍ଭବ । ତାଙ୍କ ରାଣୀ, କୋଳାବତୀ-ଦେବୀ, ଭୁବନେଶ୍ୱରଠାରେ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କଲେ । ସେଥିରେ ଗୋଟିଏ ଶିଳାଲେଖରେ ସେ ନିଜ ରାଜବଂଶର ସୁନ୍ଦର ପ୍ରଶସ୍ତିମୂଳକ ନ' ଗୋଟି ଶ୍ଳୋକ ମହାକବି ଓ ପଣ୍ଡିତ ପୁରୁଷୋତ୍ତମ ଭଟ୍ଟଙ୍କ ଦ୍ୱାରା ଲେଖାଇ ଅଛନ୍ତି । ଯଯାତି (୨ୟ) ଜଣେ ପରମ ରାଜନୀତିଜ୍ଞ ଓ ବିଜୟୀ ବୀର ରୂପେ ତାମ୍ରଶାସନ-ମାନଙ୍କରେ ବର୍ଣ୍ଣିତ ହୋଇ ଅଛନ୍ତି । ସୁତରାଂ ଭୁବନେଶ୍ୱରର ମଣିଭଦ୍ରେଶ୍ୱର ମନ୍ଦିରରେ ଯେପରି ଦଶାବତାର ବିଗ୍ରହ ସ୍ଥାପିତ ହୋଇଛନ୍ତି, ସେପରି ପୁରୀର ନୂତନ ବିଷ୍ଣୁ ମନ୍ଦିରଟି ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଗଠନକରି ସେଥିରେ ଶ୍ରୀପୁରୁଷୋତ୍ତମ (ନାରାୟଣ)ଙ୍କ ଚତୁର୍ଭୁଜବିଶିଷ୍ଟ ବିଗ୍ରହ ସ୍ଥାପନ କରିଥିବା ସମ୍ଭବ ବୋଲି ସ୍ଥିର କରାଯାଇପାରେ ।

ଖ୍ରୀ: ୧୦ମ ଶତାବ୍ଦୀ ପୂର୍ବରୁ ଯେଉଁ ପୁରୁଷୋତ୍ତମଙ୍କୁ ଓଡ୍ର ଦେଶର ତୀର୍ଥରାଜ—ମହୋଦଧି କୂଳରେ ସ୍ଥାପନ କରାଯାଇଥିଲା; ସେହି ଭଗବାନଙ୍କ ଶ୍ରୀମୁଖକୁ ଦର୍ଶନ କରି ଦାମୋଦର ନାମକ ଜଣେ ଶିଶୁ ସମୁଦ୍ରରେ ସ୍ନାନ କଲାବେଳେ ଜଳମଗ୍ନ ହୋଇ ଜୀବନ ବିସର୍ଜନ କରିଥିଲା । ଏ ପ୍ରସଙ୍ଗଟି ମଧ୍ୟ-ପ୍ରଦେଶସ୍ଥ ମହସ୍ଥାର ସରସ୍ୱତୀ ମନ୍ଦିରସ୍ଥ ଶିଳାଲେଖରେ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଛି—

"ସମୁଦ୍ରମଜ୍ଜନାଲ୍ଲୁନମୋଡ୍ରେଷୁ ପୁରୁଷୋତ୍ତମମ୍ ।
ଦୃଷ୍ଟ୍ୱା ଭବାନ୍ତକେ ଭୂୟଃ ପୂରାଚ୍ଛେତ୍ୟସ୍ୟଂଶିଶୁଃ ॥"

ସେହି ଅଭିଲେଖର ସମୟ ଖ୍ରୀ: ୧୦ମ ଶତାବ୍ଦୀର ମଧ୍ୟଭାଗ ବୋଲି ଡାଃ ଦିନେଶଚନ୍ଦ୍ର ସରକାର ଲିପିତତ୍ତ୍ୱ ଦୃଷ୍ଟିରୁ ନିରୂପଣ କରିଛନ୍ତି । ଆଉ ମଧ୍ୟ ସମୁଦ୍ର ତଟବର୍ତ୍ତୀ ତମାଳତରୁଶୋଭିତ କୁଞ୍ଜମଧ୍ୟରେ ଶ୍ରୀପୁରୁଷୋତ୍ତମଙ୍କ ଯାତ୍ରା ସମୟରେ ମହାକବି ମୁରାରିଙ୍କ "ଅନର୍ଘ-ରାଘବ—ନାଟକ" ମଞ୍ଚସ୍ଥ ହୋଇଥିବା ବିଷୟ ସେଥିରେ ବର୍ଣ୍ଣିତ ହୋଇଅଛି । କବି ମୁରାରିଙ୍କ ସମୟ ମଧ୍ୟ ୧୦ମ ଶତାବ୍ଦୀ ବୋଲି ପଣ୍ଡିତମାନେ ସ୍ଥିର କରନ୍ତି । ଏ ଦୃଷ୍ଟିରୁ ବିଚାର କଲେ, ଖ୍ରୀ: ୧୦ମ ଶତାବ୍ଦୀ ମଧ୍ୟ ଭାଗରେ ଯଦି ସିନ୍ଧୁତଟରେ ଶ୍ରୀପୁରୁଷୋତ୍ତମ ସ୍ଥାପିତ ହୋଇଥିବେ, ତା'ହେଲେ ଖ୍ରୀ. ୧୧ଶ ଶତାବ୍ଦୀର ପ୍ରଥମ ଭାଗରେ ଯଯାତି (୨ୟ)ଙ୍କ ରାଜତ୍ୱ କାଳରେ ନୃସିଂହ-ମନ୍ଦିର ପୁରାରେ ନିର୍ମିତ ହୋଇ ସେଥିରେ ନୀଳ-ପ୍ରସ୍ତରରେ ନିର୍ମିତ, ଅର୍ଥାତ୍ ମୁରାରିଙ୍କ ବର୍ଣ୍ଣିତ "ମହାନୀଳମଣି" ଭଗବାନଙ୍କୁ ସ୍ଥାପନ କରାଯାଇଥିବା ସମ୍ଭବ । ତେଣୁ "ମାଦଳାପାଞ୍ଜି"ରେ ବର୍ଣ୍ଣିତ ଯଯାତି କେଶରୀଙ୍କୁ ଆମେ ସୋମବଂଶୀ ଯଯାତି (୨ୟ)ଙ୍କ ସଙ୍ଗେ ଚିହ୍ନିତ କରିବା ଯୁକ୍ତିଯୁକ୍ତ । ପ୍ରଥମେ କୁହାଯାଇଛି ଯେ, ଯେଉଁ ରାଜବଂଶ ମନ୍ଦିର ଗଠନ ରୂପକ କୀର୍ତ୍ତି ସ୍ଥାପନ କରିଥାନ୍ତି, ସେଥିରେ ସେହି ରାଜବଂଶର ପ୍ରଶସ୍ତି କିମ୍ବା ନାମ ଶିଳାଲିପିରେ ଖୋଦିତ ହୋଇ ନଥାଏ । ଏ ନିୟମ ଯେପରି ଲିଙ୍ଗରାଜ ମନ୍ଦିରରେ ପାଳିତ ହୋଇଅଛି, ସେପରି ନୃସିଂହ ମନ୍ଦିରରେ ମଧ୍ୟ ପାଳିତ ହୋଇଥିବା ସମ୍ଭବ । ତେଣୁ ସେଥିରେ କୌଣସି ସୋମବଂଶୀ ରାଜାଙ୍କ ନାମ ଖୋଦିତ ହୋଇନାହିଁ, କିନ୍ତୁ ଗଙ୍ଗବଂଶୀୟ ରାଜାମାନଙ୍କ ନାମ ହିଁ ଖୋଦିତ ହୋଇଥିବା ଦେଖାଯାଏ ।

ଖ୍ରୀ: ୧୧୧୨ରେ ଶ୍ୱେତଗଙ୍ଗ ଚୋଡ଼ଗଙ୍ଗ ଉତ୍କଳରେ ଆସି ଉତ୍କଳରେ ରାଜ୍ୟସ୍ଥ ରାଜବଂଶ ପ୍ରତିଷ୍ଠା କରନ୍ତି । ତଦବଧି ତାଙ୍କ ବଂଶଧରମାନେ ଉତ୍କଳକୁ

ଏଠାକୁ ଆସି ଶ୍ରୀପୁରୁଷୋତ୍ତମଙ୍କୁ "ଅଖଣ୍ଡ-ଦୀପ" ଦାନକରି ତାଙ୍କ ମନ୍ଦିରରେ ଶିଳାଲିପିମାନ ସଂଯୁକ୍ତ କଲେ । ୧୧୨୬ ଖ୍ରୀଷ୍ଟାବ୍ଦ ପରେ ଚୋଡ଼ଗଙ୍ଗ ତଥା ତାଙ୍କ ପରବର୍ତ୍ତୀ ଗଙ୍ଗରାଜାମାନଙ୍କ 'ଶ୍ରାଦ୍ଧ' ବା 'ଅଙ୍କ' ସେହି ଶିଳାଲେଖମାନଙ୍କରେ ଖୋଦିତ ହେଲା । ଏଥିରୁ ଅନୁମିତ ହୁଏ ଯେ, ଗଙ୍ଗଶାସନ ସେ ସମସ୍ତ ପର୍ଯ୍ୟନ୍ତ, ଅର୍ଥାତ୍ ଖ୍ରୀ. ୧୧୨୬ ପର୍ଯ୍ୟନ୍ତ, ଉତ୍କଳରେ ସଂସ୍ଥାପିତ ହୋଇ ପାରି ନଥିଲା । ହୁଏତ ଉତ୍କଳରେ ଅରାଜକଜନିତ ଉପଦ୍ରବ ଦମନ କରି ଶାନ୍ତି ଶୃଙ୍ଖଳା ରକ୍ଷା କରିବାକୁ ଦକ୍ଷିଣରୁ କେତେକ ଉଚ୍ଚ ରାଜକର୍ମଚାରୀ ନିଯୁକ୍ତ ହୋଇଥିଲେ । ସେମାନେ ମଧ୍ୟ କେତେକ ଦାନ-ଶାସନରେ ଦକ୍ଷିଣର ପ୍ରଚଳିତ ତେଲୁଗୁ ଲିପି ଓ ଭାଷାରେ ଶିଳାଲିପିମାନ ଖୋଦିତ କରାଇଥିବା ଦେଖାଯାଏ । ରାମାନୁଜଙ୍କ ଶ୍ରୀବୈଷ୍ଣବ ସମ୍ପ୍ରଦାୟର ପ୍ରାଧାନ୍ୟ ହେତୁ ଗଙ୍ଗରାଜାମାନେ ଦାକ୍ଷିଣାତ୍ୟରୁ ବହୁ କବି, ପଣ୍ଡିତ ଓ ସେନାଧିନାୟକଙ୍କୁ ଆଣି ଉତ୍କଳରେ ନିଯୁକ୍ତ କରିଥିଲେ । କେବଳ ସେତିକି ନୁହେଁ, ମହାରାଜ ଚୋଡ଼ଗଙ୍ଗ ନିଜେ ମଧ୍ୟ ସଂସ୍କୃତ ସାହିତ୍ୟ ଓ ରାଜନୀତିରେ ପ୍ରବୀଣତା ଲାଭ କରିଥିବାରୁ "ଅଭିନବ-ରାଜନୀତି" ନାମକ ଗ୍ରନ୍ଥ ପ୍ରଣୟନ କରି ତଦନୁସାରେ ତାଙ୍କ ଶାସନ ପାଇଁ ନୂତନ ସମ୍ବିଧାନ ଗଠନ କରିଥିଲେ । ତାଙ୍କ ରାଜତ୍ୱ ପୂର୍ବରୁ ସୋମବଂଶୀ ରାଜାମାନେ ବିଭିନ୍ନ ପ୍ରକାରେ ଶୁଳ୍କ ପ୍ରଜାମାନଙ୍କଠାରୁ ସଂଗ୍ରହ କରୁଥିବା ପ୍ରସଙ୍ଗ ଉଦ୍ୟୋତ କେଶରୀଙ୍କଠାରୁ ଆରମ୍ଭ କରି ସୋମବଂଶୀ ରାଜମାନଙ୍କ ତାମ୍ରଶାସନ ଗୁଡ଼ିକରୁ ପ୍ରକଟିତ ହୁଏ । ସେସବୁ କରଗୁଡ଼ିକ 'ଧର୍ମଶାସ୍ତ୍ର' କିମ୍ବା ପୁରାଣାଦି ପ୍ରାଚୀନ ଗ୍ରନ୍ଥମାନଙ୍କରେ ସୂଚିତ ହୋଇନାହିଁ । କଠୋର କର ଭାରରେ ପ୍ରଜାମାନଙ୍କ ଆର୍ଥିକ ମେରୁଦଣ୍ଡ ଯେ ଭାଙ୍ଗି ପଡ଼ିଥିବ, ଏହା ସୁବିଦିତ । ତେଣୁ ରାଜ୍ୟସାରା ପ୍ରଜାଙ୍କ ମନରେ ଅଶାନ୍ତି-ବହ୍ନି କୁହୁଳି ସୋମବଂଶର ଧ୍ୱଂସ ପାଇଁ କାରଣ ହେଲା ବୋଲି କୁହାଯାଇପାରେ । ଉତ୍କଳ ଜୟ ପରେ ଚୋଡ଼ଗଙ୍ଗ ସେଥିର ନିରାକରଣ ପାଇଁ ନୂତନ "ରାଜନୀତି" ବା ସମ୍ବିଧାନ ଉତ୍କଳରେ ପ୍ରବର୍ତ୍ତିତ କଲେ । ଏ ବିଷୟ ନୃସିଂହ-ମନ୍ଦିରରୁ ପ୍ରାପ୍ତ ଏକ ଶିଳାଲେଖରେ ଚୋଡ଼ଗଙ୍ଗଙ୍କ ପ୍ରଶସ୍ତିରେ ସୂଚିତ ହୋଇଅଛି ।

ପ୍ରଜାମାନଙ୍କ ହିତରେ ରାଜାଙ୍କ ହିତ । ଏ ନୀତି କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ସ୍ପଷ୍ଟଭାବେ ଲେଖାଅଛି—

"ପ୍ରଜାସୁଖେ ସୁଖଂ ରାଜ୍ଞଂ ପ୍ରଜାନାଂ ଚ ହିତେ ହିତମ୍ ।
ନାତ୍ମପ୍ରିୟଂ ହିତଂ ରାଜ୍ଞଂ ପ୍ରଜାନାଂ ତୁ ପ୍ରିୟଂ ହିତମ୍ ॥

ଶ୍ୱେଡ଼ଗଙ୍ଗଙ୍କ ଶାସନ-ପଦ୍ଧତି ପ୍ରଜାମାନଙ୍କ ଅନୁକୂଳ ପ୍ରୀତିବର୍ଦ୍ଧନ କରିବାରୁ ସେ ଶ୍ରୀଜଗନ୍ନାଥଙ୍କ ଅତ୍ୟୁଚ୍ଚ ପ୍ରାସାଦ ନିର୍ମାଣ କରିବାକୁ ସମର୍ଥ ହେଲେ । କିନ୍ତୁ ତାଙ୍କ ଜୀବିତକାଳ ମଧ୍ୟରେ ସେହି ମନ୍ଦିରରେ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ପ୍ରତିଷ୍ଠା ହୋଇ ପାରି ନଥିଲା । ସେଥିର ସ୍ପଷ୍ଟ ନିଦର୍ଶନ ନୃସିଂହ-ମନ୍ଦିରରୁ ପ୍ରାପ୍ତ ଶିଳାଲେଖଗୁଡ଼ିକରୁ ପ୍ରତିପାଦିତ ହୁଏ । ସେହି ଶିଳାଲିପିମାନଙ୍କରୁ ଅଧିକାଂଶ ହେଉଛି, ଶ୍ରୀପୁରୁଷୋତ୍ତମଙ୍କୁ 'ଅଖଣ୍ଡ-ଦୀପ' ଦାନ ଏବଂ ତାହା ମହାରାଜା ଶ୍ୱେତଗଙ୍ଗ ଓ ପରବର୍ତ୍ତୀ ଗଙ୍ଗରାଜାମାନଙ୍କ ସମୟର ଲିପି ।

'ଅଖଣ୍ଡ-ଦୀପ' ଯେଉଁ ଦେବତାଙ୍କ ନାମରେ ରାଜାମାନେ ସ୍ଥାପନ କରନ୍ତି, ତାହା ସେହି ଦେବତାଙ୍କ ପ୍ରତିଷ୍ଠିତ ମନ୍ଦିରଗାତ୍ରରେହିଁ ସଂଲଗ୍ନ ହୋଇଥାଏ । ଏ ନିୟମ ଉତ୍କଳ ତଥା କଳିଙ୍ଗରେ ସର୍ବତ୍ର ପ୍ରଚଳିତ ହୋଇଅଛି । ସୁତରାଂ ଯେଉଁ ମନ୍ଦିରଟି ମୁକ୍ତିମଣ୍ଡପର ପଶ୍ଚିମଭାଗରେ ଅବସ୍ଥିତ ଓ 'ନୃସିଂହ-ମନ୍ଦିର' ନାମରେ ଏବେ ପରିଚିତ; ତାହା ଯେ ନିଶ୍ଚିତ ଭାବେ ଗଙ୍ଗବଂଶୀୟ ରାଜାମାନଙ୍କ ପୂର୍ବରୁ ନିର୍ମିତ ହୋଇଥିଲା ଓ ସେଥିରେ ଶ୍ରୀପୁରୁଷୋତ୍ତମ (ନୀଳମାଧବ)ଙ୍କ ଚତୁର୍ଭୁଜ-ମୂର୍ତ୍ତି ଗଙ୍ଗବଂଶୀୟ ମହାରାଜା ଶ୍ୱେଡ଼ଗଙ୍ଗ ଓ ତାଙ୍କ ପରବର୍ତ୍ତୀ ରାଜାମାନଙ୍କ ରାଜତ୍ୱକାଳ ପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇ ଥିଲେ, ଏଥିରେ ଆଦୌ ସନ୍ଦେହ ନାହିଁ । ତେଣୁ କେବଳ ଶ୍ରୀପୁରୁଷୋତ୍ତମ ନାମରେ 'ଅଖଣ୍ଡ-ଦୀପ' ସେହି ମନ୍ଦିରରେ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ଦାନ କରାଯାଇଥିଲା । ଶ୍ୱେତଗଙ୍ଗଙ୍କ ମୃତ୍ୟୁପରେ ତାଙ୍କ ପ୍ରଥମପୁତ୍ର କାମାର୍ଣ୍ଣବଦେବଙ୍କ ୫ମ ଅଙ୍କରେ ଅର୍ଥାତ୍ ଖ୍ରୀ: ୧୧୫୦-୫୧ରେ, କଳିଙ୍ଗର ସୁରପୋରୁ ନାମକ ଜଣେ ଭରଦ୍ୱାଜ ଗୋତ୍ରୀୟ ରାଜକର୍ମଚାରୀ ଶ୍ରୀପୁରୁଷୋତ୍ତମଙ୍କୁ ସେହି ମନ୍ଦିରରେ ଅଖଣ୍ଡ-ଦୀପ ଦାନ କରିଥିବା ବିଷୟ ସେ ମନ୍ଦିରର ଏକ ଶିଳାଲେଖରେ ବର୍ଣ୍ଣିତ ହୋଇଅଛି । ଏପର୍ଯ୍ୟନ୍ତ ସେଠାରୁ ପ୍ରାପ୍ତ କୌଣସି ଲିପିରେ ନୃସିଂହ କିମ୍ବା ଅନ୍ୟ କେଉଁ ଦେବତାଙ୍କ ନାମ ଖୋଦିତ ନହୋଇ କେବଳ ଶ୍ରୀପୁରୁଷୋତ୍ତମଙ୍କ ନାମରେହିଁ ସମସ୍ତ ଦୀପଦାନ ବିଷୟ ଖୋଦିତ ହୋଇଅଛି ।

ବର୍ତ୍ତମାନ ଏକ କ୍ଷୁଦ୍ର ନୃସିଂହ ବିଗ୍ରହ ସେଥିରେ କେବେ ଓ କେଉଁ କାରଣରୁ ସ୍ଥାପିତ ହେଲେ, ଜଣା ନଗଲେ ସୁଦ୍ଧା ତାଙ୍କ ଆକୃତି ଦୃଷ୍ଟିରୁ ସେ କଦାପି ଶଂସିତ ମନ୍ଦିରର ମୌଳିକ ଦେବତା ବୋଲି କହିବା ସତ୍ୟର ଅପଲାପ ମାତ୍ର । ବିଶେଷତଃ, ସେହି ମନ୍ଦିରର ଚତୁଃପାର୍ଶ୍ୱସ୍ଥ ଭିତ୍ତିଗାତ୍ରରେ ବିଷ୍ଣୁଙ୍କ ଦଶ-ଅବତାର

ବିଗ୍ରହ ସ୍ଥାପିତ ହୋଇଛି, ସେଥିରେ ଗୋଟିଏ ବିଗ୍ରହ ନୃସିଂହରୂପେ ପ୍ରଦର୍ଶନ କରାଯାଇଛି । ବିଷ୍ଣୁଙ୍କ ଅଂଶାବତାର ରୂପେ ସେହି ବିଗ୍ରହ ମନ୍ଦିରର ବହିର୍ଭାଗ ଭିତ୍ତିଗାତ୍ରରେ ମଧ୍ୟ ପ୍ରତିଷ୍ଠିତ, ସେ ମୁଖ୍ୟ ଦେବତା ରୂପେ ସେହି ମନ୍ଦିରରେ କିପରି ବା ପୂଜିତ ହୋଇ ପାରନ୍ତି ?

ଏଠାରେ ପ୍ରଶ୍ନ ହୋଇପାରେ, ଯଦି ନୃସିଂହ ମୂର୍ତ୍ତି ସେ ମନ୍ଦିରରେ ପ୍ରତିଷ୍ଠା ଲାଭ କରି ନଥିଲେ, ତେବେ ଶ୍ରୀପୁରୁଷୋତ୍ତମଙ୍କ ମୁଖ୍ୟବିଗ୍ରହ ଗଲେ କୁଆଡ଼େ ? ପୁଣି କାହିଁକି ତାଙ୍କୁ ସେ ମନ୍ଦିରରୁ ସ୍ଥାନାନ୍ତରିତ କରାଗଲା ?

ଦ୍ୱିତୀୟୋକ୍ତ ପ୍ରଶ୍ନର ଉତ୍ତରରେ କୁହାଯାଇପାରେ ଯେ, ନୃସିଂହ ମନ୍ଦିର ଏକଦା ଆଂଶିକ ଭଗ୍ନ ପଡ଼ିଥିଲା । ତେଣୁ ପରବର୍ତ୍ତୀ କୌଣସି ଗଙ୍ଗରାଜାଙ୍କ ଦ୍ୱାରା ସେଥିର ଭଗ୍ନ ଅଂଶଟି ଅର୍ଥାତ୍ ମନ୍ଦିରର ଉତ୍ତର ଓ ପଶ୍ଚିମ ଭିତ୍ତିର ସଂସ୍କାର ତଥା ପୁନଃନିର୍ମାଣ ବେଳେ ଶିଳ୍ପୀମାନଙ୍କ ଅସାବଧାନତା ଯୋଗୁଁ ସେ ଅଂଶରେ ଥିବା ଲିପିସମ୍ବଳିତ ପ୍ରସ୍ତର ଖଣ୍ଡମାନ ଭିତ୍ତିଗାତ୍ରର ଭିତର ଅଂଶରେ ରହି ଅକ୍ଷରର କିଛି ଅଂଶ ବାହାରକୁ ଦେଖାଯାଉଛି; ଅର୍ଥାତ୍ ଫଳକରେ ଖୋଦିତ ହୋଇଥିବା କେତେ ଅଂଶ ବାହାରେ ଓ କେତେ ଅଂଶ ଭିତରେ ଯୋଡ଼ା ହୋଇ ଯାଇଛି । ଏହା ବ୍ୟତୀତ ଦଶଅବତାର ମୂର୍ତ୍ତିଗୁଡ଼ିକ ପୂର୍ବ ଏବଂ ଦକ୍ଷିଣ ଦିଗର ଭିତ୍ତିରେ ଠିକ୍ ବିଧିବଦ୍ଧ ପର୍ଯ୍ୟାୟ ରକ୍ଷାକରି ମତ୍ସ୍ୟ ପରେ କଚ୍ଛପ, ତା'ପରେ ବରାହ, ନୃସିଂହ ଓ ବାମନଙ୍କ ପର୍ଯ୍ୟନ୍ତ ଠିକ୍ ରହିଥିବା ସ୍ଥଳେ, ପର୍ଶୁରାମଙ୍କଠାରୁ ଆରମ୍ଭକରି ସେଥିର କ୍ରମବିପର୍ଯ୍ୟୟ ସୃଷ୍ଟି ହୋଇଥିବା ଦେଖାଯାଏ । ଏଣୁ ମନ୍ଦିରର ଉତ୍ତର ଓ ପଶ୍ଚିମ ଭାଗଟି ପୁନଃ ନିର୍ମାଣ ହୋଇଥିବା ସ୍ପଷ୍ଟ ପ୍ରମାଣିତ ହୁଏ । ମନ୍ଦିର ଭଗ୍ନ ପଡ଼ିଲା ପରେ ସେଥିରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କ ମୂଳ ବିଗ୍ରହ ସ୍ଥାନାନ୍ତରିତ କରି ଅନ୍ୟ ଏକ ମନ୍ଦିର ତାଙ୍କ ପାଇଁ ଗଢ଼ାଇ ସେଥିରେ ବିଜେ କରାଯାଇଥିବା ସମ୍ଭବ । କାରଣ ଧର୍ମଶାସ୍ତ୍ରାନୁସାରେ ପୀଠରୁ ବିଚ୍ୟୁତ ହୋଇଥିବା ଦେବତା ସେଠାରେ ଆଉ ପୁନଃପ୍ରତିଷ୍ଠିତ ହେବା ନିଷେଧ । (*)

---

(*) Ibid. P. 904, 'ଦେବ ପ୍ରତିଷ୍ଠା ତତ୍ତ୍ୱ' ସମ୍ପର୍କରେ ବ୍ରହ୍ମପୁରାଣୋକ୍ତ ବିଧି ହେଉଛି, When an image is removed from its Pedestal, ...God ceases to indwell therein'· (Kane)

ଆମ୍ଭେ ମନେକରୁ ଶ୍ରୀପୁରୁଷୋତ୍ତମଙ୍କ ସେହି ମୌଳିକ ବିଗ୍ରହ ଏବେ 'ସତ୍ୟନାରାୟଣ' ନାମରେ ଶ୍ରୀମନ୍ଦିରର ଅଗ୍ନି କୋଣର ଏକ କ୍ଷୁଦ୍ର ମନ୍ଦିରରେ ସ୍ଥାପିତ ହୋଇଅଛନ୍ତି ।

'ମତ୍ସ୍ୟପୁରାଣ' ଅନୁସାରେ, କୌଣସି ମନ୍ଦିରର ସମ୍ମୁଖ ଦ୍ୱାରର ଉଚ୍ଚତା ଓ ସେଥିରେ ପ୍ରତିଷ୍ଠିତ ଦେବ ବିଗ୍ରହଙ୍କ ଉଚ୍ଚତା ନିମ୍ନୋକ୍ତ ପଦ୍ଧତିରେ ଗଠନ କରିବା ଆବଶ୍ୟକ ।

ସମ୍ମୁଖ ଦ୍ୱାରର ଉଚ୍ଚତାରୁ ଏକ ସପ୍ତମାଂଶକୁ ବାଦ୍ ଦେଇ, ଅବଶିଷ୍ଟ ଷଷ୍ଠାଂଶକୁ ତିନିଭାଗରେ ବିଭକ୍ତ କରି ସେଥିରୁ ଗୋଟିଏ ଭାଗର ଉଚ୍ଚତା ସଙ୍ଗେ ଦେବତାଙ୍କ ସିଂହାସନର ଉଚ୍ଚତା ଏବଂ ଅବଶିଷ୍ଟ ଦୁଇଭାଗର ଉଚ୍ଚତା ସଙ୍ଗେ ପ୍ରତିଷ୍ଠିତ ଦେବବିଗ୍ରହଙ୍କ ଉଚ୍ଚତା ସମାନ କରି ଗଠନ କରିବା ଆବଶ୍ୟକ । (** **)

ଏ ଦୃଷ୍ଟିରୁ ନୃସିଂହ-ମନ୍ଦିରର ସମ୍ମୁଖ ପ୍ରବେଶ ଦ୍ୱାରର ଉଚ୍ଚତା ୯'୫ ଫୁଟ ଓ ସତ୍ୟନାରାୟଣ (ଚତୁର୍ଭୁଜ ମାଧବ)ଙ୍କ ଉଚ୍ଚତା ଆନୁମାନିକ ଭାବେ ମାପ କରିବାରୁ ତାହା ୫.୪ ଫୁଟ ବୋଲି ଜଣାଗଲା । ତେଣୁ ମତ୍ସ୍ୟପୁରାଣୋକ୍ତ ପରିମାଣ ଠିକ୍ ବୋଲି ସ୍ଥିର କରିଛୁ । ବାସ୍ତବରେ ନୃସିଂହ ମନ୍ଦିରରେ ସ୍ଥାପିତ ନୃସିଂହ-ବିଗ୍ରହ ମନ୍ଦିରର ଉଚ୍ଚତା ଦୃଷ୍ଟିରୁ ନିତାନ୍ତ କ୍ଷୁଦ୍ର ଏବଂ ସତ୍ୟନାରାୟଣଙ୍କ ପରି ବିଗ୍ରହ ଉଚ୍ଚତା ଦୃଷ୍ଟିରୁ ସେ ରହିଥିବା ମନ୍ଦିରଟି ନିତାନ୍ତ କ୍ଷୁଦ୍ର । ଏ ଅସାମଞ୍ଜସ୍ୟ ଉଭୟ ପକ୍ଷରେ ଦେଖାଯାଉ ଥିବାରୁ ପୁଣି ନୃସିଂହ ମନ୍ଦିରରେ ପ୍ରତିଷ୍ଠିତ ଦେବତାଙ୍କ ଉଚ୍ଚତା ସଙ୍ଗେ ପୁରାଣୋକ୍ତ ନିୟମାନୁସାରେ ସତ୍ୟନାରାୟଣଙ୍କ ବିଗ୍ରହର ସାମଞ୍ଜସ୍ୟ ରହିଥିବାରୁ ନୃସିଂହ ମନ୍ଦିର ଭାଙ୍ଗି ପଡ଼ିବା ପୂର୍ବରୁ ସେଥିରେ ଚତୁର୍ଭୁଜ ବିଶିଷ୍ଟ ଶ୍ରୀପୁରୁଷୋତ୍ତମଙ୍କ ପାଷାଣ ବିଗ୍ରହ ସ୍ଥାପିତ ହୋଇଥିବା ସୁନିଶ୍ଚିତ । ଆଉ ମଧ୍ୟ, 'ମାଦଳା-ପାଞ୍ଜି'ର ଅର୍ଦ୍ଧସତ୍ୟ କିମ୍ବଦନ୍ତୀ ଅନୁଯାୟୀ ସେ ବିଗ୍ରହ ସମୁଦ୍ର ତଟରୁ ଅଣାଇ ମହାରାଜା ଯଯାତି-କେଶରୀ ଓରଫ୍ ମହାଶିବଗୁପ୍ତ ତାଙ୍କୁ ନୃସିଂହ-ମନ୍ଦିରରେ ସ୍ଥାପନ କରିଥିଲେ । ତେଣୁ ପରବର୍ତ୍ତୀ ଗଙ୍ଗବଂଶୀୟ ମହାରାଜ ଚୋଡ଼ଗଙ୍ଗ ଓ ତାଙ୍କର ପୁତ୍ର କାମାର୍ଣ୍ଣବ ଦେବଙ୍କ ରାଜତ୍ୱ କାଳରେ ସେଠାରେ ଶ୍ରୀପୁରୁଷୋତ୍ତମଙ୍କ ନାମରେ 'ଅଖଣ୍ଡ-ଦୀପ' ଦାନ କରାଯାଇଥିଲା ।

---

(** **) Vide P. V. Kane, History of Dharmasastra, Vol-II, pt. II, p. 716.

ଉପରୋକ୍ତ ସିଦ୍ଧାନ୍ତ ଅନୁସାରେ ଶ୍ରୀପୁରୁଷୋତ୍ତମ (ମାଧବ) ଯଦି ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ପାଷାଣ-ବିଗ୍ରହ ହୋଇଥିବେ, ତା'ହେଲେ ତାଙ୍କ ମୂର୍ତ୍ତି ପରବର୍ତ୍ତୀ କାଳରେ ପୁନଃନିର୍ମିତ ନୃସିଂହ ମନ୍ଦିରରେ ସ୍ଥାପନ ନକରି ମହାରାଜା ଅନଙ୍ଗଭୀମ ଦେବଙ୍କ ସମୟରେ ବଳରାମ ଓ କମଳାକ୍ଷ ଦେବ (ଶ୍ରୀକୃଷ୍ଣ)ଙ୍କ ବିଗ୍ରହ ସେଥିରେ କିଏ ବା କାହିଁକି ସ୍ଥାପନ କରିଥିଲେ ତାହା ସ୍ପଷ୍ଟ ଜଣାଯାଉ ନାହିଁ । ତେବେ ଶ୍ରୀବୈଷ୍ଣବ ତଥା ଭାଗବତ ପୁରାଣୋକ୍ତ ବୈଷ୍ଣବଧର୍ମାବଲମ୍ବୀ ଗୁରୁଙ୍କ ଉପଦେଶକ୍ରମେ ହୁଏତ ଏପରି ଉଭୟ ଦେବତାଙ୍କ ବିଗ୍ରହ ସେ ମନ୍ଦିରରେ ପ୍ରତିଷ୍ଠା କରାଗଲା । ସେଥିର ଦକ୍ଷିଣ ଦିଗ ଭିତ୍ତିଗାତ୍ରରୁ ଉଦ୍ଧୃତ ଏକ ଓଡ଼ିଆ ଶିଳାଲେଖ ଅନୁସାରେ, ତୃତୀୟ ଅନଙ୍ଗଭୀମଙ୍କ ୩୭ ଅଙ୍କ (=ଖ୍ରୀ: ୧୨୪୧)ରେ "ଶ୍ରୀ ବଳଭଦ୍ର ଦେବ ଓ ଶ୍ରୀ କମଳାକ୍ଷ ଦେବଙ୍କ ଅମୃତ ମଣୋହିକ ପଡ଼ା ଦାତବ୍ୟଂ" ବୋଲି ଜଣେ ଶ୍ରୀକରଣ (ରାଜକର୍ମଚାରୀ) ଦାନ କରିଥିଲେ । ସେହି ଦୁଇ ଦେବତାଙ୍କ ଭକ୍ତ ରୂପେ ସେ ନିଜକୁ ପରିଚିତ କରିଥିବା ପ୍ରସଙ୍ଗ ଉକ୍ତ ଶିଳାଲିପିରେ ଉଲ୍ଲେଖ ହୋଇଅଛି । ସୁତରାଂ ଖ୍ରୀ: ୧୨୪୧ ସାଲରେ ଶ୍ରୀ ବୈଷ୍ଣବଗୁରୁଙ୍କ ଉପଦେଶ କ୍ରମେ ସେହି ମନ୍ଦିରରେ ଚତୁର୍ଭୁଜ ବିଷ୍ଣୁଙ୍କ ସ୍ଥାନରେ ବଳଭଦ୍ର ଓ କୃଷ୍ଣଙ୍କ ବିଗ୍ରହ ସ୍ଥାପିତ ହୋଇଥିବ । ଆଉମଧ୍ୟ ସେହି ବିଗ୍ରହଙ୍କ ତତ୍‌ପାର୍ଶ୍ୱବର୍ତ୍ତୀ ଶ୍ରୀମନ୍ଦିରରେ 'ଅମୃତ ମଣୋହି' ପାଇଁ ପଡ଼ା (ଗ୍ରାମ) ଦାନକରି ସେଥିର ଆଦେଶ ନୃସିଂହ-ମନ୍ଦିର ଗାତ୍ରରେ ଖୋଦିତ କରାଯାଇଥିଲା । 'ଅଖଣ୍ଡ-ଦୀପ' ଦାନ ବ୍ୟତୀତ ଦେବତାଙ୍କ ଉଦ୍ଦେଶ୍ୟରେ ଯେଉଁ ଅନ୍ୟ ଦାନ କରାଯାଏ, ତାହା କୌଣସି ମନ୍ଦିର ଗାତ୍ରରେ ମଧ୍ୟ ସଂଲଗ୍ନ କରିବା ନିୟମ ପ୍ରଚଳିତ ଥିବା ଜଣାଯାଏ । ସେଥିର ନିଦର୍ଶନ ରୂପେ ଶ୍ରୀମନ୍ଦିରର ଉତ୍ତର ପାର୍ଶ୍ୱରେ ଥିବା ପାତାଳେଶ୍ୱର-ଶିବ ମନ୍ଦିର ଗାତ୍ରରେ ମହାରାଜା ଅନଙ୍ଗଭୀମ ଦେବଙ୍କ ୩୧ ଅଙ୍କରେ ଓ ୧୧୫୮ ଶକାବ୍ଦ (=ଖ୍ରୀ ୧୨୩୭)ରେ ହଳୀ, ଚକ୍ରୀ ଓ ସୁଭଦ୍ରାଙ୍କ ନୈବେଦ୍ୟ ପ୍ରକାଶେ ଦୁଇବାଟି ପାଞ୍ଚମାଣ ଜମି ଦାନ କରାଯାଇଥିବା ପ୍ରସଙ୍ଗ ଉଲ୍ଲେଖ ହୋଇଅଛି । ଏଣୁ ଦେବତାଙ୍କ ଭୋଗ ନୈବେଦ୍ୟ ପ୍ରକାଶେ ପ୍ରଦତ୍ତ ସମ୍ପତ୍ତି ଯେପରି ପାତାଳେଶ୍ୱର ମନ୍ଦିର ଶିଳାଲେଖରେ ରହି ତାହା ଖ୍ରୀ: ୧୨୩୭ରେ ଖୋଦିତ ହୋଇଥିଲା, ଠିକ୍ ସେପରି ଖ୍ରୀ: ୧୨୪୧ରେ ବଳଭଦ୍ର ଓ କମଳାକ୍ଷ (କୃଷ୍ଣ)ଙ୍କ ପାଇଁ ପ୍ରଦତ୍ତ 'ଅମୃତ ମଣୋହି' ବିଷୟକ ଦାନ ପ୍ରସଙ୍ଗ ନୃସିଂହ ମନ୍ଦିରର ଶିଳାଲିପିରେ ଖୋଦିତ ହୋଇଥିବା ସୁନିଶ୍ଚିତ । ମହାରାଜା ଅନଙ୍ଗଭୀମ-ଦେବ ଖ୍ରୀ: ୧୨୩୦ରେ ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା କରିଥିବା ବିଷୟ ତାଙ୍କ ନଗରୀ ଶିଳାଲେଖରୁ ପ୍ରମାଣିତ ହୁଏ । ୧୨୩୦ ଖ୍ରୀଷ୍ଟାବ୍ଦରେ ପୁରୀର ଶ୍ରୀମନ୍ଦିରରେ ଶ୍ରୀପୁରୁଷୋତ୍ତମ)ଙ୍କ ସଙ୍ଗେ ବଳଭଦ୍ର ଓ ସୁଭଦ୍ରାଙ୍କୁ ପ୍ରତିଷ୍ଠା କରାଯାଇ-

ଥିବାରୁ ୧୨୩୭ରେ ତାଙ୍କର ଭୋଗ ପ୍ରକାଶେ ଘୃତ-ବ୍ୟଞ୍ଜନ, ଦଧି, ତାମ୍ବୂଳ ସଙ୍ଗେ 'ଜଉଠ ପୂଲ' ଭୋଗ ବ୍ୟବସ୍ଥା ସମ୍ପନ୍ନ ହୋଇଥିଲା, ଯାହାକି ପାତାଳେଶ୍ୱର-ଅଭିଲେଖରେ ବର୍ଣ୍ଣିତ ହୋଇଅଛି । ସେପରି ଜଣେ ଭକ୍ତ ବଳଭଦ୍ର ଓ ଶ୍ରୀକୃଷ୍ଣଙ୍କ ଅମୃତ ମଣୋହି ପାଇଁ ଗୋଟିଏ ପଡ଼ା (ଗ୍ରାମ) ଦାନ କରିଥିବା ପ୍ରସଙ୍ଗ ନୃସିଂହ-ମନ୍ଦିରସ୍ଥ ଶିଳାଲେଖରେ ଖ୍ରୀ: ୧୨୪୧ରେ ଖୋଦିତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତୃତୀୟ ଅନଙ୍ଗଭୀମଙ୍କ ଅଚଳାଭକ୍ତି ଶ୍ରୀପୁରୁଷୋତ୍ତମଙ୍କଠାରେ ଥିଲା । ସେ ଉତ୍କଳର ସୁବୃହତ୍ ପ୍ରାସାଦ ଶ୍ରୀମନ୍ଦିରରେ ତିନି ମୂର୍ତ୍ତିଙ୍କୁ ସ୍ଥାପନା କରି ବିରାଟ ଆକାରରେ ଧର୍ମଶାସ୍ତ୍ରୋକ୍ତ ବିଧି ପ୍ରକାରେ ଶ୍ରୀମନ୍ଦିରର ପ୍ରତିଷ୍ଠା କାର୍ଯ୍ୟ ସମ୍ପନ୍ନ କରିଥିଲେ । ସେହି ପ୍ରତିଷ୍ଠାର ଆଚାର୍ଯ୍ୟରୂପେ ବରିତ ହୋଇଥିଲେ, କଶ୍ୟପ ଗୋତ୍ରୀୟ ଚନ୍ଦ୍ରକର ଶର୍ମା । ତାଙ୍କୁ ଏବଂ ଅନ୍ୟ କେତେକ ବ୍ରାହ୍ମଣଙ୍କୁ କିଛିର ଭୂଦାନ କରିଥିବା ପ୍ରସଙ୍ଗ ଅନଙ୍ଗଭୀମଙ୍କ ନଗରୀ-ତାମ୍ରଶାସନରେ ୧୧୫୨ ଶକାବ୍ଦ (ଖ୍ରୀ: ୧୨୩୦)ରେ ବର୍ଣ୍ଣିତ ହୋଇଅଛି । ଯଥା...“ ...ଶ୍ରୀପୁରୁଷୋତ୍ତମସ୍ୟ ପ୍ରତିଷ୍ଠା ସମୟେ କାଶ୍ୟପସ୍ୟ ଗୋତ୍ରାଚାର୍ଯ୍ୟ ଚନ୍ଦ୍ରକର ଶର୍ମଣେ ବ୍ରାହ୍ମଣାୟ ଚ ଦ୍ୱିବାଟି ପରିମିତାମ୍ଭୂମି ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ପ୍ରୀତୟେ ଧାରାପୂର୍ବକମାଚନ୍ଦ୍ରାର୍କ-ମୁପଭୋଗାୟାକାଶୀକୃତ୍ୟ ପ୍ରଦାତ୍ ।...” (*) ଡ଼. ଦୀନେଶ ଚନ୍ଦ୍ର ସରକାର ୧୯୪୯ ସାଲରେ ଏହା ପାଠ କଲାବେଳକୁ ନୃସିଂହ ମନ୍ଦିରର ଶିଳାଲେଖ ଆବିଷ୍କୃତ ହୋଇ ନଥିଲା । ତେଣୁ ଶ୍ରୀମନ୍ଦିର ନିର୍ମାତା ଗଙ୍ଗେଶ୍ୱରଙ୍କ ଦେବ ସେଥିରେ ବଳଭଦ୍ର, ସୁଭଦ୍ରା ଓ ପୁରୁଷୋତ୍ତମଙ୍କ ବିଗ୍ରହ ପ୍ରତିଷ୍ଠା କରିଥିବା ସମ୍ଭବ ବୋଲି ଐତିହାସିକମାନେ ସ୍ଥିର କରିଥିଲେ । ଏ ଦୃଷ୍ଟିରୁ ଅନଙ୍ଗଭୀମ ତୃତୀୟଙ୍କ ପିତା ରାଜରାଜ (ତୃତୀୟ)ଙ୍କ ଦାସଗୋବା ତାମ୍ରଶାସନୋକ୍ତ ଶ୍ଳୋକରେ ପ୍ରକଟିତ ଶ୍ରୀମନ୍ଦିରର ନିର୍ମାତା ଗଙ୍ଗେଶ୍ୱରଙ୍କ ସେଥିର ପ୍ରତିଷ୍ଠାତା ବୋଲି ଦୃଢ଼ ଧାରଣା ଜନ୍ମିଥିଲା । ଏ ଦୃଷ୍ଟିରୁ ଡ଼ାକ୍ତର ସରକାର ଏବଂ ଅନ୍ୟାନ୍ୟ ଐତିହାସିକମାନେ (ଆମ୍ଭେ ସମସ୍ତେ) ସ୍ଥିର କରିଥିଲୁ ଯେ, ମହାରାଜ ଅନଙ୍ଗଭୀମ ମହାନଦୀ ଅର୍ଥାତ୍ ଚିତ୍ରୋତ୍ପଳା ନଦୀ ତଟରେ ଯେଉଁ ପୁରୁଷୋତ୍ତମଙ୍କୁ ସ୍ଥାପନ କରି ସେଥିର ନିତ୍ୟ ଦର୍ଶନ ଆଶାରେ ବାରଣାସୀ-କଟକ ରାଜଧାନୀଠାରେ

---

(*) Ep. Ind, Vol. XXVIII, pp, 235-258, Text lines 138-140.

ମନ୍ଦିର ନିର୍ମାଣ କରିଥିଲେ, ସେଥିର ପ୍ରତିଷ୍ଠା ପ୍ରସଙ୍ଗ ଏଥିରେ ଉଲ୍ଲେଖ ହୋଇଅଛି । ଲିଖିତ ତାମ୍ରଶାସନରେ ଶକାବ୍ଦ ୧୧୫୧ ଓ ୧୧୫୨ (=ଖ୍ରୀ: ୧୨୨୯ ଓ ୧୨୩୦) ଦୁଇବର୍ଷ ମଧ୍ୟରେ ବିଭିନ୍ନ ସମୟରେ କରାଯାଇଥିବା ଭୂଦାନ ବିଷୟ ଉଲ୍ଲେଖ ହୋଇଅଛି । ସେଥିରୁ ଗୋଟିଏ ଦାନ ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ସମୟରେ ଏବଂ ଅନ୍ୟଟି ଅଭିନବ-ବାରଣାସୀଠାରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କ ସନ୍ନିଧିରେ ମକର ଅମାବାସ୍ୟା ତିଥିରେ (ଖ୍ରୀ: ୧୪।୫। ୧୨୩୦) ବିଷ୍ଣୁଧର୍ମୋତ୍ତରେ 'ଦାନସାଗର' ନାମରେ ଭୂ-ଦାନ ସମ୍ପନ୍ନ ହୋଇଥିଲା । ଏଥିରୁ ପ୍ରମାଣିତ ହେଉଛି ଯେ, "ଅଭିନବ ବାରଣାସୀସ୍ଥିତ ଶ୍ରୀପୁରୁଷୋତ୍ତମ" ଏବଂ ଶ୍ରୀକ୍ଷେତ୍ରର ଶ୍ରୀପୁରୁଷୋତ୍ତମ ଏକା ବିଗ୍ରହ ନୁହନ୍ତି, ତା' ହେଲେ "ଅଭିନବ-ବାରଣାସ୍ୟାଂ ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ସନ୍ନିଧୌ" ବୋଲି ଲେଖିବା ପରିବର୍ତ୍ତେ "ଶ୍ରୀପୁରୁଷୋତ୍ତମସ୍ୟ ସନ୍ନିଧୌ" ବୋଲି ଲେଖା ହୋଇଥାନ୍ତା । ବାସ୍ତବରେ ଶ୍ରୀପୁରୁଷୋତ୍ତମସ୍ୟ ପ୍ରତିଷ୍ଠା ସମୟେ" ବୋଲି ଯେଉଁ ଦାନରେ ଲେଖା ଅଛି, ତାହା ସର୍ବଜନ-ବିଦିତ ପୁରୁଷୋତ୍ତମ କ୍ଷେତ୍ରର ଶ୍ରୀପୁରୁଷୋତ୍ତମ ହୋଇଥିବାରୁ ସେଥିରେ "ଅଭିନବବାରଣସ୍ୟାଂ ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ପ୍ରତିଷ୍ଠା ସମୟେ" ବୋଲି ସ୍ଥାନ ନିର୍ଦ୍ଦେଶ କରିବା ଆବଶ୍ୟକ ହେଲାନାହିଁ । ଏ ଦୃଷ୍ଟିରୁ ବିଚାର କଲେ, ଖ୍ରୀ: ୧୨୩୦ ସାଲରେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓ ସେଥିରେ ପ୍ରତିଷ୍ଠିତ ବିଗ୍ରହ-ମାନଙ୍କ ପ୍ରତିଷ୍ଠା ମହାରାଜା ତୃତୀୟ ଅନଙ୍ଗଭୀମ ଦେବ ସମ୍ପନ୍ନ କରିଥିଲେ । ସୁତରାଂ "ମାଦଳାପାଞ୍ଜି"ରେ ଅନଙ୍ଗଭୀମ ଦେବ ଶ୍ରୀମନ୍ଦିରର ପ୍ରତିଷ୍ଠା କରିଥିବା ବର୍ଣ୍ଣିତ ହୋଇଅଛି । ତାଙ୍କ ବୃଦ୍ଧ ପ୍ରପିତାମହ ଚୋଡଗଙ୍ଗ ଦେବ ହିଁ ମନ୍ଦିର ଅତି ଉଚ୍ଚତମ କରି ପ୍ରାଥମିକ ସ୍ତରରେ ଗଠନ ଶେଷ କରିଥିଲେ ମଧ୍ୟ ବହୁକାଳ ଯାଏ ସେଥିର କାରୁକାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ନଥିଲା । ତେଣୁ ସେଥିରେ ଦେବତାଙ୍କ ପ୍ରତିଷ୍ଠା ମଧ୍ୟ ସମ୍ଭବ ହୋଇ ନଥିଲା । ଉତ୍କଳର ଉତ୍ତର ପୂର୍ବାଞ୍ଚଳରେ ଯବନ (ମୁସଲମାନ), ପଶ୍ଚିମରେ ଚେଦି ଓ ଦକ୍ଷିଣରେ ଚାଲୁକ୍ୟ ରାଜାମାନଙ୍କ ଘନ ଘନ ଆକ୍ରମଣ ହେତୁ ରାଜ୍ୟବ୍ୟାପୀ ଅଶାନ୍ତି ତଥା ରାଜକୋଷର ଶୂନ୍ୟତା ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା କାର୍ଯ୍ୟରେ ବାଧା ସୃଷ୍ଟି କରିଥିଲା ।

ଇତିହାସରୁ ପ୍ରମାଣିତ ହୁଏ ଯେ, ଅନଙ୍ଗଭୀମଙ୍କ ରାଜତ୍ୱ କାଳରେ ଶତ୍ରୁ-ରାଜାମାନେ ସମ୍ପୂର୍ଣ୍ଣଭାବେ ପରାଜିତ ହୋଇଥିଲେ ଓ ତାଙ୍କ ସାମ୍ରାଜ୍ୟ ସମୃଦ୍ଧିଶାଳୀ ହୋଇଥିଲା । ଶତ୍ରୁ ରାଜାମାନଙ୍କ ଭଣ୍ଡାରରୁ ଯୁଦ୍ଧ ପରେ ଅପର୍ଯ୍ୟାପ୍ତ ପରିମାଣ ଧନ ମିଳିବାରୁ ରାଜକୋଷ ପୂର୍ଣ୍ଣ ହେଲା । କିନ୍ତୁ ଯୁଦ୍ଧରୁ ଉପଲବ୍ଧ ଧନ

ଶାସ୍ତ୍ରୋକ୍ତ ବିଧି ଅନୁସାରେ ଧର୍ମପ୍ରାଣ ଅନଙ୍ଗଭୀମ ତାହା ଦେବତା ଓ ବ୍ରାହ୍ମଣମାନଙ୍କ ଦାନ କାର୍ଯ୍ୟରେହିଁ ବ୍ୟୟିତ କରିଥିଲେ । ସୁତରାଂ ନଗରୀ-ତାମ୍ରଶାସନୋକ୍ତ ବିଭିନ୍ନ ପ୍ରକାର ଦାନ ସଙ୍ଗେ ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ମହାସମାରୋହରେ ସମ୍ପନ୍ନ ହୋଇଥିଲା । ଯାଗଯଜ୍ଞାଦି କର୍ମରେ ପ୍ରଥମେ ନୃସିଂହଙ୍କ ପ୍ରତିମା ସ୍ଥାପନ କରି ତାଙ୍କର ପୂଜା ସମ୍ପନ୍ନ କରିବା ବିଧି ଧର୍ମଶାସ୍ତ୍ରରେ ଉଲ୍ଲେଖ ଅଛି । ସେହି ନୃସିଂହଙ୍କ ବିଗ୍ରହଙ୍କୁ ଯଜ୍ଞ-ନୃସିଂହ ନାମରେ ପରିଚିତ କରାଯାଏ । ବୋଧହୁଏ, ଶ୍ରୀମନ୍ଦିର ପ୍ରତିଷ୍ଠା ପାଇଁ ଯେଉଁ 'ଯଜ୍ଞ-ନୃସିଂହ' ପୂଜିତ ହୋଇଥିଲେ, ତାଙ୍କୁ ନୃସିଂହ ମନ୍ଦିରରେ ସ୍ଥାପନ କରିଥିବାରୁ ସେହି ମନ୍ଦିର ପରବର୍ତ୍ତୀ ୧୩ଶ ଶତାବ୍ଦୀ ବେଳେ ନୃସିଂହଙ୍କ ନାମରେ ପରିଚିତ ହେଲା । ଏଣୁ ମହାରାଜା ଯଯାତିଙ୍କ ରାଜତ୍ୱ କାଳରେ ଖ୍ରୀଷ୍ଟ ଏକାଦଶ ଶତାବ୍ଦୀର ଶ୍ରୀପୁରୁଷୋତ୍ତମ ମନ୍ଦିର ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ, ଅର୍ଥାତ୍ ପ୍ରାୟ ଦୁଇଶହ ବର୍ଷ ପରେ "ନୃସିଂହ-ମନ୍ଦିର"ରେ ପରିଣତ ହୋଇଥିବା ସୁନିଶ୍ଚିତ ।

—o—

# ଶ୍ରୀମନ୍ଦିରର ନିର୍ମାତା କିଏ ?

ଓଡ଼ିଶାର ପୁଣ୍ୟକ୍ଷେତ୍ର ନୀଳାଚଳ ଧାମ ନୀଳ ତରଙ୍ଗ ସଙ୍କୁଳ ସିନ୍ଧୁକୂଳରେ କେଉଁ ଆଦିମ କାଳରୁ ପ୍ରାଧାନ୍ୟ ବିସ୍ତାର କରିଥିଲା, ସେ କଥା ଇତିହାସରେ ନିର୍ଣ୍ଣୟ କରିଯାଇ ନାହିଁ । ପୌରାଣିକ ଆଖ୍ୟାନ ତଥା କିମ୍ବଦନ୍ତୀ-ମୂଳକ ମାଦଳା ପାଞ୍ଜିର ବିବରଣୀଗୁଡ଼ିକୁ ଭିତ୍ତିକରି କୁହାଯାଇଛି, ସୃଷ୍ଟିର ଆଦ୍ୟ ଯୁଗରୁ ଏ କ୍ଷେତ୍ର ପୁରୁଷୋତ୍ତମ (ବିଷ୍ଣୁ)ଙ୍କ ଲୀଳାସ୍ଥଳୀ ହୋଇଥିଲା । ସେଠାରେ ଆଦିବାସୀ ଶବରମାନେ 'ନୀଳମାଧବ' ନାମରେ ବିଷ୍ଣୁ ପ୍ରତିମା ସ୍ଥାପନ କରି ତାଙ୍କୁ ଆରାଧନା କରୁଥିଲେ । କାଳକ୍ରମେ ବିଦ୍ୟାପତି ନାମକ ଜଣେ ବ୍ରାହ୍ମଣଙ୍କଠାରୁ ସେହି ବିଷ୍ଣୁ ପ୍ରତିମାଙ୍କ ମାହାତ୍ମ୍ୟ ଅବଗତ ହୋଇ ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନ ସେହି ନୀଳାଚଳ କ୍ଷେତ୍ରରେ ଗୋଟିଏ ବିରାଟ ମନ୍ଦିର ନିର୍ମାଣ କଲେ । କିନ୍ତୁ ନୀଳମାଧବ ମୂର୍ତ୍ତି ଅନ୍ତର୍ହିତ ହେବାରୁ ଶ୍ରୀପୁରୁଷୋତ୍ତମଙ୍କ ଦାରୁ ପ୍ରତିମା ଗଠନ କରାଇ ସେହି ମନ୍ଦିରରେ ପ୍ରତିଷ୍ଠା କରାଗଲା । ଏ ସମ୍ବନ୍ଧେ ମାନ୍ଦ୍ରାଜ ଓରିଏଣ୍ଟାଲ୍ ମେନୁସ୍କ୍ରିପ୍ଟ୍ ଲାଇବ୍ରେରୀ (Madras Oriental Manuscript library)ରେ ମେକାଞ୍ଜି ସାହେବଙ୍କ ଦ୍ୱାରା ସଂଗୃହୀତ ମାଦଳା ପାଞ୍ଜିର ତେଲୁଗୁ ତର୍ଜମାଟି ରକ୍ଷିତ ଅଛି, ତାହା ଇଂରେଜମାନେ ଓଡ଼ିଶାରେ ଆଧିପତ୍ୟ ବିସ୍ତାର କରିବା ପୂର୍ବରୁ ପାଞ୍ଜିର ଅବିକଳ ଅନୁବାଦ । ଇଂରେଜମାନେ ଓଡ଼ିଶାକୁ ଆସି ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନା ଭାର ନେଇଥିଲେ । ସେତେବେଳେ ଓଡ଼ିଶାରେ ପାଇକ ବିଦ୍ରୋହ ଆରମ୍ଭ ହୋଇଯାଇଥିଲା । ତା' ପରେ ଖ୍ରୀଷ୍ଟିୟାନ୍ ସରକାର ହିନ୍ଦୁ ମନ୍ଦିରର ପରିଚାଳନା ଭାର ଛାଡ଼ିବାକୁ ଇଚ୍ଛା କଲେ । ସେତେବେଳେ ମନ୍ଦିରରେ ନିଯୁକ୍ତ କର୍ମଚାରୀ ଓ ରାଜାଙ୍କର ଅଧିକାର ଯାହା କି ପୂର୍ବରୁ ନିରୂପିତ ହୋଇଥିଲା, ତଦନୁସାରେ ମନ୍ଦିରର ସମସ୍ତ ସ୍ୱତ୍ୱ ହସ୍ତାନ୍ତର କରି ଦେବାକୁ କଟକ କଲେକ୍ଟର ଇଂରେଜ ସାହେବ ଇଚ୍ଛାକଲେ । ଏହା ଫଳରେ ପ୍ରାଚୀନ 'ମାଦଳା ପାଞ୍ଜି'ର କେତେକ ଅଂଶ ଲୁପ୍ତ ହେଲା ଏବଂ କେତେକ ନୂତନ ଅଂଶ ସେଥିରେ ଯୋଡ଼ି ଦିଆଗଲା । ଏ ଦୃଷ୍ଟିରୁ ବିଚାର କଲେ ମେକାଞ୍ଜି ସାହେବଙ୍କ ନିର୍ଦ୍ଦେଶରେ ସଂଗୃହୀତ ତେଲୁଗୁ ତର୍ଜମାଟି ଅଧିକ ବିଶ୍ୱାସଯୋଗ୍ୟ ବୋଲି ମନେହୁଏ । ତଥାପି ସେଥିରେ ମନ୍ଦିର ନିର୍ମାଣ ସମ୍ପର୍କରେ ଯେଉଁ କିମ୍ବଦନ୍ତୀ ବର୍ଣ୍ଣିତ ହୋଇଅଛି, ତାହା ଐତିହାସିକ ଭିତ୍ତିରେ ଅଦ୍ୟାପି ପ୍ରତିଷ୍ଠିତ ହୋଇ ପାରିନାହିଁ । ମନ୍ଦିର ନିର୍ମାତା ଇନ୍ଦ୍ରଦ୍ୟୁମ୍ନ କିଏ ?

ଏ କଥା କୌଣସି ଐତିହାସିକ ବିବରଣୀରୁ ଜଣା ପଡ଼ୁନାହିଁ । ଆନୁମାନିକ ସିଦ୍ଧାନ୍ତ ଉପରେ ନିର୍ଭର କରି କୌଣସି ସତ୍ୟ ନିରୂପିତ ହୋଇପାରେ ନାହିଁ । ତେଣୁ ଏହି ପ୍ରବନ୍ଧରେ ଯଥାସମ୍ଭବ ଐତିହାସିକ ଘଟଣାବଳୀ ଓ ସମସାମୟିକ ଅଭିଲେଖମାନଙ୍କରୁ ସଂଗୃହୀତ ବିଷୟବସ୍ତୁ ଏକତ୍ର କରି, ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ କେବେ କାହା ଦ୍ୱାରା ଆରମ୍ଭ ହୋଇଥିଲା ଏବଂ କାହା ଦ୍ୱାରା ତାହା ସମ୍ପୂର୍ଣ୍ଣ ଆକାର ଧାରଣ କରିଥିଲା, ସେଥିର ସମ୍ୟକ୍ ଆଲୋଚନା କରିବୁ ।

ଶ୍ରୀନୀଳାଚଳ ଧାମର ପ୍ରସିଦ୍ଧି ଖ୍ରୀ: ୮ମ ବା ୯ମ ଶତାବ୍ଦୀରେ ଥିବା କଥା ମୁରାରି କବିଙ୍କ ରଚିତ 'ଅନର୍ଘ ରାଘବ' ନାଟକରୁ ପ୍ରତିପାଦିତ ହୁଏ । କାରଣ ସିନ୍ଧୁତଟରେ ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ବିଷୟ ସେ ବର୍ଣ୍ଣନା କରିଅଛନ୍ତି । ମୁରାରିଙ୍କ ସମୟ ଖ୍ରୀ: ୯ମ ଶତାବ୍ଦୀ ବୋଲି ଜଣାଯାଏ । କୃଷ୍ଣମିଶ୍ରଙ୍କ ରଚିତ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟକ ଖ୍ରୀ: ୧୦୭୮ରେ ରଚିତ ହୋଇଥିଲା । ସେଥିରେ ମଧ୍ୟ ଶ୍ରୀପୁରୁଷୋତ୍ତମଙ୍କ ବନ୍ଦନା-ଶ୍ଲୋକ ଦେଖାଯାଏ । ଖ୍ରୀ: ୧୦ମ ଶତାବ୍ଦୀରେ ମଧ୍ୟପ୍ରଦେଶସ୍ଥ ମୈହାରଠାରେ ପ୍ରତିଷ୍ଠିତ ଶାରଦା ମନ୍ଦିରର ଏକ ଅଭିଲେଖରୁ ପ୍ରକଟିତ ହୁଏ ଯେ, ଓଡ୍ର ଦେଶରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପ୍ରତିଷ୍ଠିତ ।

ଜୟପାଳଙ୍କ ୧୫ ଅଙ୍କରେ ଖୋଦିତ ଗୟାର ଜଣେ ବ୍ରାହ୍ମଣ ରାଜା ବିଶ୍ୱରୂପଙ୍କ ଅଭିଲେଖରେ ଓଡ଼ିଶାର ଶ୍ରୀପୁରୁଷୋତ୍ତମଙ୍କ ବନ୍ଦନା ଶ୍ଲୋକ ନିମ୍ନ ପ୍ରକାରେ ଦିଆଯାଇଛି—

ଲକ୍ଷ୍ମୀସ୍ଥିରଂଜୟତି ବାରନିଧେରନେକ—
ମହାକୁଳାଦଧିଗତା ପୁରୁଷୋତ୍ତମସ୍ୟ ।
ସ୍ନହ୍ୟତ୍ତିର୍ବେଲ୍ଲିତସମ୍ମଦ ଘୂର୍ଣ୍ଣମାନ ।
ନେତ୍ରାବଲୋକନ ନିରସ୍ତ ସମସ୍ତ ବିଘ୍ନା ॥ ୧

ଏହି ଅଭିଲେଖର ସଠିକ୍ କାଳ ହେଉଛି ଖ୍ରୀ: ୧୦୫୫ ଏହା ପୂର୍ବରୁ ଜୟପାଳଙ୍କ ସମୟରେ ଖୋଦିତ ଗୟାର ଅନ୍ୟ ଏକ ଅଭିଲେଖରେ ମଧ୍ୟ ଶ୍ରୀପୁରୁଷୋତ୍ତମଙ୍କୁ ନିମ୍ନ ପ୍ରକାରେ ବନ୍ଦନା କରାଯାଇଛି :

ଜୟତି ଜଗନ୍ନାଥଃ ପ୍ରସ୍ଫୁରଚ୍ଚାରୁମୂର୍ତ୍ତି—
ଜଂଗଦାର ବିନିହନ୍ତା ଶ୍ରୀମଦେକୋ ମୁରାରିଃ ।

ତଦନ୍ତୁ ମୁକ୍ତଜନୋସ୍ୟଂ ଦୂରହଂକ୍ଲେଶସଂହିଃ
ସ୍ଫୁରଦମଳଗୁଣାଢ୍ୟୋ ଧ୍ୟାନବୃନ୍ଦୌ ସ୍ଥିରସ୍ୟ ॥

ଏହି ଦ୍ୱିତୀୟ ଅଭିଲେଖର ସମୟ ଖ୍ରୀ: ୯ମ ଶତାବ୍ଦୀର ସପ୍ତଦଶକ ବୋଲି ଜଣାଯାଏ । କିନ୍ତୁ ଏଥିରେ ଦେବତାଙ୍କ ନାମ ଜଗତନାଥ (ଜଗନ୍ନାଥ) ଥିବାରୁ ଓ ମୁରାରି ଆଖ୍ୟାରେ ମଧ୍ୟ ତାଙ୍କୁ ଅଭିହିତ କରାଯାଇ ଥିବାରୁ ସେ ପୁରୀର ଶ୍ରୀପୁରୁଷୋତ୍ତମ କିମ୍ବା ଅନ୍ୟ କେଉଁ ମନ୍ଦିରରେ ପ୍ରତିଷ୍ଠିତ ବିଷ୍ଣୁ, ତାହା ସ୍ପଷ୍ଟ ଜଣା ପଡୁନାହିଁ । ତଥାପି ସେହି ଅଭିଲେଖ ଆରମ୍ଭରେ ଖୋଦିତ ଅଛି :—

"ଓଁ ନମୋ ପୁରୁଷୋତ୍ତମାୟ ନମଃ" ॥

ଏଣୁ ଜଗତନାଥ ଯେ ପୁରୁଷୋତ୍ତମଙ୍କ ନାମାନ୍ତର ଏହା କହିଲେ ବୋଧହୁଏ ଅସଙ୍ଗତ ହେବ ନାହିଁ । ୧୧୦୪ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ମଣ ଦେବଙ୍କ ନାଗପୁର ଅଭିଲେଖରେ ମଧ୍ୟ ବର୍ଣ୍ଣିତ ଅଛି ଯେ, ସେ ପୁରୁଷୋତ୍ତମ କ୍ଷେତ୍ରକୁ ଯାଇଥିଲେ (୩) । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି, ଖ୍ରୀ: ୯ମ ଶତାବ୍ଦୀରୁ ଆରମ୍ଭକରି ପୁରୁଷୋତ୍ତମ କ୍ଷେତ୍ର ଓଡ଼ିଶାରେ ଏକ ପୁଣ୍ୟ ବିଷ୍ଣୁକ୍ଷେତ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା । ବିଭିନ୍ନ ଅଞ୍ଚଳରୁ ତୀର୍ଥଯାତ୍ରୀମାନେ ସେଠାକୁ ଯାତ୍ରା କରୁଥିଲେ ।

ଗଙ୍ଗବଂଶୀୟ ମହାରାଜ ଅନନ୍ତ ବର୍ମ ଚୋଡ଼ଗଙ୍ଗ ଦେବ ଉତ୍କଳର ସୋମବଂଶୀୟ ରାଜା କର୍ଣ୍ଣ କେଶରୀଙ୍କୁ ପରାସ୍ତକରି ଖ୍ରୀ: ୧୨ଶ ଶତାବ୍ଦୀର ପ୍ରଥମ ଦଶକରେ କଳିଙ୍ଗ ଏବଂ ଉତ୍କଳ ଉଭୟ ରାଜ୍ୟକୁ ଏକତ୍ରିତକରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର ହେଲେ । ସେତେବେଳେ ତାଙ୍କ ନିର୍ଦ୍ଦେଶରେ ବିରାଟ ଆକାରରେ ଶ୍ରୀଜଗନ୍ନାଥ ମନ୍ଦିର ପୁରୀରେ ନିର୍ମିତ ହେବା ପ୍ରସଙ୍ଗ ଚୋଡ଼ଗଙ୍ଗଙ୍କ ପରବର୍ତ୍ତୀ ଗଙ୍ଗରାଜାମାନଙ୍କ ଅଭିଲେଖଗୁଡ଼ିକରେ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଅଛି :—

ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିସ୍ତ ସର୍ବାଦଶଃ
ଶ୍ରୋତ୍ରେନେତ୍ର ଯୁଗଂ ରବୀନ୍ଦୁ ଯୁଗଳଂ ମୂର୍ଦ୍ଧାପି ଚ ଦ୍ୟୌରସୌ ।
ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତେଃ କୋ ନାମ କର୍ତ୍ତୁଂକ୍ଷମଃ
ତସ୍ୟେତ୍ୟାଦ୍ୟନୃପୈରୁପେକ୍ଷିତମୟଂ ଚକ୍ରେଽଥ ଗଙ୍ଗେଶ୍ୱରଃ ॥

ଏହି ଶ୍ଳୋକରୁ ସ୍ପଷ୍ଟ ପ୍ରକଟିତ ହେଉଛି ଯେ, ଶ୍ରୀପୁରୁଷୋତ୍ତମଙ୍କ ଯେଉଁ ମନ୍ଦିରଟି ପୂର୍ବ ରାଜାମାନଙ୍କଦ୍ୱାରା ଉପେକ୍ଷିତ ହୋଇ ରହିଥିଲା, ତାହା ଗଙ୍ଗେଶ୍ୱର (ଚୋଡ଼ଗଙ୍ଗ) ଦେବ ନିର୍ମାଣ କରିବାକୁ ସମର୍ଥ ହେଲେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, କେଉଁ ପୂର୍ବ ରାଜାମାନଙ୍କ ଦ୍ୱାରା ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିରଟି ପରିତ୍ୟକ୍ତ ହୋଇଥିଲା ? ଆଉ ମଧ୍ୟ ସେହି ମନ୍ଦିର ନିର୍ମାଣ କରିବା କାମ ଆରମ୍ଭ ହୋଇଥିଲା କି ନାହିଁ ? ଏ ଦୁଇଟି ପ୍ରଶ୍ନର ସମାଧାନ କରିବାକୁ ହେଲେ, ଆମ୍ଭେ ପ୍ରଥମେ ଜାଣିବାକୁ ହେବ, ଏ ଅଞ୍ଚଳରେ ଅର୍ଥାତ୍ ପୁରୀର ପାରିପାର୍ଶ୍ୱିକ ଅଞ୍ଚଳରେ କେଉଁ ରାଜା ବା ରାଣୀ ବୈଷ୍ଣବ ଧର୍ମ ଗ୍ରହଣ କରି ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିରଟି ଚୋଡ଼ଗଙ୍ଗଙ୍କ ପୂର୍ବରୁ ବିରାଟ ଆକାରରେ ନିର୍ମାଣ କରିବାକୁ ବ୍ରତୀ ହୋଇଥିବେ ।

ଇତିହାସରୁ ପ୍ରମାଣିତ ହୋଇଛି ଯେ, ପୁରୀ ଓ ସେଥିର ପାରିପାର୍ଶ୍ୱିକ ଅଞ୍ଚଳ ଖ୍ରୀ. ୭ମ ଶତାବ୍ଦୀରୁ ଆରମ୍ଭ କରି ଚୋଡ଼ଗଙ୍ଗଙ୍କର ଉତ୍କଳ-ଅଭିଯାନକାଳ ଖ୍ରୀ. ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ ତିନୋଟି ରାଜବଂଶର ଶାସନାଧୀନ ଥିଲା, ଯଥା — (୧) ଶୈଳୋଦ୍ଭବ (ଖ୍ରୀ: ୭ମ-୮ମ ଶତାବ୍ଦୀ), (୨) ଭୌମ-କର (ଖ୍ରୀ: ୮ମ-୧୦ମ ଶତାବ୍ଦୀ) ଏବଂ (୩) ସୋମବଂଶ (ଖ୍ରୀ: ୧୦ମ-୧୧ଶ ଶତାବ୍ଦୀ) । ଏହି ରାଜବଂଶମାନଙ୍କ ମଧ୍ୟରୁ ଶୈଳୋଦ୍ଭବ ତଥା ସୋମବଂଶୀୟ ରାଜାମାନେ ସମସ୍ତେ "ପରମ ମାହେଶ୍ୱର" ଉପାଧିରେ ଭୂଷିତ ହୋଇ ଶୈବଧର୍ମର ଆଶ୍ରୟ ନେଇଥିଲେ । ତେଣୁ ସେମାନଙ୍କଦ୍ୱାରା ଏ ଅଞ୍ଚଳରେ ବହୁ ସଂଖ୍ୟାରେ ଶୈବ ମନ୍ଦିରମାନ ଗଠିତ ହୋଇଥିଲା । ଭୁବନେଶ୍ୱର ଶୈବ ଗୁରୁମାନଙ୍କର ଗୋଟିଏ କେନ୍ଦ୍ରପୀଠ ହୋଇଥିଲା । ଯଯାତି ମହାଶିବଗୁପ୍ତ ସୋମରାଜବଂଶ ଉତ୍କଳରେ ପ୍ରତିଷ୍ଠା କରି ଭୁବନେଶ୍ୱର ଶ୍ରୀଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିଲେ ଏବଂ ତାଙ୍କ ରାଣୀ କୋଲାବତୀ ମଧ୍ୟ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରି ସେଥିରେ ନିଜ ବଂଶର କୀର୍ତ୍ତିକଳାପ ସମ୍ବଳିତ ଗୋଟିଏ ଶିଳାଲେଖ ସ୍ଥାପନ କରି ଅଛନ୍ତି । ରାଣୀ କୋଲାବତୀ ଏହି ମନ୍ଦିରଟି ଏକାମ୍ର-ସିଦ୍ଧତୀର୍ଥରେ ନିର୍ମାଣ କରିଥିଲେ । ଏ ସମ୍ବନ୍ଧେ ନିମ୍ନୋକ୍ତ ଶ୍ଳୋକଟି ସେଥିରେ ଖୋଦିତ ହୋଇଅଛି:—

ଏକାମ୍ରେ ସିଦ୍ଧତୀର୍ଥେ ଚତୁରମରକୁଳୀ ନାଟ୍ୟଶାଳା ସମେତଃ
କୋଲାବତ୍ୟାତସ୍ତୈଷଃ କ୍ଷିତିମୁକୁଟନଭଃ କାରିତଃ କୀର୍ତ୍ତିରାଜଃ ॥

ରାଣୀ କୋଲାବତୀଙ୍କ ପୁତ୍ର ଉଦ୍ୟୋତ କେଶରୀ ଜଣେ ପ୍ରବଳ ପରାକ୍ରାନ୍ତ ରାଜା ଥିଲେ । ସେ ତାଙ୍କ ଶତ୍ରୁ ଡାହାଳ, ଚେଡ଼ି ଓ ଗୌଡ଼ଦେଶର ରାଜାମାନଙ୍କୁ

ପରାସ୍ତ କରିଥିଲେ । ସୁତରାଂ ତାଙ୍କ ସାମ୍ରାଜ୍ୟର ଚତୁର୍ଦ୍ଦିଗରେ ଶତ୍ରୁ ରାଜାମାନେ ସୋମବଂଶ ବିରୁଦ୍ଧରେ ଅଭିଯାନ କରିବାକୁ ପ୍ରସ୍ତୁତ ହେଉଥିଲେ ।

ରାଜନୈତିକ ପରିସ୍ଥିତି ସଙ୍ଗେ ଓତପ୍ରୋତ ଭାବେ ଧର୍ମ ସଂକ୍ରାନ୍ତ ଭାବଧାରା ଜଡ଼ିତ ହୋଇଥିଲା । ଯେଉଁ ସମୟରେ ଉତ୍କଳରେ ଭୌମକର ବଂଶର ପ୍ରାଚୀନ ରାଜାମାନଙ୍କ ପ୍ରବର୍ତ୍ତିତ ବୌଦ୍ଧ (ମହାଯାନ) ଧର୍ମ ଅସ୍ତମିତ ହେଉଥିଲା, ସେତେବେଳେ ଦକ୍ଷିଣ-କୋଶଳରେ ପ୍ରବଳ ପରାକ୍ରାନ୍ତ ସୋମ-ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ ଏବଂ କଳିଙ୍ଗରେ ଗଙ୍ଗବଂଶୀୟ ରାଜାମାନେ ମଧ୍ୟ ଯଥେଷ୍ଟ ପରାକ୍ରମଶାଳୀ ଥିଲେ । ଉଭୟ ରାଜବଂଶ ଶୈବ ଗୁରୁଙ୍କ ଆଶ୍ରୟ ନେଇଥିଲେ ସୁଦ୍ଧା ରାଜନୈତିକ କାରଣରୁ ସେମାନଙ୍କ ମଧ୍ୟରେ ଶତ୍ରୁତା ପୂରି ରହିଥିଲା । ମଧ୍ୟ-ଭାରତରେ ଚେଦୀ ତଥା ତ୍ରିପୁରୀର ହୈହୟମାନଙ୍କ ଲୋଲୁପ ଦୃଷ୍ଟି ଉତ୍କଳ ତଥା ଦକ୍ଷିଣ-କୋଶଳ ଉପରେ ପଡ଼ିଥିଲା । ସେହି ବଂଶର ରାଜା ଲକ୍ଷ୍ମଣରାଜ ଏକଦା କୋଶଳ ଜୟକରି ସାରି ଓଡ୍ର ରାଜାଙ୍କଠାରୁ ଗୋଟିଏ ରତ୍ନଖଚିତ କାଳୀୟ (ବିଷ୍ଣୁ) ମୂର୍ତ୍ତି ନେଇ ସୋମେଶ୍ୱର (ଶିବ)ଙ୍କ ଅର୍ଚ୍ଚନା କରିଥିବା ପ୍ରସଙ୍ଗ ତାଙ୍କ ଅଭିଲେଖର ନିମ୍ନୋକ୍ତ ଶ୍ଲୋକରୁ ଜଣାଯାଏ :—

ଜିତ୍ୱା କୋଶଳନାଥମୋଡ୍ର ନୃପତେରାପ୍ତସ୍ତୁ ଯଃ କାଳୀୟୋ ।
ରତ୍ନାସ୍ୱର୍ଣ୍ଣମୟଃ ସ ଯେନ ବିହିତଃ ସୋମେଶ୍ୱରାଭ୍ୟର୍ଚ୍ଚନମ୍ ॥

ଏହି ଶ୍ଲୋକରୁ ଜଣାଯାଉଛି, ଦକ୍ଷିଣ-କୋଶଳର ସୋମବଂଶୀ ରାଜା ପରାଜୟ ଲାଭ କଲାପରେ ରତ୍ନ ଖଚିତ କାଳୀୟ ମୂର୍ତ୍ତି ଓଡ୍ର ରାଜା ତାଙ୍କୁ (ଲକ୍ଷ୍ମଣରାଜଙ୍କୁ) ଉପହାର ଦେଇଥିଲେ । ଓଡ୍ର ଦେଶ ରାଜା ସମ୍ଭବତଃ ଉତ୍କଳ ତଥା କୋଶଳ ରାଜାଙ୍କ ବିରୁଦ୍ଧାଚରଣ କରି କୌଣସି ବିଷ୍ଣୁ ପ୍ରତିମା ଚେଦି-ରାଜାଙ୍କୁ ଉପହାର ଦେଇଥିଲେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଯଦି ଓଡ୍ର ଦେଶରେ ଖ୍ରୀ: ୧୦ମ ଶତାବ୍ଦୀରେ ରତ୍ନଖଚିତ କାଳୀୟ ମୂର୍ତ୍ତି (ବିଷ୍ଣୁ)ଙ୍କ ପୀଠସ୍ଥଳୀ ଥିଲା, ତେବେ ସେହି ମୂର୍ତ୍ତିକୁ ଶୈବ ପୀଠରେ ସୋମେଶ୍ୱର (ଶିବ)ଙ୍କ ଅର୍ଚ୍ଚନା ସକାଶେ ଚେଦି ବଂଶର ଲକ୍ଷ୍ମଣରାଜ ନେବାର ତାତ୍ପର୍ଯ୍ୟ କ'ଣ ହୋଇ ପାରେ ? ଓଡ୍ର ରାଜାଙ୍କ ମୁଖ୍ୟ ବିଷ୍ଣୁ କ୍ଷେତ୍ର ରୂପେ ପୁରୁଷୋତ୍ତମ କ୍ଷେତ୍ର ସେତେବେଳେ ପ୍ରଖ୍ୟାତ ଥିଲା । ସମ୍ଭବ

କାଳରେ ଓଡ୍ର ଦେଶରେ ପୁରୁଷୋତ୍ତମଙ୍କ ପ୍ରତିଷ୍ଠା ବିଷୟ ମନ୍ଦସ୍ଥାରର ଶାରଦା ମନ୍ଦିରସ୍ଥ ଖ୍ରୀ: ୧୦ମ ଶତାବ୍ଦୀର ଅଭିଲେଖରୁ ସ୍ପଷ୍ଟ ପ୍ରମାଣିତ ହୋଇ ପାରୁଛି । ସୁତରାଂ ରତ୍ନଖଚିତ ଯେଉଁ ସୁବର୍ଣ୍ଣ ବାଳୀୟ ମୂର୍ତ୍ତି ଓଡ୍ରଦେଶରୁ ଚେଦିରାଜା ନେଇ ସୋମେଶ୍ୱର ମନ୍ଦିରରେ ଅର୍ଚ୍ଚନା କଲେ ତାହା ସେହି ସିନ୍ଧୁତଟବର୍ତ୍ତୀ ପୁରୁଷୋତ୍ତମ କ୍ଷେତ୍ରରେ କୌଣସି ବିଷ୍ଣୁ ପ୍ରତିମା ବୋଲି ନିର୍ଦ୍ଦେଶ କରାଯାଇପାରେ ।

ଯେଉଁ ସମୟର ବିଷୟ ଆଲୋଚନା କରାଯାଉଛି, ସେତେବେଳେ ଉତ୍କଳରେ ଭୌମବଂଶୀୟ ବୌଦ୍ଧ ରାଜାମାନେ 'ପରମ ମାହେଶ୍ୱର' ଉପାଧି ଧାରଣ କରୁଥିଲେ । ଭୌମ ରାଜବଂଶରେ ସର୍ବପ୍ରଥମେ ଏ ଉପାଧି ଶୁଭକର ଦେବଙ୍କର ତାଳଚେରରୁ ପ୍ରାପ୍ତ ଗୋଟିଏ ତାମ୍ର ଶାସନରୁ ପ୍ରକଟିତ ହେଉଛି । ସେହି ଶାସନଟି ଭୌମାବ୍ଦ ୧୪୧ (ଖ୍ରୀ. ୮୭୭)ରେ ଖୋଦିତ ହୋଇଥିଲା । ତାଙ୍କ ପରେ ସେହି ବଂଶର ରାଜା ଶାନ୍ତିକର ଦେବଙ୍କ ଅନୁଗୁଳ ତାମ୍ର ଶାସନରେ ମଧ୍ୟ ସେ ନିଜକୁ 'ପରମ ମାହେଶ୍ୱର' ଉପାଧିରେ ଭୂଷିତ କରିଥିବା ଦେଖାଯାଏ । ସେଥିରେ ସେ ଦୁଇଟି ଦାନ କରି ଅଛନ୍ତି । ଗୋଟିଏ ତାଳଚେର ବିଷୟର କକୁର ନାମକ ଗ୍ରାମ ଏବଂ ଦ୍ୱିତୀୟଟି ଚନ୍ଦ୍ର ଗ୍ରହଣ କାଳରେ ଏକାମ୍ରସ୍ଥ ବିରଜାସର-ଠାରେ ବ୍ରାହ୍ମଣଙ୍କୁ କୋଙ୍ଗିଙ୍ଗ ବିଷୟରେ ଥିବା ରକଲ୍ଲା ନାମକ ଗ୍ରାମ ଦାନ କରିଥିଲେ । ଏଥିରୁ ଅନୁମିତ ହୁଏ, ଶାନ୍ତିକରଙ୍କ ଧର୍ମୋପଦେଷ୍ଟା ଶୈବଗୁରୁ ଏକାମ୍ର (ଭୁବନେଶ୍ୱର) କ୍ଷେତ୍ରରେ ବାସ କରୁଥିଲେ ।

ତାଳଚେରରୁ ପ୍ରାପ୍ତ ଶିବକରଦେବଙ୍କ ତାମ୍ରଶାସନରୁ ପ୍ରକଟିତ ହେଉଛି ଯେ, ତାଙ୍କର ଜଣେ ସାମନ୍ତ ରାଜା ରାଣକ ଶ୍ରୀ ବିନୀତତୁଙ୍ଗଙ୍କ ଅନୁରୋଧକ୍ରମେ ବୁଦ୍ଧଭଟ୍ଟାରକଙ୍କ ମନ୍ଦିରରେ ଉପାସନା ନିମନ୍ତେ ଉତ୍ତର ତୋଷଳୀରେ ଥିବା କଲ୍ୟାଣୀ ନାମକ ଗ୍ରାମ ଭୌମାବ୍ଦ ୧୪୯ (ଖ୍ରୀ: ୮୮୫) ରେ ଦାନ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି, ଭୌମବଂଶୀୟ ରାଜାମାନେ ଶୈବ ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ ହେଁ ବୁଦ୍ଧଙ୍କ ଉପାସନା ପାଇଁ ତାଙ୍କର ଆଦୌ ଆପତ୍ତି ନଥିଲା ।

ସେହି ରାଜବଂଶରେ ସର୍ବପ୍ରଥମେ ଯେଉଁ ରାଣୀ ରାଜ୍ୟ ଶାସନ କାର୍ଯ୍ୟରେ ବ୍ୟାପୃତ ହୋଇଥିଲେ ସେ ହେଉଛନ୍ତି, ତ୍ରିଭୁବନମହାଦେବୀ ଓରଫ ପୃଥ୍ୱୀମହା-ଦେବୀ । ସେ ମଧ୍ୟ ଏ ରାଜବଂଶର ସର୍ବପ୍ରଥମ ଓ ସର୍ବଶେଷ ମହାଦେବୀ, ଯେକ

'ପରମ ବୈଷ୍ଣବୀ' ଉପାଧି ଧାରଣ କରିଥିଲେ । ବୌଦରୁ ତାଙ୍କର ଦୁଇଟି ଦାନ ଶାସନ ମିଳିଛି । ସେଥିରେ ସେ ନିଜର ପରିଚୟ ଦେବାକୁ ଯାଇ ଲେଖିଅଛନ୍ତି—

"ସିତାଂଶୁବଂଶ, ନନ୍ଦନ ଶ୍ରୀବନାର୍ଣ୍ଣବ ସମ୍ଭୂତଃ
ରାଜ୍ଞଃ ସ୍ୱଭାବତୁଙ୍ଗସ୍ୟ କୋଶଳାଧିପତେ ସୁତା"...

ଅର୍ଥାତ୍ ତ୍ରିଭୁବନ ମହାଦେବୀ ଓରଫ ପୃଥ୍ୱୀ ମହାଦେବୀଙ୍କ ପିତା ହେଉଛନ୍ତି, କୋଶଳର ସୋମବଂଶୀ ମହାରାଜ ସ୍ୱଭାବତୁଙ୍ଗ । ମହାରାଜ ଯଯାତି (୧ମ)ଙ୍କ ପିତା ମହାଭବ ଗୁପ୍ତ ଜନମେଜୟଙ୍କ ଦ୍ୱିତୀୟ ନାମ ଥିଲା ସ୍ୱଭାବତୁଙ୍ଗ । ତେଣୁ, ସେ ହେଉଛନ୍ତି ଭୌମକର ବଂଶୀୟ ଉତ୍କଳର ମହାରାଣୀ ତ୍ରିଭୁବନ-ପୃଥ୍ୱୀ ମହାଦେବୀଙ୍କ ପିତା । ବୌଦରୁ ପ୍ରାପ୍ତ ଉପରୋକ୍ତ ଦୁଇଟି ତାମ୍ରଶାସନ ଭୌମ ୧୫୮ (ଖ୍ରୀ: ୮୯୪)ରେ ଖୋଦିତ ହୋଇଥିଲା । ତାଙ୍କ ଭ୍ରାତା ମହାଶିବଗୁପ୍ତ ଯଯାତି ବୈରିମାନଙ୍କ ଡ଼ାହାଳ ନଗରୀକୁ ପୋଡ଼ି ଜନଶୂନ୍ୟ କରିଥିବା କଥା ପୁଣି ତାଙ୍କ ପିତା ସ୍ୱଭାବତୁଙ୍ଗ ଚେଦିମାନଙ୍କୁ ପରାଭୂତକରି ସେଠାର ରାଜଲକ୍ଷ୍ମୀ ଲାଭକରିଥିବା ପ୍ରସଙ୍ଗ ଯଯାତିଙ୍କ ପାଟଣା ମ୍ୟୁଜିୟମ୍ ତାମ୍ର ଶାସନରେ ନିମ୍ନ ପ୍ରକାରରେ ଉଲ୍ଲେଖ ଅଛି:—

ସୋଽଭୂନ୍ନୃପଃ ସୋମକୁଳାତ୍ ଜଗନ୍ନୁଃ,
ସ୍ୱଭାବତୁଙ୍ଗୋ ନିଜ ପୌରୁଷେଣ ।
ଯଃ କୋଶଳାପାଳନ କୌମୁଦୀନ୍...
ବିଜିତ୍ୟ ଚୈଦ୍ୟାନ୍‌ବତତାନ୍ ଲକ୍ଷ୍ମୀମ୍ ॥

× × ×

ତସ୍ମାତ୍ସୁତୋ ବିଷ୍ଣୁରିବାଜନିଷ୍ଟ
ସ ଦୁର୍ଗରାଜଂ ବିପଟ ପ୍ରତାପମ୍ ।
ତୃଣାୟ ଚୈଦ୍ୟଂ ବତ ମନ୍ୟମାନୋ
ଦଗ୍‌ଧାଂ ଡ଼ାହାଳାଂ ବିଜନୀ ଚକାର ॥

ଏ ଘଟଣାରୁ ଜଣାଯାଉଛି, ଚେଦି ରାଜ ଲକ୍ଷ୍ମଣରାଜ କୋଶଳ ଆକ୍ରମଣକରି ଓଡ୍ର ରାଜାଙ୍କଠାରୁ କାଳୀୟମୂର୍ତ୍ତି ନେବାପରେ ଭୌମବଂଶୀୟା ରାଣୀ ତ୍ରିଭୁବନ ପୃଥ୍ୱୀମହାଦେବୀ ତାଙ୍କ ପିତା ସ୍ୱଭାବତୁଙ୍ଗ-ମହାଭବଗୁପ୍ତଙ୍କ ରାଜ୍ୟରେ ଆଶ୍ରୟ ନେଲେ ଏବଂ ତାଙ୍କ ପିତା ଓ ଭ୍ରାତା ଯଯାତି ଚେଦିମାନଙ୍କୁ ପ୍ରତିଆକ୍ରମଣ କରି ତାଙ୍କର

ରାଜଲକ୍ଷ୍ମୀ ବା ରାଜସମ୍ପଦ ଆଣିଥିଲେ । ସମ୍ଭବତଃ ଓଡ୍ରଦେଶରେ ବିଷ୍ଣୁପ୍ରତିମାଙ୍କ ପୁନଃ ପ୍ରତିଷ୍ଠା ସକାଶେ ପୃଥ୍ୱୀମହାଦେବୀ ଶ୍ରୀକ୍ଷେତ୍ରରେ ଗୋଟିଏ ବିରାଟ ପରିକଳ୍ପନା କରି ସେଥିର ଭିତ୍ତିସ୍ଥାପନ କରିଥିବେ । କିନ୍ତୁ ତାହା ତାଙ୍କ ଜୀବିତକାଳ ମଧ୍ୟରେ ପୂର୍ଣ୍ଣହୋଇ ପାରିନଥିବ । ତେଣୁ, ବହୁକାଳ ପରିତ୍ୟକ୍ତ ହୋଇ ରହିଥିବ ତାଙ୍କର ସେହି ପରିକଳ୍ପନା ।

ପୃଥ୍ୱୀମହାଦେବୀଙ୍କ ପରେ, ତାଙ୍କ ଭ୍ରାତା ଯଯାତି ମହାଶିବଗୁପ୍ତ ନିଜେ 'ପରମ ମାହେଶ୍ୱର' ବା ଶୈବ ଧର୍ମାବଲମ୍ବୀ ଥିବାରୁ ସେ ଭୁବନେଶ୍ୱରଠାରେ ବିରାଟ ଆକାରରେ କୃତ୍ତିବାସ (ଲିଙ୍ଗରାଜ)ଙ୍କ ମନ୍ଦିର ଗଠନକରି ଶୈବ କ୍ଷେତ୍ରର ପ୍ରାଧାନ୍ୟ ବିସ୍ତାର କରିଥିଲେ । କିନ୍ତୁ ତାଙ୍କ ଭଗ୍ନୀ 'ପରମବୈଷ୍ଣବୀ' ପୃଥ୍ୱୀ ମହାଦେବୀଙ୍କ ପରିକଳ୍ପିତ ଶ୍ରୀମନ୍ଦିର ବିଷ୍ଣୁକ୍ଷେତ୍ର ନୀଳାଚଳରେ ଅସମ୍ପୂର୍ଣ୍ଣ ହୋଇରହିଲା । ତଦବଧି ଓଡ଼ିଶାର ଅନ୍ୟ କୌଣସି ରାଜା ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନ ଥିବାରୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପ୍ରତି ସେମାନେ ଆଗ୍ରହ ପ୍ରକାଶ କଲେ ନାହିଁ । ତେଣୁ ଖ୍ରୀଃ ୧୦ମ ଓ ୧୧ଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାଣ କାର୍ଯ୍ୟ ଅବହେଳିତ ଅବସ୍ଥାରେ ହିଁ ରହିଲା ।

ଖ୍ରୀଃ ୧୧ଶ ଶତାବ୍ଦୀରେ ଦକ୍ଷିଣ ଭାରତରେ ରାମାନୁଜଙ୍କ ବୈଷ୍ଣବ ଧର୍ମ ପ୍ରସାର ଲାଭକଲା । ସେତେବେଳେ 'ପରମ ମାହେଶ୍ୱର' ଉପାଧି ଭୂଷିତ ଗଙ୍ଗବଂଶୀୟ ରାଜାମାନେ କଳିଙ୍ଗ ନଗର (ଆଧୁନିକ ମୁଖଲିଙ୍ଗ) ଠାରୁ ରାଜ୍ୟ ଶାସନ କରୁଥିଲେ । ସେହି ବଂଶର ପ୍ରବଳ ପରାକ୍ରମୀ ମହାରାଜ ଚୋଡ଼ଗଙ୍ଗ ଉତ୍କଳର ସୋମବଂଶୀ ଏବଂ ବେଙ୍ଗି ରାଜ୍ୟର ଚାଲୁକ୍ୟ ବଂଶୀୟ ରାଜାଙ୍କୁ ପରାଜିତ କରି ଉଭୟ ରାଜ୍ୟର ଶ୍ରୀ (ସମ୍ପଦ) ହସ୍ତଗତ କଲେ । ଏ ସମ୍ବନ୍ଧରେ ଗୋଟିଏ ସୁନ୍ଦର ଶ୍ଳୋକ ଗାଙ୍ଗେୟ ତାମ୍ରଶାସନମାନଙ୍କରେ ଉଲ୍ଲେଖ ଅଛି । ଯଥା—

"ପୂର୍ବସ୍ୟାଂ ଦିଶି ପୂର୍ବମୁତ୍କଳ ପତିଂ
ରାଜ୍ୟେ ନିଧାୟାଦ୍ଭୁତଂ
ପଶ୍ଚାତ୍ ପଶ୍ଚିମଦିକ୍ ତଟେ ବିଘଟିତଂ
ବେଙ୍ଗୀଶମପ୍ୟେତୟୋଃ ।
ଲକ୍ଷ୍ମୀବନ୍ଦନମାଳିକାମିବ ଜୟ—
ଶ୍ରୀ ତୋରଣ୍ୟେମ୍ଭୟୋ—

”

ବଂଧ୍ନାତ ସ୍ମ ସ୍ଵମିଳ କଣ୍ଠ ବଭବଃ
ଶ୍ରୀଗଙ୍ଗ ଚୂଡ଼ାମଣିଃ ॥

ଏଥିରୁ ଅନୁମିତ ହୁଏ, ଉତ୍କଳର ସୋମବଂଶୀ ମହାରାଜ କର୍ଣ୍ଣଦେବଙ୍କୁ ନିଷ୍ପିଷ୍ଟ କରିଦେଇ ତାଙ୍କ ରାଜକୋଷ ସଙ୍ଗେ ବେଙ୍ଗିର ଚାଲୁକ୍ୟବଂଶୀ ରାଜାଙ୍କ ରାଜକୋଷ ସେ ହସ୍ତଗତ କଲେ । ପ୍ରାଚୀନ ରୀତି ଅନୁସାରେ ନିର୍ବଂଶ ହୋଇଥିବା ପାରିବାରିକ ଧନସମ୍ପଦ କୌଣସି ଧର୍ମ କାର୍ଯ୍ୟରେ ବ୍ୟୟ କରିବା ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ରରେ ପରିତ୍ୟକ୍ତ ଅବସ୍ଥାରେ ଥିବା ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରକଳ୍ପଟି ସେ ଖ୍ରୀ: ୧୨ଶ ଶତାବ୍ଦୀ ପ୍ରଥମ ଦଶକରେ କାର୍ଯ୍ୟରେ ପରିଣତ କରିଥିଲେ । ଯାହା ଫଳରେ ବୈଷ୍ଣବ ସମ୍ପ୍ରଦାୟର ବହୁକାଳର ଆଶା ଆକାଂକ୍ଷା ପୂର୍ଣ୍ଣତା ଲାଭକଲା । ଚୋଡ଼ଗଙ୍ଗ ତାଙ୍କ ରାଜଧାନୀ ବଂଶଧାରା ନଦୀତଟରୁ ଉଠାଇନେଇ ମହାନଦୀତଟବର୍ତ୍ତୀ ବାରାଣସୀ (ଆଧୁନିକ କଟକ) ଠାରେ ସ୍ଥାପନ କଲେ । ସମ୍ଭବତଃ ଚୋଡଗଙ୍ଗଙ୍କ ଜୀବିତକାଳ ମଧ୍ୟରେ ମନ୍ଦିର କାର୍ଯ୍ୟ ପୂର୍ଣ୍ଣ ହୋଇନଥିବ । ତଥାପି ଶ୍ରୀବିଗ୍ରହମାନ ସେଥିରେ ପ୍ରତିଷ୍ଠା କରାଯାଇଥିବେ । ତା' ନହେଲେ ମୁକ୍ତିମଣ୍ଡପ ସମ୍ମୁଖରେ ନୃସିଂହମନ୍ଦିରର ଏକ ଲିପିରେ ଚୋଡ଼ଗଙ୍ଗଙ୍କ ପ୍ରଦତ୍ତ ଅଖଣ୍ଡବର୍ତ୍ତୀ ଦୀପଦାନ ଶ୍ରୀମନ୍ଦିରରେ ସମ୍ଭବ ହୁଅନ୍ତା କିପରି ? ଦୁଃଖର ବିଷୟ ନୃସିଂହ ମନ୍ଦିରରେ ଚୂନ ପଲସ୍ତରା ଭିତରେ କେତେଗୁଡ଼ିଏ ପ୍ରସ୍ତର ଲିପି ଅଦ୍ୟାପି ଅପ୍ରକାଶିତ ହୋଇରହିଛି । ସେହିପରି ମଧ୍ୟ ଭୁବନେଶ୍ୱରସ୍ଥ ଶ୍ରୀଲିଙ୍ଗରାଜ ମନ୍ଦିର ଗାତ୍ରରେ ଥିବା ପ୍ରାୟ ୬୦-୭୦ଟି ଶିଳାଲେଖ ଅପ୍ରକଟିତ ଅବସ୍ଥାରେ ରହିଛି । ଏହି ଲିପିଗୁଡ଼ିକ ପଠିତ ହୋଇ ସର୍ବସାଧାରଣରେ ପ୍ରକାଶ କରାଗଲେ, ଓଡ଼ିଶାର ଦୁଇଟି ମୁଖ୍ୟ ମନ୍ଦିର ସମ୍ବନ୍ଧରେ ହୁଏତ ଅଧିକ ଐତିହାସିକ ତଥ୍ୟ ମିଳିପାରିବ ।



# ଶ୍ୱେତକର ରାଜା ଇନ୍ଦ୍ରବର୍ମା ଇନ୍ଦ୍ରଦ୍ୟୁମ୍ନ କି ?

କଳିଙ୍ଗ ସାମ୍ରାଜ୍ୟ ଖ୍ରୀ: ୯ମ ଶତାବ୍ଦୀରେ ଯେତେବେଳେ ଗଙ୍ଗବଂଶୀୟ ରାଜାମାନଙ୍କ ଅଧୀନରେ ଶାସିତ ହେଉଥିଲା, ସେତେବେଳେ ଆଧୁନିକ ଗଞ୍ଜାମ ଜିଲ୍ଲାର ପୂର୍ବାଂଶ ଅର୍ଥାତ୍ ମହେନ୍ଦ୍ରାଚଳଠାରୁ ଚିଲିକା ହ୍ରଦ ପର୍ଯ୍ୟନ୍ତ ସମସ୍ତ ଉପକୂଳ ଅଞ୍ଚଳ ଭୌମକର ବଂଶୀୟ ବୌଦ୍ଧ ଧର୍ମାବଲମ୍ବୀ ରାଜାମାନେ ଅଧିକାର କରିଥିଲେ । ଗଙ୍ଗବଂଶର ଗୋଟିଏ ଶାଖା ଚିକିଟି, ବଡଖିମୁଣ୍ଡି, ସାନଖିମୁଣ୍ଡି ପ୍ରଭୃତି ଭୂତପୂର୍ବ ଜମିଦାରୀ ଅଞ୍ଚଳଗୁଡ଼ିକୁ ମିଶାଇ 'ଶ୍ୱେତକ' ନାମକ ଗୋଟିଏ ମଣ୍ଡଳ (ପ୍ରଦେଶ)ରେ ରାଜତ୍ୱ କରୁଥିଲେ । ସେହି ରାଜାମାନେ କେବେ କେବେ ଭୌମକରମାନଙ୍କ ଅଧୀନତା ସ୍ୱୀକାର କରୁଥିଲେ ତ କେବେ କେବେ ସ୍ୱାଧୀନତା ଘୋଷଣା କରୁଥିଲେ । ସେହି ରାଜବଂଶକୁ ଇତିହାସରେ "ଶ୍ୱେତକ ଗଙ୍ଗ" ବୋଲି ଚିହ୍ନିତ କରାଯାଇଅଛି ।

ଶ୍ୱେତକ ରାଜବଂଶରେ ଇନ୍ଦ୍ରବର୍ମା ନାମକ ଜଣେ ପ୍ରବଳ ପରାକ୍ରାନ୍ତ ରାଜା ସ୍ୱାଧୀନତା ଘୋଷଣା କରି "ମହାରାଜାଧିରାଜ—ପରମେଶ୍ୱର ପରମଭଟ୍ଟାରକ" ନାମକ ଉଚ୍ଚ ରାଜକୀୟ ଉପାଧି ବ୍ୟବହାର କରିଥିଲେ । ସେ ମହେନ୍ଦ୍ରାଚଳ ଶିଖର ଦେଶରେ ପ୍ରତିଷ୍ଠିତ ଗୋକର୍ଣ୍ଣେଶ୍ୱର ଶିବଙ୍କ ପରମ ଭକ୍ତ ରୂପେ ପରିଚିତ ହୋଇଥିଲେ ସୁଦ୍ଧା ବିଷ୍ଣୁଙ୍କୁ ମଧ୍ୟ ଉପାସନା କରୁଥିବାରୁ ସର୍ବପ୍ରଥମ ତାଙ୍କ ଦ୍ୱାରା 'ହରିହର' ଆରାଧନା ଏ ଅଞ୍ଚଳରେ ପ୍ରବର୍ତ୍ତିତ ହୋଇଥିଲା । ତାଙ୍କ ରାଜତ୍ୱ କାଳରେ ଶ୍ୱେତକ ରାଜ୍ୟର ରାଜଧାନୀ ଆଧୁନିକ ଚିକିଟିରେ ଥିବା ଅନୁମିତ ହୁଏ । ଆନ୍ଧ୍ରର ଜଣେ ପ୍ରସିଦ୍ଧ ଐତିହାସିକ ସୋମଶେଖର ଶର୍ମାଙ୍କ ମତରେ 'ଶ୍ୱେତକ' ଶବ୍ଦ ଭାଷାର ପରିବର୍ତ୍ତନ ଫଳରେ 'ଚେତକ' 'ଚିକଟ' ଓ 'ଚିକିଟି'ରେ ପରିଣତ ହୋଇଥିବା ସମ୍ଭବ । ବାସ୍ତବରେ ଚିକିଟି, ମଞ୍ଜୁଷା, ବୁଢାର-ଶିଙ୍ଗି ସମେତ ବାରୁଆକୁ ମିଶାଇ ଗୋଟିଏ ସ୍ୱତନ୍ତ୍ର 'ବିଷୟ' (ଜିଲ୍ଲା) ପୂର୍ବେ ଗଠିତ ହୋଇଥିଲା । ସେଥିର ନାମ ଥିଲା "ମହେନ୍ଦ୍ରଭୋଗ-ବିଷୟ" । ସେଠାରେ କିଛିକାଳ ଗଙ୍ଗବଂଶୀୟ ରାଜାମାନଙ୍କ ଅଧୀନରେ କଦମ୍ବବଂଶୀୟ କ୍ଷତ୍ରିୟ ରାଜାମାନେ ରାଜତ୍ୱ କରୁଥିବା ପ୍ରସଙ୍ଗ କେତେକ ତାମ୍ର ଶାସନରୁ ପ୍ରକଟିତ ହୁଏ । ସେମାନଙ୍କ ରାଜଧାନୀର ନାମ ଥିଲା 'ଜୟନ୍ତୀପୁର' ଆଧୁନିକ

ଚକଟିର ଜମ୍ବନ୍ତୀପୁର ସଙ୍ଗେ ତାହା ଚହ୍ନିତ ହୋଇଅଛି । (*) ସିଂହପୁରରୁ ପ୍ରାପ୍ତ କଦମ୍ବବଂଶୀୟ ରଜା ଧର୍ମଖେଡ଼ଙ୍କ ପ୍ରଦତ୍ତ ଗୋଟିଏ ତାମ୍ର ଶାସନରେ ଲେଖା ଅଛି ଯେ, ଗଙ୍ଗବଂଶୀୟ ମହାରଜା ଦେବେନ୍ଦ୍ର ବର୍ମାଙ୍କ ପୁତ୍ର ମହାରଜା ମହେନ୍ଦ୍ର ବର୍ମା ଯେତେବେଳେ କଳିଙ୍ଗ ସାମ୍ରାଜ୍ୟର ଅଧୀଶ୍ବର ହୋଇଥିଲେ ସେତେବେଳେ ଧର୍ମଖେଡ଼ ତାଙ୍କର ଜଣେ ସାମନ୍ତ ରଜା ରୂପେ 'ମହେନ୍ଦ୍ରଭୋଗ ବିଷୟ'ର ଶାସନକର୍ତ୍ତା ହୋଇଥିଲେ । (**) ସେଠାରେ ସେତେବେଳେ 'ଧର୍ମପୁର' ନାମରେ ଏକ ଗ୍ରାମ ସ୍ଥାପିତ ହୋଇଥିଲା । ପାଲିବଣରୁ ସମାଗତ ୩୦୦ ବ୍ରାହ୍ମଣଙ୍କୁ ସେହି ଗ୍ରାମଟି ରଜା ଧର୍ମଖେଡ଼ ଦାନ କରି ତାଙ୍କ ରଜଧାନୀ ଜମ୍ବନ୍ତୀପୁର ଠାରୁ ଘୋଷଣା କରିଥିଲେ ।

କାଳକ୍ରମେ 'ମହେନ୍ଦ୍ରଭୋଗ ବିଷୟ' ଶ୍ବେତକ ଗଙ୍ଗମାନଙ୍କ ଅଧିକାର-ଭୁକ୍ତ ହେଲା । ଫଳରେ ଚକଟି ଓ ଜମ୍ବନ୍ତୀପୁରରୁ କଦମ୍ବ ରଜବଂଶ ଦକ୍ଷିଣକୁ ଗ୍ଭଲିଗଲେ । ସେମାନଙ୍କ ବଂଶଧରମାନେ ଖ୍ରୀ: ୧୦ଶ ଶତାବ୍ଦ ପର୍ଯ୍ୟନ୍ତ ଟିକ୍କଲି ସନ୍ନିକଟ ନନ୍ଦଗ୍ରାମରେ ରହୁଥିବା ଜଣାଯାଏ । ସେ ପଡ଼ଣିଖଣ୍ଡ-ବିଷୟରେ ଥିବା ଭେଠିଙ୍ଗ ନାମକ ଗ୍ରାମ ଓ ପଡ଼ଣି ଗ୍ରାମର ଅର୍ଦ୍ଧେକ 'ଶ୍ରୀଲୋକମାଧବ' ନାମକ ବିଷ୍ଣୁ ମନ୍ଦିର ପାଇଁ ଦାନ କରିଥିଲେ । ସେହି ଗ୍ରାମର ଅପର ଅର୍ଦ୍ଧେକ ଶ୍ରୀ ଗୋସାଣି ମା (ପିତାମହୀ)ଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀରଙ୍ଗସ୍ୱୟମ୍ଭୂଙ୍କ ରଣୀ ଶ୍ରୀଏଲାଙ୍କ ପୁଣ୍ୟାର୍ଜନ ସକାଶେ 'ସ୍ୱୟମ୍ଭୁକେଶ୍ୱର' (ଶିବ)ଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ହେଲା । (***) ଏଣୁ ଶ୍ରୀ ଲୋକମାଧବ (ବିଷ୍ଣୁ) ଓ ସ୍ୱୟମ୍ଭୁକେଶ୍ୱର (ଶିବ)ଙ୍କ ଆରଧନା ନିମନ୍ତେ ଯେଉଁ ଭେଠିଙ୍ଗ ଗ୍ରାମ ଦାନ କରଯାଇଥିଲା, ତାହା ଅଦ୍ୟାପି ସେହି ନାମରେ ହିଁ ପରିଚିତ ହେଉଛି । ଉପରୋକ୍ତ ଦାନ ଫାଲ୍‌ଗୁନ

---

( * ) ଲେଖକଙ୍କର 'Inscriptions of Orissa' Vol. II, Page 280. footnote No 9 ଦ୍ରଷ୍ଟବ୍ୟ ।

(**) ତାମ୍ରଶାସନଟି ଏ ଲେଖକ Journal of Andhra Historical Research Society Vol III, PP 171-180 ରେ ପ୍ରକାଶ କରିଅଛି ।

(***) ସାନଖିମୁଣ୍ଡିରୁ ପ୍ରାପ୍ତ ଇନ୍ଦ୍ରବର୍ମାଙ୍କ ତାମ୍ର ଶାସନ E. P 2nd Vol XXVI, PP 165-171, Inscriptions of Orissa, Vol II, PP 280-286 ଦ୍ରଷ୍ଟବ୍ୟ ।

ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ସମ୍ପନ୍ନ ହୋଇଥିଲା । ତେଣୁ ଶ୍ରୀକୃଷ୍ଣଙ୍କ ଉତ୍ସବ ଦୋଳପୌର୍ଣ୍ଣମୀ ପୂର୍ବଦିନ ହେବା ଦାନର ତାତ୍ପର୍ଯ୍ୟ ସ୍ପଷ୍ଟ ଉପଲବ୍ଧି ହେଉଛି ।

ଶ୍ୱେତକର ଇନ୍ଦ୍ରବର୍ମାଙ୍କ ରାଜତ୍ୱ କାଳ ଖ୍ରୀ: ୮ମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓ ୯ମ ଶତାବ୍ଦୀର ପ୍ରଥମାର୍ଦ୍ଧ ବୋଲି ଜଣାଯାଏ । ତାଙ୍କ ସମୟରେ ଓଡ଼ିଶାରେ ବୋଧହୁଏ ସର୍ବପ୍ରଥମେ ମାଧବ ଉପାସନା ସଙ୍ଗେ 'ହରିହର' ଉପାସନା ଆରମ୍ଭ ହୋଇଥିଲା । 'ମାଦଳାପାଞ୍ଜି'ରେ ବର୍ଣ୍ଣିତ ଅଛି ଯେ, ନୀଳମାଧବଙ୍କୁ ପୂର୍ବେ ବସୁ ଶବର କୌଣସି ଏକ ଅଜ୍ଞାତ ଜଙ୍ଗଲରେ ପୂଜା କରୁଥିଲେ । ସେହି ବିଷ୍ଣୁଙ୍କୁ ସେଠାରୁ ଉଠାଇ ନେବା ସକାଶେ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ ଠାରୁ ପ୍ରେରିତ ବିଦ୍ୟାପତି ନାମକ ଜଣେ ବ୍ରାହ୍ମଣ ସେହି ଜଙ୍ଗଲକୁ ଯାଇ ଛଳନା କରି ସେହି ବିଷ୍ଣୁ ମୂର୍ତ୍ତିଙ୍କୁ ବିଶ୍ୱାବସୁଙ୍କ ଅଜ୍ଞାତରେ ଚୋରାଇ ନେବାକୁ ଉଦ୍ୟମ କରିଥିଲେ । କିନ୍ତୁ ନୀଳମାଧବ ସେଠାରୁ ଅନ୍ତର୍ଦ୍ଧାନ ହେବା ଫଳରେ ନୀଳାଚଳରେ ହସ୍ତପଦହୀନ ଦାରୁବିଗ୍ରହ ଗଠିତ ହୋଇଥିଲା ।

ଉପରୋକ୍ତ କିମ୍ବଦନ୍ତୀମୂଳକ ଆଖ୍ୟାନରେ କେତେକ ଐତିହାସିକ ସତ୍ୟ ଘଟଣା ସନ୍ନିହିତ ଥିବା ଜଣାଯାଏ । କାରଣ ପୂର୍ବର ଲୋକମୁଖରେ ସେହି ଆଖ୍ୟାନର ବହୁ ଅଂଶ କପୋଳକଳ୍ପିତ କିମ୍ବା ଅତିରଞ୍ଜିତ ହୋଇଥିଲେ ସୁଦ୍ଧା ସେଥିରେ ମୌଳିକ ଆଖ୍ୟାନରେ କିଛି କିଛି ସତ୍ୟ ରହିଥିବା ସମ୍ଭବ । ଏ ଦୃଷ୍ଟିରୁ ବିଚାର କଲେ, ଓଡ଼ିଶାର ତତ୍କାଳୀନ ଐତିହାସିକ ପରିସ୍ଥିତିକୁ ଭିତ୍ତି କରି ମହେନ୍ଦ୍ରାଚଳର ପାଦଦେଶରେ ଭେଟି ଶିଙ୍ଗ ଗ୍ରାମସ୍ଥ 'ଲୋକମାଧବ'ଙ୍କୁ କିମ୍ବା ବଉଦର ମହାନଦୀ ତଟବର୍ତ୍ତୀ ଭଞ୍ଜବଂଶୀୟ ରାଜା ଶତ୍ରୁଭଞ୍ଜ ଓ ରଣଭଞ୍ଜଙ୍କ ରାଜ୍ୟରେ ପ୍ରତିଷ୍ଠିତ ନୀଳମାଧବଙ୍କୁ ସେହି ଆଦିବାସୀ ଶବର ପୂଜିତ ଦେବତା ବୋଲି ସ୍ଥିର କରାଯାଇପାରେ । ସେହି ଦେବତାଙ୍କୁ ଅପହରଣ କରିବାପାଇଁ ସମ୍ଭବତଃ ଶ୍ୱେତକର ମହାରାଜା ଇନ୍ଦ୍ରବର୍ମା ଜଣେ ବ୍ରାହ୍ମଣଙ୍କୁ ପଠାଇଥିଲେ । ମାଦଳାପାଞ୍ଜିରେ ଇନ୍ଦ୍ରବର୍ମାଙ୍କୁ ସମ୍ଭବତଃ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ଦେଇ ସେ ଓଡ଼ିଶା ବାହାରର ଜଣେ ରାଜା ବୋଲି ପରବର୍ତ୍ତୀ ଲେଖକମାନେ ଲେଖିଥିବା ସମ୍ଭବ ।

ଚିକିଟିଠାରୁ ଅଳ୍ପ ଦୂରରେ ବୁଢ଼ାରସିଙ୍ଗି ନାମକ ଗୋଟିଏ କ୍ଷୁଦ୍ର ଜମିଦାରୀ ଥିଲା । ଏବେ ତାହା ଆନ୍ଧ୍ର ପ୍ରଦେଶରେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ରହିଥିଲେ ସୁଦ୍ଧା ସେହି ଗ୍ରାମରେ ସମସ୍ତେ ଓଡ଼ିଆ ଭାଷାଭାଷୀ ଲୋକେ ବାସ

କରନ୍ତି । ଗ୍ରାମଟିର ଏକଆଡ଼େ ବିଶାଳ ମହେନ୍ଦ୍ରାଚଳ ଏବଂ ଅନ୍ୟ ଆଡ଼େ ମହେନ୍ଦ୍ର ତନୟା ନଦୀ ପ୍ରବାହିତ । ମହେନ୍ଦ୍ରାଚଳର ଠିକ୍ ପାଦଦେଶରେ କେତୋଟି ଆଦିବାସୀ ଶବର ପଲ୍ଲୀ ବିଦ୍ୟମାନ । ସେଠାରେ ଏକ ନିଭୃତ ସ୍ଥାନରେ ତିନଗୋଟି ମସୃଣ ପ୍ରସ୍ତର ଖଣ୍ଡ ବିଶାଳ ଏକ ଆମ୍ବଗଛ ମୂଳରେ ସ୍ଥାପନ କରି ଶବରମାନେ ଜଗନ୍ନାଥ, ସୁଭଦ୍ରା ଓ ବଳଦେବଙ୍କ ନାମରେ ଆରାଧନା କରୁଅଛନ୍ତି । ସେହି ପ୍ରସ୍ତରଗୁଡ଼ିକ ସମ୍ମୁଖରେ ଏକ କ୍ଷୁଦ୍ର ତୋରଣ ବା କୁଟୀର ମଧ୍ୟ ନିର୍ମିତ ହୋଇଅଛି । କେବେ ଓ କେଉଁମାନଙ୍କ ଦ୍ୱାରା ତାହା ସ୍ଥାପିତ ହୋଇଥିଲା, ତାହା କେହି ଜାଣନ୍ତି ନାହିଁ । ଗତବର୍ଷ ଏ ଲେଖକ କେତେ ଜଣ ବନ୍ଧୁଙ୍କ ସହିତ ସେହି ଅଗମ୍ୟ ସ୍ଥାନକୁ ଗୋଟିଏ ଜିପ୍ ଗାଡ଼ିରେ ଯାଇ ସେହି ପ୍ରସ୍ତର ମୂର୍ତ୍ତି ଓ ଶବରମାନଙ୍କ ଫଟୋ ଚିତ୍ର ନେଇ ଆସିଥିଲେ । ବୁଡ଼ାରସିଙ୍ଗି ଗ୍ରାମଠାରୁ ସେ ସ୍ଥାନଟି ପ୍ରାୟ ୧୪ କିଲୋମିଟର୍ ଦୂରରେ ମହେନ୍ଦ୍ରାଚଳର ପାଦଦେଶରେ ଅବସ୍ଥିତ । ୧୯୮୩ ମସିହାରେ ଆମେରିକାର କେତେଜଣ ଅଧ୍ୟାପିକାଙ୍କ ସଙ୍ଗେ ଏ ଲେଖକ ମହେନ୍ଦ୍ରାଚଳ ଶିଖର ଆରୋହଣ କରି କୁନ୍ତି ଦେଉଳ ନିକଟରେ ଏକ ବୃହତ୍ ପ୍ରସ୍ତରୋପରି ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ସଦୃଶ୍ୟ ଏକ ପ୍ରତିମା ଖୋଦିତ ହୋଇଥିବାର ଦେଖିଥିଲେ । କିନ୍ତୁ ଉପରୋକ୍ତ ତିନୋଟି ପ୍ରସ୍ତର ଫଳକ ସ୍ୱାଭାବିକ ମସୃଣ ଶିଳପୁଆ ଖଣ୍ଡପରି ସ୍ଥାପିତ ହୋଇ ଥିବାରୁ ସେଥିରେ ଶ୍ରୀଜଗନ୍ନାଥଙ୍କ ଆକୃତି ପରିଲକ୍ଷିତ ହୁଏ ନାହିଁ ।

ଉପରୋକ୍ତ ପ୍ରାଚୀନ ଆଦିବାସୀମାନଙ୍କ ଦେବତା କାଳକ୍ରମେ କିପରି ସେ ହିନ୍ଦୁମାନଙ୍କ ଆରାଧିତ ଶ୍ରୀପୁରୁଷୋତ୍ତମ ଜଗନ୍ନାଥରେ ରୂପାନ୍ତରିତ ହୋଇ ପୁରୀରେ ଇନ୍ଦ୍ରଦ୍ୟୁମ୍ନ ଓରଫ ଇନ୍ଦ୍ରବର୍ମାଙ୍କ ଦ୍ୱାରା ସ୍ଥାପିତ ହେଲେ, ତାହା ଏକ ଅନାବିଷ୍କୃତ ଅଜ୍ଞାତ ଐତିହାସିକ ରହସ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୁଡାରସିଙ୍ଗି ଗ୍ରାମ ଓ ଶ୍ରୀଜଗନ୍ନାଥଙ୍କ ପ୍ରସ୍ତର ପ୍ରତିମା ମଧ୍ୟବର୍ତ୍ତୀ ସ୍ଥାନରେ ଗୋଟିଏ ଅତି ପ୍ରାଚୀନ ମନ୍ଦିର ଭାଙ୍ଗି ପଡ଼ିଛି, ତାହା ଏକ ସୁନ୍ଦର ତାନ୍ତ୍ରିକ ଯୁଗର ଆରାଧିତ ଯୋନି କୁଣ୍ଡ ବୋଲି ଅନୁମିତ ହୁଏ । ବୁଡ଼ାରସିଙ୍ଗି ଠାରୁ ଅଳ୍ପ ଦୂର ସୋମେଶ୍ୱରଙ୍କ ମନ୍ଦିର ବିଦ୍ୟମାନ । ସେହି ମନ୍ଦିର ନିକଟରେ ମଧ୍ୟ ଶ୍ରୀଜଗନ୍ନାଥଙ୍କର ଅନ୍ୟ ଏକ ମନ୍ଦିର ନିର୍ମିତ ହୋଇ ଓଡ଼ିଆ ପୂଜାରୀଙ୍କ ଅକ୍ତିଆରରେ ପୂଜିତ ହେଉ ଅଛନ୍ତି । ସେଠାରେ ଇତସ୍ତତଃ ପଡ଼ିଥିବା ମୂର୍ତ୍ତିମାନଙ୍କ ମଧ୍ୟରେ ବୁଦ୍ଧ ପ୍ରତିମା ମଧ୍ୟ ଦେଖିବାକୁ ମିଳେ । ସମ୍ଭବତଃ ଏକଦା ସେହି ମନ୍ଦିରଟି ବୌଦ୍ଧ ଶ୍ରମଣମାନଙ୍କର ଏକ ବିହାର ହୋଇଥିଲା ।

ପରେ ଶ୍ୱେତକ ଗଙ୍ଗବଂଶୀୟ ରାଜାମାନେ ତାହା ଏକ ଶୈବ ମନ୍ଦିରରେ ପରିଣତ କରି ଶ୍ରୀଜଗନ୍ନାଥଙ୍କ ସଙ୍ଗେ ହରିହର ଉପାସନା ପାଇଁ ତୀର୍ଥସ୍ଥଳୀର ଉଦ୍‌ଭାବନ କରିଥିଲେ । ଏହି ମନ୍ଦିର ନିକଟରେ ପବିତ୍ର ମହେନ୍ଦ୍ରତନୟାର ପୂର୍ବବାହିନୀ ଶାଖା ପ୍ରବାହିତ ହୋଇ ବାରୁଣୀ ବନ୍ଦର (ବରୁଆଁ) ନିକଟରେ ସମୁଦ୍ର ସଙ୍ଗେ ମିଶିଛି । ଏହା ଖ୍ରୀ: ୧୪ଶ ଶତାବ୍ଦୀରେ ମଧ୍ୟ ଏକ ପୁଣ୍ୟତୀର୍ଥ ରୂପେ ପ୍ରସିଦ୍ଧି ଲାଭ କରିଥିବାରୁ, ଗଙ୍ଗବଂଶୀୟ ମହାରାଜା ଭାନୁଦେବ ଏଠାକୁ ଆସି ମନ୍ଦିର ଗାତ୍ରରେ ଗୋଟିଏ ଶିଳାଲେଖ ସଂଯୋଗ କରି ଯାଇଅଛନ୍ତି । ବାସ୍ତବରେ ଶ୍ୱେତକ-ମଣ୍ଡଳର ପ୍ରାଚୀନ ଗଙ୍ଗବଂଶୀୟ ରାଜ୍ୟମାନଙ୍କର କୀର୍ତ୍ତି ବହନ କରି ବହୁସଂଖ୍ୟକ ମନ୍ଦିର ଓ ଜଳାଶୟ ଏ ଅଞ୍ଚଳରେ ଅଦ୍ୟାପି ଅଜ୍ଞାତ ହୋଇ ରହିଛି । ଦୁଃଖର ବିଷୟ ଓଡ଼ିଶାର ବିଭାଜନ ପରେ ବୁଡ଼ାରଶିଙ୍ଗି ଓ ମଞ୍ଜୁଷା ପରି ଖାଣ୍ଟି ଓଡ଼ିଆଭାଷୀ ଅଞ୍ଚଳ ଆନ୍ଧ୍ର ପ୍ରଦେଶରେ ମିଶି ରହିଥିବାରୁ ଓଡ଼ିଶାର କେହି ବିଭାଗୀୟ ଅଫିସର କିମ୍ବା ଓଡ଼ିଆ ଗବେଷକ ଏଠାକୁ ଆସିବା ଆବଶ୍ୟକତା ବୋଧ କରୁ ନାହାନ୍ତି । ଏଣୁ ପ୍ରାଚୀନ ଶ୍ୱେତକ ରାଜ୍ୟର ପୂର୍ଣ୍ଣ ଇତିହାସ ଲୁକ୍‌କାୟିତ ହୋଇ ରହିଅଛି ।

ଶ୍ୱେତକର ମହାରାଜା ଇନ୍ଦ୍ରବର୍ମାଙ୍କ ଯୋଗୁଁ ନୀଳାଚଳ ଧାମରେ ଶ୍ରୀପୁରୁଷୋତ୍ତମଙ୍କର ଯେଉଁ ମନ୍ଦିର ଅର୍ଦ୍ଧନିର୍ମିତ କିମ୍ବା ଅବହେଳିତ ଅବସ୍ଥାରେ ରହିଥିଲା ତାହା ଖ୍ରୀ: ୧୨ଶ ଶତାବ୍ଦୀରେ ଗଙ୍ଗାବଂଶର ସ୍ୱନାମଧନ୍ୟ ମହାରାଜା ଅନନ୍ତ ବର୍ମା ଚୋଡ଼ଗଙ୍ଗଦେବ ପୂର୍ଣ୍ଣ କରି ଶ୍ରୀପୁରୁଷୋତ୍ତମଙ୍କୁ ସେଥିରେ ପ୍ରତିଷ୍ଠିତ କରିଥିଲେ । ତାଙ୍କ ପୂର୍ବରୁ ଶ୍ୱେତକର କୌଣସି ରାଜା ବା ରାଣୀ 'ଶ୍ୱେତଗଙ୍ଗା' ନାମକ ପୁଷ୍କରିଣୀ ଖୋଳାଇ ସେଠାରେ 'ଶ୍ୱେତମାଧବ' ନାମକ ବିଷ୍ଣୁ ପ୍ରତିମା ସ୍ଥାପନ କରିଥିବା ଅନୁମିତ ହୁଏ । ଶ୍ରୀନୀଳାଚଳ ଧାମରେ ଇନ୍ଦ୍ରବର୍ମାଙ୍କ ଦ୍ୱାରା ସମ୍ଭବତଃ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଖୋଳା ହୋଇଥିଲା । ତେଣୁ ଏ ଦୁଇଟି କୀର୍ତ୍ତି ଶ୍ୱେତକ ଗଙ୍ଗରାଜାମାନଙ୍କ ସ୍ମାରକ ରୂପେ ରହିଥିବା ମନେହୁଏ । ତେଣୁ ଓଡ଼ିଶାର ନିରପେକ୍ଷ ଗବେଷକମାନେ ଏ ସମ୍ବନ୍ଧରେ ଅଧିକ ତଥ୍ୟ ଅନୁସନ୍ଧାନ କରି ଓଡ଼ିଶା ଇତିହାସରେ ଶ୍ରୀକ୍ଷେତ୍ରର ଲୁକ୍‌କାୟିତ ବିବରଣୀ ଉଦ୍‌ଘାଟନ କରନ୍ତୁ ।

—୦—

# ଶ୍ରୀଜଗନ୍ନାଥଙ୍କର ଐତିହାସିକ ସ୍ୱରୂପ

ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଓ ଜନପ୍ରିୟତା ସମ୍ବନ୍ଧରେ ଅନେକ ବିଦ୍ୱାନ୍ ଓ ଗବେଷକ ବିଭିନ୍ନ ଦଗରୁ ଆଲୋଚନା କରିଅଛନ୍ତି । ସେମାନଙ୍କର ତଥ୍ୟମୂଳକ ସିଦ୍ଧାନ୍ତ କେତେକାଂଶରେ ଗ୍ରହଣୀୟ ହୋଇପାରିଛି ଏବଂ ଆଉ କେତେକାଂଶ ମଧ୍ୟ ବିବାଦୀୟ ପ୍ରଶ୍ନ ହୋଇ ରହିଛି । ତେଣୁ ବିବାଦୀୟ ପ୍ରଶ୍ନ ସମ୍ବନ୍ଧରେ ଯେଉଁ କେତୋଟି ସମସ୍ୟା ଓଡ଼ିଶା ଇତିହାସରେ ଦେଖାଦେଇଛି ସେ ସମ୍ବନ୍ଧେ ମୋର କେତୋଟି ପ୍ରଶ୍ନ ଅନ୍ତର୍ଭୁକ୍ତ ହୋଇପାରେ । ଯଥା—

୧- ହିନ୍ଦୁମାନଙ୍କର ଆରାଧିତ ଦେବଦେବୀଙ୍କ ମଧ୍ୟରେ ଶ୍ରୀଜଗନ୍ନାଥଙ୍କର ସ୍ଥାନ କେବେ ଓ କିପରି ସୁରକ୍ଷିତ ହୋଇଥିଲା ?

୨- ବୌଦ୍ଧ ଜୈନ ଆଦିବାସୀ ପ୍ରଭୃତି ଧର୍ମସମ୍ପର୍କୀୟ ବ୍ୟବସ୍ଥା ଯାହାକି ବର୍ତ୍ତମାନ ପ୍ରଚଳିତ ଜଗନ୍ନାଥ ଧାମରେ ଦେଖିବାକୁ ମିଳୁଛି, ସେ ସବୁ କେଉଁ କେଉଁ ସମୟରେ ଅନ୍ତର୍ଭୁକ୍ତ ହୋଇଥିବ ?

୩- ଭାରତର ଯେଉଁ ଅଞ୍ଚଳମାନଙ୍କରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠା କରାଯାଇଛି ସେଠାର ଆରାଧ୍ୟ ଦେବତାରୂପେ ସେ ପୂଜିତ ହେଉଥିବାର ନିଦର୍ଶନ କ'ଣ ?

୪- ଏବଂ ଶ୍ରୀଜଗନ୍ନାଥଙ୍କୁ ଜଣେ ରାଜା ରୂପେ ଓଡ଼ିଶାରେ ଆରାଧନା କରିବା କାହିଁକି ଓ କେବେ ହୋଇଥିବା ସମ୍ଭବ ?

ଉପରୋକ୍ତ ପ୍ରଶ୍ନଗୁଡ଼ିକ ସମାଧାନ କରିବାକୁ ହେଲେ ଭାରତରେ ପ୍ରଚଳିତ ଆଦିମ ଯୁଗରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଅର୍ଥାତ୍ ପୁରୀଠାରେ ଶ୍ରୀଜଗନ୍ନାଥଙ୍କର ମନ୍ଦିର ନିର୍ମିତ ହେବା କାଳ ପର୍ଯ୍ୟନ୍ତ ବିଭିନ୍ନ ଧର୍ମର ଇତିହାସ ଏବଂ ସେଥିସଙ୍ଗେ ରାଜନୈତିକ ସଂଘର୍ଷର ଇତିହାସ ଆଲୋଚନା କରିବାକୁ ପଡ଼ିବ । ସଂକ୍ଷେପରେ ଏଇ ବିରାଟ ସମସ୍ୟାର ଜଟିଳତା ଭିତରେ ନ ପଶି ଉପରୋକ୍ତ ଚାରୋଟି ବିଷୟ ପ୍ରତି ଅଧିକ ଆଲୋଚନା କରିବାକୁ ଚିନ୍ତାଶୀଳ ପଣ୍ଡିତମାନଙ୍କୁ ଆମ୍ଭେ ଅନୁରୋଧ କରିବୁ ।

ପ୍ରଥମତଃ ବ୍ରାହ୍ମଣ ଧର୍ମର ବେଦ, ପୁରାଣ, ମହାଭାରତ, ରାମାୟଣ କିମ୍ବା ଉପନିଷଦମାନଙ୍କରୁ ଶ୍ରୀଜଗନ୍ନାଥଙ୍କ ଅସ୍ତିତ୍ୱର ପ୍ରମାଣ ମିଳିନାହିଁ । ଋଗ୍‌ବେଦରେ

ସାୟଣାଚାର୍ଯ୍ୟ ଯେଉଁ ଭାଷ୍ୟ ପ୍ରକାଶ କରି ସିନ୍ଧୁଗର୍ଭରେ ଭାସମାନ ଦାରୁର ସୂଚନା ଉଲ୍ଲେଖ କରି ନୀଳଗିରିର ଶ୍ରୀପୁରୁଷୋତ୍ତମଙ୍କ ଦାରୁ ସଙ୍ଗେ ତାହା ତୁଳନୀୟ ବୋଲି ଖ୍ରୀଷ୍ଟ ଚତୁର୍ଦ୍ଦଶ ଶତାବ୍ଦୀରେ ପ୍ରକାଶ କରିଅଛନ୍ତି, ତାହା ଏହି ସନ୍ଦେହର ନିରାକରଣ କରିବାକୁ ସମର୍ଥ ହୋଇନାହିଁ । କାରଣ ଋଗ୍‌ବେଦରେ ସେହି ଅଂଶର ବିଭିନ୍ନ ଅର୍ଥ ପ୍ରକାଶ ପାଇଛି । 'ଆଗମ' ମାନଙ୍କରେ ହିନ୍ଦୁ ଦେବଦେବୀଙ୍କର ରୂପବର୍ଣ୍ଣନା ଅତି ପ୍ରାଞ୍ଜଳ ଓ ଠିକ ଭାବରେ ଲେଖା ହୋଇଥିଲେ ସୁଦ୍ଧା ଶ୍ରୀଜଗନ୍ନାଥଙ୍କର ରୂପ ବର୍ଣ୍ଣନା ସେଥିରେ ଦେଖିବାକୁ ମିଳେନାହିଁ । ପୂଜା-ପଦ୍ଧତିରେ ବିଭିନ୍ନ ଦେବଦେବୀଙ୍କ ବୀଜମନ୍ତ୍ର ରହିଥିଲେ ସୁଦ୍ଧା ଶ୍ରୀଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରାଙ୍କୁ ଯେଉଁ ମନ୍ତ୍ରରେ ବର୍ତ୍ତମାନ ପୂଜା କରାଯାଉଛି, ତାହା ପୂର୍ବ ପ୍ରଚଳିତ କେତେକ ହିନ୍ଦୁ ଦେବଦେବୀଙ୍କ ପ୍ରତି ପ୍ରଯୁଜ୍ୟ । ତେଣୁ ଏହି ତ୍ରିମୂର୍ତ୍ତିଙ୍କର ସ୍ୱତନ୍ତ୍ର ମନ୍ତ୍ର ହିନ୍ଦୁ ଶାସ୍ତ୍ରରେ ନିରୂପିତ ହୋଇନାହିଁ । ଏ ଦୃଷ୍ଟିରୁ ବିଚାର କଲେ ସ୍ପଷ୍ଟ ଜଣାଯାଉଛି ଯେ ହିନ୍ଦୁମାନଙ୍କର ମୌଳିକ ଦେବତା ମଧ୍ୟରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପରିଗଣିତ ହେଉ ନଥିଲେ ।

ବୈଦିକ ଯୁଗରେ ଦେବତାଙ୍କର ମୂର୍ତ୍ତିଗଠନ ଏବଂ ମୂର୍ତ୍ତିପୂଜା ହେଉ ନଥିଲା । ଆର୍ଯ୍ୟମାନେ ହୋମ-ଯାଗ-ଯଜ୍ଞାଦି କର୍ମରେ ମନ୍ତ୍ର ଉଚ୍ଚାରଣ କରି ଦେବଦେବୀଙ୍କୁ ଆରାଧନା କରୁଥିଲେ । କିନ୍ତୁ ସେମାନଙ୍କ ଆଗମନର ବହୁକାଳ ପୂର୍ବରୁ ଯେଉଁ ଦ୍ରାବିଡୀୟ ଜାତି ସିନ୍ଧୁ ଉପତ୍ୟକାରେ ଉପନିବେଶ ସ୍ଥାପନ କରିଥିଲେ, ସେମାନେ ମୂର୍ତ୍ତିପୂଜା କରୁଥିବା ଘଟଣା ପ୍ରତ୍ନତାତ୍ତ୍ୱିକ ଆବିଷ୍କାରରୁ ଆତ୍ମପ୍ରକାଶ କରିଛି । ହରପ୍ପା ଓ ମହେଞ୍ଜୋଦାରରୁ ପ୍ରାପ୍ତ ବିଭିନ୍ନ ପ୍ରକାର ମୂର୍ତ୍ତି ଏବେ ଭାରତରେ ଲୁପ୍ତ ହୋଇଗଲାଣି । କିନ୍ତୁ ତତ୍‌ପରବର୍ତ୍ତୀ ସେହି ଦ୍ରାବିଡ଼ୀୟ ମୂର୍ତ୍ତି-ପୂଜାର ଅନୁକରଣରେ ଯେଉଁ ଅଦ୍ଭୁତ ମୂର୍ତ୍ତିମାନଙ୍କର ଉଦ୍ଭାବନ ହେଲା, ସେଥିସଙ୍ଗେ ଶ୍ରୀଜଗନ୍ନାଥଙ୍କର ରୂପ କଳ୍ପିତ ହୋଇଥିଲା କି ନାହିଁ ତାହା ଏ ପର୍ଯ୍ୟନ୍ତ ଜଣାଯାଇନାହିଁ । ବୌଦ୍ଧ-ଯୁଗରେ ମହାଯାନୀ ସମ୍ପ୍ରଦାୟ ଯେଉଁ ମୂର୍ତ୍ତିଗୁଡ଼ିକ ପୂଜା କରୁଥିଲେ ସେଥିରେ ମଧ୍ୟ ଶ୍ରୀଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରାଙ୍କର ମୂର୍ତ୍ତି ପ୍ରତିଷ୍ଠା ନହୋଇଥିଲା । ସୁତରାଂ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଜଗନ୍ନାଥଙ୍କୁ ହିନ୍ଦୁ ଓ ବୌଦ୍ଧମାନେ ଆରାଧନା କରୁଥିଲେ ବୋଲି ଠିକ୍ ଭାବରେ କୁହାଯାଇ ନପାରେ ।

ଓଡ଼ିଶାରୁ ଖ୍ରୀଷ୍ଟୀୟ ତୃତୀୟ ବା ଚତୁର୍ଥ ଶତାବ୍ଦୀରୁ ଆରମ୍ଭ କରି ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ରାଜାମାନେ ତଥା ବୌଦ୍ଧ ଧର୍ମାବଲମ୍ବୀ ଭୌମକରବଂଶୀୟ ରାଜାମାନେ

ଯେଉଁ ତାମ୍ର ଶାସନ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ, ପୁଣି ସେଥିରେ ଯେଉଁ ଦାନ ଗ୍ରହୀତାମାନଙ୍କର ନାମଗୁଡ଼ିକ ଖୋଦିତ ହୋଇଥିଲା, ସେଥିରୁ ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କର ନାମ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଆମ୍ଭେ ପାଇପାରିନାହୁଁ । ଅଥଚ ଓଡ଼ିଶାରେ ଶ୍ରୀଜଗନ୍ନାଥ ଓରଫ୍ ଶ୍ରୀପୁରୁଷୋତ୍ତମ ହେଉଛନ୍ତି ଶ୍ରେଷ୍ଠ ଦେବତା । ବ୍ରାହ୍ମଣଙ୍କ ନାମ ମଧ୍ୟରେ ବିଷ୍ଣୁ ଶର୍ମା, ଶିବ ଶର୍ମା, ଦୁର୍ଗା ଭଟ୍ଟ, ଗଣପତି ଶର୍ମା, ଅଗ୍ନି ଶର୍ମା, ସୂର୍ଯ୍ୟ ଶର୍ମା, ଇତ୍ୟାଦି ଦେବଦେବୀଙ୍କ ନାମ ମିଳୁଥିଲେ ସୁଦ୍ଧା କେହି ହେଲେ ପୁରୁଷୋତ୍ତମ ଶର୍ମା କିମ୍ବା ବଳଭଦ୍ର ଶର୍ମା ନାମକ ଦାନ ଗ୍ରହିତା ଏ ପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୋଇନାହାନ୍ତି । କେବଳ ଭୌମକର ବଂଶୀୟ ଶୁଭକରଙ୍କ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ନେଉଳପୁର ତାମ୍ରଶାସନରେ ସର୍ବପ୍ରଥମେ ଶେଷୋକ୍ତ ଦୁଇଟି ନାମରେ ବ୍ରାହ୍ମଣ ଗ୍ରହିତା ପ୍ରକଟିତ ହୋଇଅଛନ୍ତି । ଏଥିରୁ ଆମର ମନେହୁଏ, ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବା ତତ୍ ପୂର୍ବରୁ ଓଡ଼ିଶାରେ ଶ୍ରୀଜଗନ୍ନାଥଙ୍କର ପ୍ରାଧାନ୍ୟ ନଥିଲା । କିନ୍ତୁ ଭୌମକର ବଂଶୀୟ ରାଜାମାନଙ୍କ ରାଜତ୍ୱର ଦ୍ୱିତୀୟାର୍ଦ୍ଧରେ ଶ୍ରୀପୁରୁଷୋତ୍ତମଙ୍କର ପ୍ରାଧାନ୍ୟ ଓଡ଼ିଶାରେ ପରିସ୍ଥାପିତ ହୋଇ ପଡ଼ୋଶୀ ରାଜ୍ୟମାନଙ୍କରେ ତାହା ବିସ୍ତାର ଲାଭ କଲା । ଏଣୁ ରାଜ୍ୟର କେତେକ ଅଭିଲେଖରୁ ପୁରୁଷୋତ୍ତମଙ୍କର ବନ୍ଦନା ଶ୍ଳୋକ ପ୍ରକାଶ ପାଇଛି । ସେହି ଅଭିଲେଖଗୁଡ଼ିକ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ବୋଲି ପଣ୍ଡିତମାନେ ସ୍ଥିର କରି ଅଛନ୍ତି ।

କିମ୍ବଦନ୍ତୀରୁ ପ୍ରମାଣ ମିଳୁଛି ଯେ, ଅତି ପ୍ରାଚୀନକାଳରେ ଯେତେବେଳେ ଓଡ଼ିଶାର ଉପକୂଳ ଅଞ୍ଚଳ ଆର୍ଯ୍ୟମାନଙ୍କର ଉପନିବେଶରେ ପରିଣତ ହୋଇ ନଥିଲା ସେତେବେଳେ ଶବରମାନେ ନୀଳମାଧବ ରୂପେ ଦେବତାଙ୍କୁ ପୂଜା କରୁଥିଲେ । ପରେ ସେହି ଦେବତାଙ୍କୁ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନେ ଅପହରଣ କରିବାକୁ ଚେଷ୍ଟା କରି ବିଷ୍ଣୁ ଆରାଧନାର ଆୟୋଜନ କରିଥିଲେ । ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ଶବର ବା ପୁଳିନ୍ଦ ନାମକ ଜାତି ପୂର୍ବଘାଟ ପର୍ବତମାଳାର ବିଭିନ୍ନ ଅଞ୍ଚଳରେ ରହି ତାଙ୍କର ନିଜ ଭାଷାରେ ପରିକଳ୍ପିତ ଦେବତାଙ୍କୁ ପ୍ରସ୍ତର ବା ଦାରୁମୂର୍ତ୍ତିରେ ପୂଜା କରୁଥିଲେ । ତାଙ୍କ ଭାଷାରେ ନୀଳମାଧବ ରୂପକ ସଂସ୍କୃତ ଶବ୍ଦ ପ୍ରଚଳିତ ନଥିଲା । ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କ ଅଭିଲେଖରେ ବର୍ଣ୍ଣିତ ଅଛି, ପୂର୍ବେ କଳିଙ୍ଗରେ ପୁଳିନ୍ଦସେନ ନାମକ ଜଣେ ନେତୃସ୍ଥାନୀୟ ବ୍ୟକ୍ତି (ରାଜା) ଶାସନ କାର୍ଯ୍ୟ ଚଳାଉଥିଲେ । ତାଙ୍କ ବୃଦ୍ଧ ବୟସରେ ସେ ଦେବତାଙ୍କୁ ଆରାଧନା କରି ପ୍ରାର୍ଥନା କଲେ "ହେ ସ୍ୱୟଂଭୂ, ମୋ ପରେ କଳିଙ୍ଗ ରାଜ୍ୟର ଶାସନ ଚଳାଇବାକୁ କିଏ ସମର୍ଥ ହେବ ଆଦେଶ କରନ୍ତୁ ।"

ସ୍ୱପ୍ନରେ ଦେବତା ଦେଖାଦେଇ କହିଲେ "କାଲି ପ୍ରଭାତରୁ ମହେନ୍ଦ୍ରାଚଳ ଶିଖର ଦେଶରେ ଗୋଟିଏ ବିଶାଳ ପ୍ରସ୍ତର ଦୁଇଫାଳ ହୋଇ ଫାଟିଯିବ, ସେଥିରୁ ଯେଉଁ ପ୍ରତିଭାବାନ୍ ଯୁବକ ବାହାରିବେ, ସେ ହେବେ ଭୂମିର ଦାୟାଦ ।" ସ୍ୱୟଂଭୂଙ୍କର ଏହି ଆଦେଶ ଅନୁସାରେ ଶୈଳ ଗର୍ଭରୁ ଜଣେ ଯୁବାପୁରୁଷ ଦେଖାଦେଲେ । ତାଙ୍କର ନାମ ରଖାଗଲା 'ଶୈଳୋଦ୍ଭବ'। ସେ କଳିଙ୍ଗ ସଙ୍ଗେ କୋଙ୍ଗଦ ପ୍ରଭୃତି ରାଜ୍ୟରେ ଶାସନ ବିସ୍ତାର କରି ରହିଲେ । ପରବର୍ତ୍ତୀ ରାଜାମାନେ ଶୈଳୋଦ୍ଭବ ବଂଶୀ ନାମରେ ପରିଚିତ ହେଲେ ।

ଏଠାରେ ପ୍ରଶ୍ନ ହେଉଛି, 'ସ୍ୱୟଂଭୂ' ନାମକ ଦେବତା, ଯେ କି ଆଦିବାସୀ ପୁଲିନ୍ଦଙ୍କ ଦ୍ୱାରା ମହେନ୍ଦ୍ରାଚଳର ଶିଖର ଦେଶରେ ପୂଜିତ ହେଉଥିଲେ, ସେ କଣ ପ୍ରକୃତରେ ହିନ୍ଦୁମାନଙ୍କ ଦେବତା 'ସ୍ୱୟଂଭୂ' ? ଏହା ପରବର୍ତ୍ତୀ ସଂସ୍କୃତାଭିଜ୍ଞ ପଣ୍ଡିତମାନଙ୍କର ନାମକରଣ ବୋଲି ଜଣାଯାଉଛି । ସେହିପରି ନୀଳମାଧବ ମଧ୍ୟ ପଣ୍ଡିତମାନଙ୍କର ନାମିତ ଦେବତା ।

ଓଡ଼ିଶାରେ ସ୍ତମ୍ଭେଶ୍ୱରୀ ନାମକ ଦେବୀ କେତେକ ରାଜପରିବାରରେ ଇଷ୍ଟଦେବୀ ରୂପେ ପୂଜିତ ହେଉଥିବା ପ୍ରସଙ୍ଗ ପ୍ରାଚୀନ ଅଭିଲେଖମାନଙ୍କରୁ ଜଣାଯାଇଛି । ଏହି ଦେବୀଙ୍କର ସ୍ୱରୂପ ସ୍ତମ୍ଭ ରୂପରେ ଦେଖାଦେବାରୁ ତାଙ୍କୁ ସଂସ୍କୃତଜ୍ଞ ପଣ୍ଡିତମାନେ ସ୍ତମ୍ଭେଶ୍ୱରୀ ଆଖ୍ୟା ଦେଇଅଛନ୍ତି । କିନ୍ତୁ ଆଦିବାସୀମାନେ ଅଦ୍ୟାବଧି ଗୋଟିଏ ଗୋଟିଏ କାଷ୍ଠ ସ୍ତମ୍ଭ କୌଣସି ଏକ ନିଭୃତ ସ୍ଥାନରେ ସ୍ଥାପନ କରି ଦେବୀ ରୂପେ ତାଙ୍କୁ ପୂଜା କରୁଥିବାର ଦେଖାଯାଏ । ତେଣୁ ସ୍ତମ୍ଭେଶ୍ୱରୀ ଯେ ମୁଖ୍ୟତଃ ଆଦିବାସୀ ପୂଜିତା ଦେବୀ, ଏହା କହିବା ବାହୁଲ୍ୟ ମାତ୍ର ।

ବର୍ତ୍ତମାନ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ପ୍ରାଚୀନ ବୈଦିକ ଯୁଗର ମନ୍ତ୍ରପ୍ରଧାନ ଦେବତାଙ୍କର ଆରାଧନା ଏବଂ ପରବର୍ତ୍ତୀ ଯୁଗର ମୂର୍ତ୍ତି-ଆରାଧନା ମଧ୍ୟରେ ଯେଉଁ କାଳର ବ୍ୟବଧାନ ରହିଛି, ସେଥିମଧ୍ୟରୁ କୌଣସି ଗୋଟିଏ ସମୟରେ ଓଡ଼ିଶାର ଅନ୍ୟତମ ଶ୍ରେଷ୍ଠ ଦେବତା ଶ୍ରୀଜଗନ୍ନାଥଙ୍କର ପରିକଳ୍ପନା ଏବଂ ଆରାଧନା ସ୍ଥିର କରିବାକୁ ହେବ ।

ଓଡ଼ିଶା ଇତିହାସରୁ ପ୍ରମାଣିତ ହେଉଛି ଯେ, ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଯେତେବେଳେ ହୁଏନ୍‌ସାଂ ଏ ଅଞ୍ଚଳକୁ ଆସିଥିଲେ ସେତେବେଳେ ମଧ୍ୟ ଓଡ଼ିଶାରେ କୋଙ୍ଗଦ ନାମକ ଗୋଟିଏ ରାଜ୍ୟର ଅଭ୍ୟୁଦୟ ଘଟିଥିଲା ! ଏହା ଆଧୁନିକ ପୁରୀ ଜିଲ୍ଲାର ସମୁଦାୟ ଅଞ୍ଚଳ ସମେତ ଗଞ୍ଜାମର ପୂର୍ବାଞ୍ଚଳ ଏବଂ କଟକ ଜିଲ୍ଲାର

ଦକ୍ଷିଣାଂଶ ମଧ୍ୟରେ ବିସ୍ତାର ଲାଭ କରିଥିଲା । ସେ ରାଜ୍ୟର ପ୍ରଥମ ରାଜା ଶୈଳୋଦ୍ଭବ, ଯେ କି ସ୍ୱୟଂଭୂଙ୍କର ଆଦେଶକ୍ରମେ ପୁଲିନ୍ଦସେନଙ୍କର ଦାୟାଦ ରୂପେ ରାଜତ୍ୱ ବିସ୍ତାର କଲେ, ସେ ନିଶ୍ଚିତ ଭାବରେ ସେହି ମହେନ୍ଦ୍ରାଚଳର ସ୍ୱୟଂଭୂଙ୍କୁ ହିଁ ନିଜ ରାଜ୍ୟରେ ଇଷ୍ଟଦେବତା ରୂପେ ଆରାଧନା କରିଥିବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଶୈଳୋଦ୍ଭବ ବଂଶୀୟ ରାଜାମାନେ ସମସ୍ତେ 'ପରମ-ମାହେଶ୍ୱର' ଉପାଧି ବ୍ୟବହାର କରିଥିବାରୁ ତାଙ୍କର ବ୍ରାହ୍ମଣ୍ୟ ପୂଜକ-ମାନେ ସ୍ୱୟଂଭୂଙ୍କୁ ଶିବମାହେଶ୍ୱର ନାମରେ ଆରାଧନା କରିବା ସମ୍ଭବ । କିନ୍ତୁ ତାଙ୍କର ରାଜ୍ୟରେ 'ରାଷ୍ଟ୍ରଦେବତା' ରୂପେ ସ୍ୱୟଂଭୂହିଁ ପ୍ରତିଷ୍ଠା ଲାଭ କରିଥିବା ସମ୍ଭବ । କାରଣ ଭାରତର ପୂର୍ବ ପ୍ରଚଳିତ ରୀତି ଅନୁସାରେ ରାଜାଙ୍କର ଇଷ୍ଟ-ଦେବତା ହିଁ ରାଜ୍ୟର ରକ୍ଷକ ରୂପେ ପରିକଳ୍ପିତ ହେଉଥିଲେ । ତେଣୁ ତାଙ୍କୁ ସୁରକ୍ଷିତ କରିବା ଏକ ସୁପ୍ରଧାନ କର୍ମ ରୂପେ ରାଜାମାନେ ପାଳୁଥିଲେ । ଯଦି କୌଣସି ଶତ୍ରୁ ଇଷ୍ଟଦେବତାଙ୍କୁ ଅପହରଣ କରନ୍ତି ତେବେ ରାଜ୍ୟ ମଧ୍ୟ ସେଥି-ସଙ୍ଗେ ଅପହୃତ ହୋଇଯିବ, ଏହି ବିଶ୍ୱାସରେ ଅତି ଗୁପ୍ତସ୍ଥାନରେ ଇଷ୍ଟଦେବତାଙ୍କୁ ସୁରକ୍ଷିତ କରିବାକୁ ହେଉଥିଲା । ସମ୍ଭବତଃ ଅତି ଗୁପ୍ତରେ ସୁରକ୍ଷିତ ନୀଳମାଧବଙ୍କୁ ଅପହରଣ କରିବାପାଇଁ ବିଦ୍ୟାପତିଙ୍କର ପ୍ରଚେଷ୍ଟା ଏବଂ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗ୍ରହ ଏଥିରେ ଗୋଟିଏ ନିଦର୍ଶନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭୌମକର ବଂଶୀୟ ରାଜାମାନେ ବୌଦ୍ଧଧର୍ମ ଗ୍ରହଣ କରିଥିବାରୁ ତାଙ୍କର ଇଷ୍ଟଦେବତା ମଧ୍ୟ ବୁଦ୍ଧରୂପରେ ପୂଜିତ ହେବାକୁ ଲାଗିଲେ । ଯେଉଁ ଦେବତା ସ୍ୱୟଂଭୂ ବା ଶିବ ନାମରେ ଶୈଳୋଦ୍ଭବମାନଙ୍କ ଦ୍ୱାରା ଓଡ଼ିଶାରେ ଖ୍ୟାତି ବିସ୍ତାର କରିଥିଲେ ଏବଂ ରାଜ୍ୟର ରାଷ୍ଟ୍ରଦେବତା ରୂପେ ସର୍ବତ୍ର ପୂଜିତ ହେଉଥିଲେ ଆଉ ମଧ୍ୟ ତାଙ୍କର ପୂଜକ ରୂପେ ସେହି ଆଦିବାସୀ ଶବରମାନେ ନିଯୁକ୍ତ ହୋଇଥିଲେ, ଠିକ୍ ସେହି ଦେବତାଙ୍କୁ ଭୌମକର ବଂଶୀୟ ରାଜାମାନେ ତଥାଗତ ବୁଦ୍ଧନାମରେ ଅଭିହିତ କରି ଶବରମାନଙ୍କ ଦ୍ୱାରା ତାଙ୍କର ପୂଜାପଦ୍ଧତି ନିୟନ୍ତ୍ରଣ କରିବାକୁ ଲାଗିଲେ । ବୌଦ୍ଧଧର୍ମର କେତେକ ଆଚାର ତାଙ୍କ ମନ୍ଦିରରେ ପ୍ରବର୍ତ୍ତିତ ହେଲା । ଜାତିଭେଦ ପ୍ରଥାର ବିରୁଦ୍ଧବାଦୀମାନେ ହିଁ ଦେବମନ୍ଦିରରେ ନିମ୍ନ-ଶ୍ରେଣୀୟ ମେହେନ୍ତର ବା ହାଡ଼ିମାନଙ୍କୁ ପ୍ରବେଶ ଅଧିକାର ଦେଲେ । ମହାପ୍ରସାଦ ସେବନରେ ଜାତିଭେଦର ଲେଶ ରହିଲା ନାହିଁ । ନିର୍ମାଲ୍ୟ ଓ କୈବଲ୍ୟ ସମେତ ବୋଧିବୃକ୍ଷ ପ୍ରତୀକ କଳ୍ପବୃକ୍ଷର ଆରାଧନା ପ୍ରଚଳିତ ହେଲା । ଅଦ୍ୟାବଧି

ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧାବତାର ରୂପେ ଗ୍ରହଣ କରାଯାଇଛି । କିନ୍ତୁ ତାଙ୍କର ସେବକ ସେଇ ଆଦିବାସୀ ହିଁ ନିଯୁକ୍ତ ହେଲେ ।

ବୌଦ୍ଧଧର୍ମର ଅବସାନ ପରେ ସୋମବଂଶୀ ରାଜା ଯଯାତିଙ୍କର ସମୟରେ ଯେତେବେଳେ ହିନ୍ଦୁଧର୍ମ ପୁନଃ ପ୍ରତିଷ୍ଠିତ ହେଲା, ସେତେବେଳେ ଜଗନ୍ନାଥଙ୍କ ସଙ୍ଗେ ବଳଭଦ୍ର ଓ ସୁଭଦ୍ରାଙ୍କୁ ମିଶାଇ ବିଶାଳ ତ୍ରିକଳିଙ୍ଗ ସାମ୍ରାଜ୍ୟର ଏକତା ସୃଷ୍ଟି କରିବାକୁ ବିଭିନ୍ନ ଅଞ୍ଚଳର ରାଷ୍ଟ୍ର ଦେବତାଙ୍କୁ ଏକତ୍ରିତ କରାଗଲା । ଆମ୍ଭର ମନେହୁଏ, କଳିଙ୍ଗ ଓ କୋଙ୍ଗଦରେ ଯେଉଁ ଦେବତା ପୂଜିତ ହେଉଥିଲେ ଏବଂ ବୁଦ୍ଧ ରୂପରେ ପରେ ଆରାଧିତ ହେଲେ, ସେ ପୁରୁଷୋତ୍ତମ ଜଗନ୍ନାଥ ରୂପେ ପୁରୀରେ ପ୍ରତିଷ୍ଠିତ ହୋଇଛନ୍ତି । ସେହିପରି ପଶ୍ଚିମ-ଓଡ଼ିଶାରେ ପୂଜିତ ସ୍ତମ୍ଭେଶ୍ୱରୀ ଦେବୀ ଏକାନଂଶା ସୁଭଦ୍ରା ରୂପେ ଏବଂ ତୋଷଳୀ ରାଜ୍ୟରେ, ଅର୍ଥାତ୍ ଆଧୁନିକ ଉତ୍ତର-ଓଡ଼ିଶାରେ, ପୂଜିତ ବଳଦେବ (ପ୍ରାଚୀନ 'ନାଗରାଜ') ଯେ କି ସେହି ରାଜ୍ୟର ରାଷ୍ଟ୍ରଦେବତା ରୂପେ ପ୍ରତିଷ୍ଠା ଲାଭ କରିଥିଲେ, ସେ ତ୍ରିକଳିଙ୍ଗ-ସାମ୍ରାଜ୍ୟର ତିନୋଟି ରାଷ୍ଟ୍ରଦେବତା ତ୍ରିମୂର୍ତ୍ତି ରୂପେ ପୁରୀରେ ଅବସ୍ଥାପିତ ହେଲେ ।

ମହାରାଜ ଯଯାତିଙ୍କ ଦ୍ୱାରା ଶ୍ରୀମନ୍ଦିର ଗଠନ ସମ୍ଭବତଃ ପୂର୍ଣ୍ଣତା ଲାଭ କଲା ନାହିଁ । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ଗଙ୍ଗବଂଶୀୟ ମହାରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଯେତେବେଳେ ସୋମବଂଶୀ ରାଜାମାନଙ୍କର ଉଚ୍ଛେଦ ସାଧନ କରି କଳିଙ୍ଗ ତୋଷଳ ଓ ଦକ୍ଷିଣ କୋଶଳକୁ ଏକତ୍ରିତ କରି ଗୋଟିଏ ବିଶାଳ ସାମ୍ରାଜ୍ୟ ଗଠନ କଲେ, ସେତେବେଳେ ପୁରୀର ସେହି ବିରାଟ ଶ୍ରୀଜଗନ୍ନାଥ-ମନ୍ଦିର ପୂର୍ଣ୍ଣତା ଲାଭ କଲା । ଏଣୁ ତାଙ୍କ ପରବର୍ତ୍ତୀ ରାଜାମାନେ ଚୋଡ଼ଗଙ୍ଗଙ୍କର ପ୍ରଶସ୍ତିରେ ଲେଖିଲେ—

ଯେଉଁ ଦେବତା ପୁରୁଷୋତ୍ତମଙ୍କର ତ୍ରିବିକ୍ରମ ରୂପ ହେତୁ ଗୋଟିଏ ପାଦ ସମଗ୍ର ଧରାବକ୍ଷରେ ଏବଂ ଅନ୍ୟ ପାଦ ସମୁଦାୟ ଆକାଶରେ ପରିବ୍ୟାପ୍ତ; ଯାହାଙ୍କର ନାଭିଚକ୍ର ଜଗମାନଙ୍କ ପରି ସୁବିଶାଳ; ଯାହାଙ୍କର ନେତ୍ରଦ୍ୱୟ ସୂର୍ଯ୍ୟ ଓ ଚନ୍ଦ୍ରର ପ୍ରତୀକ, ତାଙ୍କର ପ୍ରାସାଦ ଯାହାକି ପୂର୍ବ ରାଜାମାନଙ୍କଦ୍ୱାରା ଉପେକ୍ଷିତ ହୋଇଥିଲା, ତାହା ମହାରାଜା ଗଙ୍ଗେଶ୍ୱରଙ୍କ ବ୍ୟତୀତ ଅନ୍ୟ କେଉଁ ରାଜା କରିବାକୁ ସମର୍ଥ ହୋଇପାରନ୍ତେ ?

ମହାରାଜା ଚୋଡ଼ଗଙ୍ଗ ପ୍ରଥମେ 'ପରମ ମାହେଶ୍ୱର' ଉପାଧି ବହନ କରି ଶୈବଧର୍ମ ଗ୍ରହଣ କରିଥିଲେ ମଧ୍ୟ ଉତ୍କଳ ଜୟ କଲା ପରେ ସେ

ବ୍ରାହ୍ମଣ୍ୟଧର୍ମ, ଶୈବଧର୍ମ ଓ ବୈଷ୍ଣବଧର୍ମର ଉପାଧିମାନ ଏକତ୍ରରେ ବ୍ୟବହାର କରିବାକୁ ଲାଗିଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ତାଙ୍କ ସମୟରେ ପ୍ରଚଳିତ ଧର୍ମ ବିଦ୍ୱେଷ ରାଜ୍ୟରେ ଘୋର ଅନିଷ୍ଟ ଘଟାଉଥିବାରୁ ସେ ସମସ୍ତ ଧର୍ମ ଏକତ୍ର କରି ଶ୍ରୀପୁରୁଷୋତ୍ତମଙ୍କର ଧର୍ମସଂସ୍ଥା ଏପରି ନିୟନ୍ତ୍ରିତ କଲେ, ଯାହା-ଫଳରେ ଜାତି ଜାତି ଓ ଧର୍ମ ଧର୍ମ ମଧ୍ୟରେ କୌଣସି ବିଦ୍ୱେଷକୁ ପ୍ରଶ୍ରୟ ଦିଆଗଲା ନାହିଁ । ନୀଳାଚଳ ଧାମରେ ବହୁସଂଖ୍ୟାରେ ମଠ ପ୍ରତିଷ୍ଠାଲାଭ କରିଥିବାରୁ ବିଭିନ୍ନ ମତବାଦୀମାନଙ୍କର ଏକତ୍ର ସମାବେଶ ହେବାର ସୁଯୋଗ ମିଳିଲା । ସର୍ବଧର୍ମନ୍ୱୟ ଧର୍ମ ପ୍ରତିଷ୍ଠିତ ହୋଇ ଶ୍ରୀଜଗନ୍ନାଥଙ୍କୁ ଏକ ନୂତନ ପରିସର ମଧ୍ୟରେ ସର୍ବୋତ୍କୃଷ୍ଟ ଦେବତାରୂପେ ପୂଜା କରାଗଲା ।

ଗଙ୍ଗବଂଶୀୟ ରାଜାମାନଙ୍କ ମଧ୍ୟରେ ଦ୍ୱିତୀୟ ଅନଙ୍ଗଭୀମଦେବ ଜଣେ ପରମ ବୈଷ୍ଣବଧର୍ମାବଲମ୍ବୀ ରାଜା ରୂପେ ତାଙ୍କ ସାମ୍ରାଜ୍ୟକୁ ଶ୍ରୀଜଗନ୍ନାଥଙ୍କ ନାମରେ ଉତ୍ସର୍ଗ କରିବାରୁ ସର୍ବଭାରତୀୟ ସ୍ତରରେ ନୀଳାଚଳ-କ୍ଷେତ୍ର ପ୍ରାଧାନ୍ୟ ବିସ୍ତାର କଲା । ଆଦିଶଙ୍କରଙ୍କର ଆବିର୍ଭାବ ହେତୁ ମଧ୍ୟ ତାହା ଭାରତର ଚାରିଧାମରୁ ଗୋଟିଏ ଧାମରୂପେ ପ୍ରତିଷ୍ଠିତ ହେଲା । ଅନଙ୍ଗଭୀମଙ୍କର ଆନ୍ତରିକତା ଏବଂ ଉଦ୍ୟମରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ରୀତି ନୀତି ଅବିଚ୍ଛିନ୍ନ ଭାବେ ପରିଚାଳିତ ହେଉଅଛି । ଓଡ଼ିଶାର ଅର୍ଥନୀତି, ରାଜନୀତି ଓ ସମାଜନୀତି ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ପରିଚାଳିତ ହେଉଛି । ତେଣୁ ବହୁକାଳ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କୁ ଆଶ୍ରୟ କରି ଓଡ଼ିଶାର ରାଜାମାନେ ଯାବତୀୟ ଆପଦ ବିପଦରୁ ରକ୍ଷା ପାଉଥିଲେ ଏବଂ କଠିନ ସମସ୍ୟାର ସମ୍ମୁଖୀନ ହେଲେ ସେମାନେ ଶ୍ରୀଜଗନ୍ନାଥଙ୍କୁ ଜଣାଇ ତାଙ୍କ ନାମରେ ସେଥିର ସମାଧାନ କରୁଥିଲେ ।

—୦—

# ନୀଳଗିରି ଓ ମହେନ୍ଦ୍ରଗିରି

ଭାରତର କେତୋଟି ପ୍ରସିଦ୍ଧ ପୁଣ୍ୟକ୍ଷେତ୍ରମାନଙ୍କ ମଧ୍ୟରେ ନୀଳାଚଳ ଅନ୍ୟତମ । ଖ୍ରୀଷ୍ଟୀୟ ପ୍ରାୟ ୮ମ ଶତାବ୍ଦୀରୁ ଏହାର ଖ୍ୟାତି ସର୍ବତ୍ର ପ୍ରସାର ଲାଭ କରିଥିଲା । ମହୋଦଧିରେ ସ୍ନାନକରି ଶ୍ରୀ ପୁରୁଷୋତ୍ତମଙ୍କୁ ଦର୍ଶନ କଲେ ସ୍ୱର୍ଗପ୍ରାପ୍ତି ହୁଏ, ଏହି ବିଶ୍ୱାସ ହିନ୍ଦୁମାନଙ୍କର ଦୃଢ଼ ରହିଛି । ସ୍କନ୍ଦପୁରାଣ, କପିଳ ସଂହିତା ଗ୍ରନ୍ଥରେ ନୀଳାଚଳ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । କିନ୍ତୁ ଖ୍ରୀ:୮ମ ଶତାବ୍ଦୀ ପୂର୍ବର କୌଣସି ଗ୍ରନ୍ଥରେ କିମ୍ବା ତତ୍‌କାଳୀନ ଆଗମ ଗ୍ରନ୍ଥଗୁଡ଼ିକରେ ପୁରୁଷୋତ୍ତମ ସଂପର୍କରେ କୌଣସି ବିବରଣୀ ଉଲ୍ଲେଖ ଥିବା ଜଣାଯାଏ ନାହିଁ । ଏତେ ବଡ଼ ପବିତ୍ର କ୍ଷେତ୍ର ତଥା ପୁରୁଷୋତ୍ତମ ଜଗନ୍ନାଥଙ୍କ ମହିମା ୮ମ ଶତାବ୍ଦୀ ପୂର୍ବରୁ ପ୍ରଚଳିତ ନଥିବା ତାତ୍ପର୍ଯ୍ୟ କ'ଣ ? ଆହୁ ମଧ୍ୟ, ପୁରୁଷୋତ୍ତମ କିମ୍ବା ବଳଭଦ୍ର ନାମ କୌଣସି ବ୍ୟକ୍ତି ବ୍ୟବହାର କରିଥିବା ଦୃଷ୍ଟାନ୍ତ ମଧ୍ୟ ଓଡ଼ିଶାରୁ ଅଥବା ଅନ୍ୟାନ୍ୟ ଅଞ୍ଚଳରୁ ଆବିଷ୍କୃତ ୮ମ ଶତାବ୍ଦୀ ପୂର୍ବବର୍ତ୍ତୀ ଅଭିଲେଖ-ମାନଙ୍କରେ ଉଲ୍ଲେଖ ହୋଇ ନଥିବା କାରଣ କ'ଣ ? ଅଥଚ, ବିଷ୍ଣୁ, ମାଧବ, ଗୋପାଳ, କୃଷ୍ଣ, ଅଚ୍ୟୁତ, ଚକ୍ରଧର ପ୍ରଭୃତି ନାମ ପ୍ରାଚୀନ ଅଭିଲେଖମାନଙ୍କରୁ ଦେଖିବାକୁ ମିଳେ । ତେଣୁ, ଆମ୍ଭର ସନ୍ଦେହ ହେଉଛି ଯେ, ମଧ୍ୟଯୁଗ ପୂର୍ବରୁ ପୁରୁଷୋତ୍ତମଙ୍କ ପ୍ରସିଦ୍ଧି ସମ୍ଭବତଃ ବିସ୍ତାରିତ ହୋଇନଥିଲା । ସେହିପରି ନୀଳାଚଳ କ୍ଷେତ୍ର ମଧ୍ୟ କାଶୀ (ବାରାଣସୀ), ଗୟା, ମଥୁରା, ଅଯୋଧ୍ୟା, ପ୍ରୟାଗ ପ୍ରଭୃତି ପୁଣ୍ୟତୀର୍ଥ ପରି ପ୍ରସିଦ୍ଧି ଲାଭ କରିନଥିଲା । ତେବେ ଓଡ଼ିଶାରେ ପ୍ରତିଷ୍ଠିତ ବୈତରଣୀ ତଟବର୍ତ୍ତୀ 'ବିରଜା କ୍ଷେତ୍ର' କିମ୍ବା 'ବରାହ କ୍ଷେତ୍ର' ଏବଂ ଏକାମ୍ର 'ଶୈବକ୍ଷେତ୍ର' ୮ମ ଶତାବ୍ଦୀ ପୂର୍ବରୁ ଲୋକପ୍ରସିଦ୍ଧି ଲାଭ କରିଥିଲା । ବରାହ କ୍ଷେତ୍ରର ସମସାମୟିକ ଯୁଗରେ ଦକ୍ଷିଣ ଓଡ଼ିଶାରେ ମହେନ୍ଦ୍ରାଚଳର ଶିଖର ଦେଶରେ 'ପରଶୁରାମ-କ୍ଷେତ୍ର' ପ୍ରସିଦ୍ଧ ପୁଣ୍ୟକ୍ଷେତ୍ର ରୂପେ କଳିଙ୍ଗରେ ସୁପରିଚିତ ହୋଇଥିଲା । ସେଠାରେ ବିଷ୍ଣୁଙ୍କର ଷଷ୍ଠ ଅବତାର ପରଶୁରାମ ପୃଥିବୀକୁ ନିକ୍ଷତ୍ରିୟ କରି ସ୍ୱୀୟ ଆଶ୍ରମ ସ୍ଥାପନ କରିଥିବା ପ୍ରସଙ୍ଗ ପୁରାଣମାନଙ୍କରେ ଉଲ୍ଲେଖ ହୋଇଅଛି । ରାମାୟଣ-ଯୁଗରେ ସୀତାଙ୍କୁ ଠାବ କରିବା ସକାଶେ ମହାବୀର ହନୁମାନ ସେହି ପର୍ବତର ଶିଖରରୁ ଲଙ୍କାକୁ ଆକାଶ ମାର୍ଗରେ ଯାତ୍ରା କରିଥିବା ପ୍ରସଙ୍ଗ ରାମାୟଣ କିଷ୍କିନ୍ଧା କାଣ୍ଡରେ ବର୍ଣ୍ଣିତ ହୋଇଅଛି । ଶିବ-ପୁରାଣରେ ଲେଖାଅଛି, ସେଠାରେ ଗୋକର୍ଣ୍ଣକ୍ଷେତ୍ର ପ୍ରତିଷ୍ଠା ଲାଭ କରିଥିଲା ।

କଳିଙ୍ଗର ପ୍ରାଚୀନ ଗଙ୍ଗବଂଶୀୟ ରାଜାମାନେ ସେହି ପର୍ବତ ଚୂଡ଼ାରେ ତାଙ୍କ ଇଷ୍ଟ-ଦେବତା ଗୋକର୍ଣ୍ଣେଶ୍ୱରଙ୍କ ଆରାଧନା କରୁଥିଲେ । ସେହି ରାଜାମାନଙ୍କ ପ୍ରଦତ୍ତ ପ୍ରତ୍ୟେକ ତାମ୍ର ଶାସନରେ ପ୍ରଥମେ ଲେଖାରହିଛି, "ମହେନ୍ଦ୍ରାଚଳାମଳ କନକ ଶିଖର ପ୍ରତିଷ୍ଠିତସ୍ୟ ଚରାଚରଗୁରୋଃ ସକଳ ଭୁବନ ନିର୍ମାଣୈକ ସୂତ୍ର-ଧାରସ୍ୟ ଶଶାଙ୍କ ଚୂଡ଼ାମଣି ସୃଷ୍ଟିସ୍ଥିତି ପ୍ରଳୟ କାରଣ ହେତୋ ଭଗବାନ ଗୋକର୍ଣ୍ଣେଶ୍ୱର ଚରଣାରାଧନାବାପ୍ତ ପୁଣ୍ୟ ନିଚୟ..." ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ଅନ୍ତତଃ ଗୁପ୍ତ-ଯୁଗ ଆରମ୍ଭରେ ଯେତେବେଳେ କଳିଙ୍ଗରେ ମାଠର ବଂଶୀୟ ତଥା ଗଙ୍ଗବଂଶୀୟ ରାଜାମାନେ ରାଜତ୍ୱ ବିସ୍ତାର କରି ବିଭିନ୍ନ ପ୍ରଦେଶରୁ ବ୍ରାହ୍ମଣ ଏବଂ ଉଚ୍ଚଜାତୀୟ ଲୋକଙ୍କୁ ଅଣାଇ ଏ ରାଜ୍ୟରେ ବାସ କରିବା ନିମନ୍ତେ ଗ୍ରାମଦାନ କରୁଥିଲେ, ସେତେବେଳେ ପୂର୍ବସିନ୍ଧୁ ତଟବର୍ତ୍ତୀ ସେହି ମହେନ୍ଦ୍ରାଚଳ ଏକ ପ୍ରସିଦ୍ଧ ପୁଣ୍ୟକ୍ଷେତ୍ର ହୋଇଥିଲା । ତେଣୁ ମହାଭାରତ ବନପର୍ବରେ ଲେଖାଅଛି—ପାଣ୍ଡବ ପଞ୍ଚଭ୍ରାତା ଓ କୁନ୍ତୀଙ୍କ ବନବାସ ବେଳେ ଲୋମଶମୁନି କଳିଙ୍ଗର କେତୋଟି ପୁଣ୍ୟତୀର୍ଥ ସଙ୍ଗେ ତାଙ୍କୁ ପରିଚିତ କରାଇଥିଲେ । ଲୋମଶ ପ୍ରଥମେ କଳିଙ୍ଗର ବୈତରଣୀ ତୀର୍ଥରେ ସ୍ନାନ କରିବାକୁ ଉପଦେଶ ଦେଇ ସେଠାରେ ଧର୍ମଦେବ ନିଜେ ଯଜ୍ଞ କରନ୍ତି ବୋଲି କହି ତାହା ଏକ ଋଷି ଆଶ୍ରମ ଥିବା କଥା କହିଥିଲେ । ଏହାପରେ କଳିଙ୍ଗରେ ଅବସ୍ଥିତ ଏକ 'ବେଦିକାରେ' ଆରୋହଣ କରି ବଳବାନ ହେବାକୁ ମଧ୍ୟ ସେ ଉପଦେଶ ଦେଇଥିଲେ । ଏ ସମ୍ବନ୍ଧେ ନିମ୍ନୋକ୍ତ ଶ୍ଳୋକଟି ବନପର୍ବରେ ଉଲ୍ଲେଖ ଅଛି :—

ଆରୋହ୍ୟତ ମହାରାଜ ବୀର୍ଯ୍ୟବାନ୍ ବୈ ଭବିଷ୍ୟତି ।
ଯୈଷା ସାଗରମାସାଦ୍ୟ ରାଜନ୍ ବେଦୀ ସମାଶ୍ରିତା ॥

ଏଥିରୁ ସ୍ପଷ୍ଟ ଜଣାଯାଉଛି, ଯେଉଁ "ବେଦୀ" ଆରୋହଣ କରିବାକୁ ଏବଂ ସେଥିରୁ ଶକ୍ତି ଆହରଣ କରିବାକୁ ଲୋମଶମୁନି ପାଣ୍ଡବମାନଙ୍କୁ କହିଲେ, ତାହା ସିନ୍ଧୁ ତଟବର୍ତ୍ତୀ କୌଣସି ଏକ ଉଚ୍ଚ ସ୍ଥାନରେ ଅବସ୍ଥିତ । ମହେନ୍ଦ୍ର ଶିଖରସ୍ଥ ପଶୁରାମ-କ୍ଷେତ୍ରରେ ଗୋଟିଏ 'ବେଦିକା' ପ୍ରତିଷ୍ଠା ଲାଭ କରିଥିଲା । ସେଠାରୁ ସିନ୍ଧୁତଟ ବିଶେଷ ଦୂର ନୁହେଁ । ମହେନ୍ଦ୍ର ଶିଖର ଆରୋହଣ କଲେ ସମୁଦ୍ରର ଦୃଶ୍ୟ, ବିଶେଷତଃ ସୂର୍ଯ୍ୟୋଦୟର ଶୋଭା ଅତି ଚମତ୍କାର ଓ ରମଣୀୟ । ସେହି ପର୍ବତୋପରି ଯୁଧିଷ୍ଠିର, ଭୀମ, ଅର୍ଜୁନ ଓ କୁନ୍ତୀଙ୍କ ନାମରେ କେତୋଟି ପ୍ରାଚୀନ ମନ୍ଦିର ଅଦ୍ୟାପି ଦେଖିବାକୁ ମିଳେ । ଭୀମ ଦେଉଳଟି ଉଚ୍ଚତମ

ଗିରି ଶୃଙ୍ଗରେ ଅବସ୍ଥିତ, ପୁଣି ତାହା ଯାତଟି ମାତ୍ର ବଡ଼ବଡ଼ ମସୃଣ ପ୍ରସ୍ତରରେ ନିର୍ମିତ ହୋଇଅଛି । ଏଣୁ, ସେ ମନ୍ଦିରଟି ଦ୍ୱିତୀୟପ୍ରଥମେ ପ୍ରାୟ ୩ୟ ବା ୪ର୍ଥ ଶତାବ୍ଦୀରେ ମାଠର ବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା ବୋଲି କହିଲେ ଅସଙ୍ଗତ ହେବ ନାହିଁ । ଖ୍ରୀ ୪ର୍ଥ ଶତାବ୍ଦୀରେ ମହାରାଜା ସମୁଦ୍ର ଗୁପ୍ତଙ୍କ ଦାକ୍ଷିଣାତ୍ୟ-ଅଭିଯାନ କାଳରେ ସମ୍ଭବତଃ "ମହେନ୍ଦ୍ର ଗିରି କୋଟ୍ଟୁର'ରେ ରାଜା ସ୍ୱାମୀଦତ୍ତଙ୍କୁ ଯୁଦ୍ଧରେ ସେ ପରାସ୍ତ କରିଥିବା ପ୍ରସଙ୍ଗ ତାଙ୍କ ଆହ୍ଲାବାଦ ସ୍ତମ୍ଭ-ଲିପିରେ ଉଲ୍ଲେଖ ହୋଇଅଛି । ସେତେବେଳେ ମହେନ୍ଦ୍ରାଚଳର ପାଖପାର୍ଶ୍ୱକ ଅଞ୍ଚଳ 'ମହେନ୍ଦ୍ରଭୋଗ ବିଷୟ' ନାମରେ ଅଭିହିତ ହୋଇଥିଲା । ମାଠର ବଂଶୀୟ ମହାରାଜ ଭିମ ବର୍ମାଙ୍କ ରାଜତ୍ୱ କାଳରେ ଖୋଦିତ ହୋଇଥିବା ଏକ ତାମ୍ର ଶାସନରୁ ଏହା ପ୍ରକଟିତ ହୁଏ ।

ଭୀମ ଦେଉଳଠାରୁ ପ୍ରାୟ ୫୦ ଫୁଟ ନିମ୍ନରେ କୁନ୍ତୀ ଓ ଯୁଧିଷ୍ଠିରଙ୍କ ନାମ ବହନ କରି ଦୁଇଟି ଦେଉଳ ପରବର୍ତ୍ତୀ କାଳରେ ଅର୍ଥାତ୍ ଖ୍ରୀ: ୬ଷ୍ଠ ବା ୭ମ ଶତାବ୍ଦୀରେ ନିର୍ମିତ ହୋଇଥିବା ଜଣାଯାଏ । କାରଣ, ଏ'ଦୁଇଟି ମନ୍ଦିର ଓଡ଼ିଶାରେ ନିର୍ମିତ ରେଖ-ଦେଉଳମାନଙ୍କ ପରି କାରୁକାର୍ଯ୍ୟ ମଣ୍ଡିତ । ଏଥିରେ ଶିବ ଲିଙ୍ଗ ପ୍ରତିଷ୍ଠା କରାଯାଇଛି । କିନ୍ତୁ ଭୀମ ଦେଉଳରେ ଲିଙ୍ଗ ନାହିଁ, ସୁତରାଂ ଅନ୍ୟ ଦୁଇଟି ମନ୍ଦିର ସମ୍ଭବତଃ କଳିଙ୍ଗର ପ୍ରାଚୀନ ଗଙ୍ଗବଂଶୀୟ ଶୈବ ରାଜାମାନେ ଗଠନ କରିଥିବା ସମ୍ଭବ । ଯୁଧିଷ୍ଠିର-ମନ୍ଦିର ଗାତ୍ରରେ କେତୋଟି ଶିଳାଲିପି ଖୋଦିତ ହୋଇଅଛି । ଗୋଟିଏ ଲିପିରେ ଚୋଳବଂଶୀୟ ମହାରାଜା ରାଜେନ୍ଦ୍ର ଚୋଳଙ୍କ ପ୍ରଶସ୍ତି ଏବଂ ଅନ୍ୟଟିରେ ଗଙ୍ଗବଂଶୀୟ ମହାରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବଙ୍କ ପ୍ରଶସ୍ତି ଖୋଦିତ ହୋଇଅଛି । ଅତୀତର ମହେନ୍ଦ୍ରଏ, ଚୋଳ ଓ ଗଙ୍ଗ ରାଜାମାନଙ୍କ ମଧ୍ୟରେ ଯେଉଁ ଭୀଷଣ ସଂଘର୍ଷ ଏକାଧିକ ବାର କଳିଙ୍ଗରେ ହୋଇଥିଲା, ସେଥିରେ କେନ୍ଦ୍ରଭୂମି ଥିଲା ମହେନ୍ଦ୍ର-ଗିରିର ପାର୍ବତୀୟ ଦୁର୍ଗ । ବାସ୍ତବରେ ସେହି ଦୁର୍ଗଟି ବହୁକାଳ ପର୍ଯ୍ୟନ୍ତ ଶତ୍ରୁ କବଳରୁ ଗଙ୍ଗରାଜ ବଂଶକୁ ବଞ୍ଚାଇ ରଖିଥିଲା । କିନ୍ତୁ ଖ୍ରୀ. ୧୧ଶ ଶତାବ୍ଦୀରେ ଚୋଳମାନଙ୍କ ହସ୍ତରେ ତାହା ଧ୍ୱସ୍ତ ହେଲା । ସେଥିର ଏକ ବିସ୍ତୃତ ବର୍ଣ୍ଣନା ତାମିଲ ଭାଷାରେ ଜୟମ ଗୋଣ୍ଡାନ୍ ନାମକ ଜଣେ ଚୋଳ ରାଜଦରବାରୀ କବି "କଳିଙ୍ଗତ୍ତୁପ୍ପରଣୀ" ନାମକ କାବ୍ୟରେ ଉଲ୍ଲେଖ କରିଅଛନ୍ତି ।

ଦକ୍ଷିଣ-ଭାରତର ଚୋଳ ରାଜାମାନେ କଳିଙ୍ଗ ବିରୁଦ୍ଧରେ ଘନ ଘନ ଅଭିଯାନ କରୁଥିଲେ । ଶେଷରେ ଚୋଡ଼ଗଙ୍ଗଙ୍କ ପିତା ମହାବୀର ରାଜରାଜ

ଦେବ ଯୁଦ୍ଧରେ ଜୟଲାଭ କରିବାରୁ ଉଭୟ ରାଜବଂଶ ମଧ୍ୟରେ ସନ୍ଧି ସ୍ଥାପିତ ହେଲା ଏବଂ ରାଜେନ୍ଦ୍ର ଚୋଳଙ୍କ କନ୍ୟା ରାଜସୁନ୍ଦରୀଙ୍କୁ ରାଜରାଜଙ୍କ ହସ୍ତରେ ଅର୍ପଣ କରାଗଲା । ରାଜସୁନ୍ଦରୀଙ୍କ ଗର୍ଭରୁ ଓଡ଼ିଶାର ସୁପ୍ରସିଦ୍ଧ ବୀର ମହାରାଜା ଚୋଡ଼ଗଙ୍ଗ ଦେବ ଜନ୍ମ ଗ୍ରହଣ କଲେ । ରାଜସୁନ୍ଦରୀଙ୍କ ଦ୍ୱିତୀୟ ପୁତ୍ର ପରମାଡ଼ିରାଜ ଜନ୍ମ ହେବାର ଅଳ୍ପକାଳ ପରେ ରାଜରାଜ ଦେବଙ୍କ ମୃତ୍ୟୁ ହେବାରୁ ଜ୍ୟେଷ୍ଠ ପୁତ୍ର ଚୋଡ଼ଗଙ୍ଗ ଦେବ ବାଲ୍ୟ ବୟସରେ ଖ୍ରୀ. ୧୦୭୮ରେ କଳିଙ୍ଗ ସିଂହାସନରେ ଅଭିଷିକ୍ତ ହେଲେ । ଉଭୟ ରାଜଭ୍ରାତା (ଚୋଡ଼ଗଙ୍ଗ ଓ ପରମାଡ଼ି ଦେବ)ଙ୍କ ବୀରତ୍ୱ ଓ ରାଜନୈତିକ ଦୂରଦର୍ଶିତା ହେତୁ ପୂର୍ବରୁ ବିଖଣ୍ଡିତ ହୋଇଥିବା କଳିଙ୍ଗ ସାମ୍ରାଜ୍ୟ ପୁନର୍ବାର ଏକତ୍ରିତ ହୋଇ ସେଥିର ପୂର୍ବ ଓ ଦକ୍ଷିଣ ସୀମା ଯଥାକ୍ରମେ ଗଙ୍ଗା ଓ ଗୋଦାବରୀ ନଦୀକୁ ସ୍ପର୍ଶ କଲା ।

ଚୋଡ଼ଗଙ୍ଗ ଅଭିଷିକ୍ତ ହେବା ପୂର୍ବରୁ ବାଲ୍ୟ ଅବସ୍ଥାରେ ତାଙ୍କ ମାତୁଳ ବୀର ଚୋଡ଼ଙ୍କ କନ୍ୟା ଗୁଣ୍ଡିଚୋଡ଼ି ଦେବୀଙ୍କୁ ବିବାହ କରିଥିଲେ । ସେ ଥିଲେ ଚୋଡ଼ଗଙ୍ଗଙ୍କ ପଟ୍ଟମହିଷୀ । ଚୋଡ଼ଗଙ୍ଗଙ୍କ ଖ୍ରୀ: ୧୨ଶ ଶତାବ୍ଦୀର ପ୍ରଥମ ପାଦରେ ଉତ୍କଳର ତତ୍‌କାଳୀନ ସୋମବଂଶୀ ମହାରାଜା କର୍ଣ୍ଣଦେବଙ୍କୁ ପରାସ୍ତ କରି ସ୍ୱୀୟ ରାଜଧାନୀ ବଂଶଧାରା ନଦୀ କୂଳରୁ ଉଠାଇ ନେଇ ମହାନଦୀ ତଟବର୍ତ୍ତୀ ବାରାଣସୀ କଟକରେ ସ୍ଥାପନ କଲେ । ବହୁ ଯୁଦ୍ଧରେ ସେ ଜୟଲାଭ କରି ଶତ୍ରୁ ରାଜାମାନଙ୍କଠାରୁ ଯେଉଁ ପ୍ରଚୁର ଧନରତ୍ନ ଆହରଣ କରିଥିଲେ ତାହା ଦେବମନ୍ଦିର ଗଠନରେ ବ୍ୟୟ କରିବା ଥିଲା ତାଙ୍କର ମୁଖ୍ୟ ଅଭିଳାଷ । ସେତେବେଳେ ଦକ୍ଷିଣ ଭାରତରେ ରାମାନୁଜଙ୍କ ବୈଷ୍ଣବଧର୍ମ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା । ଚୋଳ ଓ ଗଙ୍ଗବଂଶୀୟ ରାଜାମାନେ ସେହି ଧର୍ମ ହିଁ ଗ୍ରହଣ କରିଥିଲେ । ଏହାପରେ ଉତ୍କଳରେ ଶୈବ ଧର୍ମର ପ୍ରାଧାନ୍ୟ କ୍ରମେ ଅବନତ ହେବାକୁ ଲାଗିଲା । ମହେନ୍ଦ୍ରାଚଳ ଶିଖର ଦେଶରେ ପ୍ରତିଷ୍ଠିତ ଗୋକର୍ଣ୍ଣେଶ୍ୱର ଶିବଙ୍କ ପ୍ରାଧାନ୍ୟ ମଧ୍ୟ ସେତିକି ବେଳେ ତିରୋହିତ ହେଲା । ତଥାପି ଦ୍ୱୈତବାଦୀ ଏବଂ ଅଦ୍ୱୈତ-ବାଦୀଙ୍କ ମଧ୍ୟରେ ପ୍ରବଳ ସଂଘର୍ଷ ସୃଷ୍ଟି ହେବାରୁ, ପୁଣି ସେଥିରେ ବୌଦ୍ଧ ଓ ଜୈନ ଧର୍ମାବଲମ୍ବୀମାନଙ୍କ ସଂଘର୍ଷ ମିଶିବାରୁ ଶଂସିତ ଯୁଗରେ ବୁଦ୍ଧିଜୀବୀଙ୍କ ମଧ୍ୟରେ ବିରୋଧୀଦଳ ଓ ଶ୍ରେଣୀ ସୃଷ୍ଟି ହେବାକୁ ଲାଗିଲା । ଏହା ଫଳରେ ରାଜନୈତିକ କ୍ଷେତ୍ରରେ ବିପର୍ଯ୍ୟୟ ଦେଖାଦେଲା । ଏଣୁ ଧର୍ମପ୍ରାଣ ମହାରାଜା ଚୋଡ଼ଗଙ୍ଗ ସେଥିର ନିରାକରଣ ନିମନ୍ତେ ନିଜକୁ "ପରମବ୍ରହ୍ମଣ୍ୟ, ପରମ ବୈଷ୍ଣବ, ପରମ ମାହେଶ୍ୱର" ଏପରି ଅନେକ ଉପାଧିରେ ଭୂଷିତ କଲେ । ଧର୍ମ କ୍ଷେତ୍ରରେ ଯେପରି କୌଣସି ବିଭେଦ ସୃଷ୍ଟି ନହୁଏ, ସେଥିର ଉପାୟ ତାଙ୍କ

ପର ଜଣେ ବିଚକ୍ଷଣ ଓ ରାଜନୈତିକ ପ୍ରଭାବଶାଳୀ ରାଜା ଚିନ୍ତା କରିବା ନିତାନ୍ତ ସମୀଚୀନ । ତେଣୁ ସେ ତିନୋଟି ସଂପ୍ରଦାୟରୁ ତିନିଜଣ ରାଜଗୁରୁ ବା ଦୀକ୍ଷାଗୁରୁଙ୍କୁ ଗ୍ରହଣ କରି ଉପରୋକ୍ତ ଉପାଧିଟିର ବ୍ୟବହାର କଲେ । ବ୍ରାହ୍ମଣ୍ୟ ଧର୍ମରେ ଦୀକ୍ଷିତ ହୋଇ ସେ ବହୁ ଯାଗ-ଯଜ୍ଞ ମଧ୍ୟ ସମ୍ପନ୍ନ କରିଥିଲେ । ଶୈବ ଓ ବୈଷ୍ଣବ (ରାମାନୁଜ ପନ୍ଥୀ) ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରି ବହୁ ମଠ ଓ ମନ୍ଦିର ପ୍ରତିଷ୍ଠା କଲେ । ସୁତରାଂ ତାଙ୍କରି ଉଦ୍ୟମରେ ନୀଳାଚଳ ଧାମରେ ସର୍ବ-ସମନ୍ୱୟ ଧର୍ମର ପ୍ରତୀକ ରୂପେ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ସ୍ଥାପନ କରିବାକୁ ଏକ ବିରାଟ ମନ୍ଦିର ଗଠିତ ହେଲା ।

ପୁରୁଷୋତ୍ତମ ସୁଭଦ୍ରା ଓ ବଳଭଦ୍ରଙ୍କ ଆକୃତି ଅନ୍ୟାନ୍ୟ ହିନ୍ଦୁ ଦେବତାଙ୍କ ଠାରୁ ସ୍ୱତନ୍ତ୍ର । ଏଥିର ମୁଖ୍ୟ କାରଣ ହେଲା, ମହେନ୍ଦ୍ରର ଶିଖର ଦେଶରେ ପୂର୍ବେ ଶବରମାନେ ଯେଉଁ କାଷ୍ଠ ବା ପାଷାଣରେ ଗଠିତ ମୂର୍ତ୍ତିଙ୍କୁ ପୂଜା କରୁଥିଲେ, ତାହା ଗାଙ୍ଗେୟ ରାଜବଂଶରେ ପ୍ରଭାବ ବିସ୍ତାର କରିଥିଲା, ଯେଉଁ ସମୟରେ ମହେନ୍ଦ୍ରାଚଳଟି ଥିଲା, କଳିଙ୍ଗର ମୁଖ୍ୟ ଧର୍ମକେନ୍ଦ୍ର ସେଠାରେ କେତୋଟି ମନ୍ଦିର ଗଠିତ ହୋଇ ଶୈବାଚାର୍ଯ୍ୟମାନେ ବାସ କରୁଥିଲେ ।

ଶବରମାନଙ୍କ ପୂଜିତ ଦେବତା ମଧ୍ୟ ସେଠାରେ ଏକ ଶୈବ ମନ୍ଦିର ନିକଟରେ ସ୍ଥାପିତ ହୋଇଥିଲେ । କିନ୍ତୁ ମନ୍ଦିର ସମ୍ମୁଖରେ ଏକ ବିରାଟ ମସୃଣ ପ୍ରସ୍ତର ଗାତ୍ରରେ ଶ୍ରୀଜଗନ୍ନାଥଙ୍କ ଆକୃତି ବିଶିଷ୍ଟ ଏକ ମୂର୍ତ୍ତିର ସ୍ୱରୂପ ପ୍ରସ୍ତରର ଉଭୟ ପାର୍ଶ୍ୱରେ ଖୋଦିତ ହୋଇ ଥିବାର ଦେଖାଯାଏ । ଖ୍ରୀ: ୭ମ ଶତାବ୍ଦୀରେ ଶୈଳୋଦ୍‌ଭବ ରାଜବଂଶର ଉତ୍ପତ୍ତି ସମ୍ବନ୍ଧରେ ଏକ କିମ୍ବଦନ୍ତୀ-ମୂଳକ ଆଖ୍ୟାନ ତାମ୍ରଶାସନମାନଙ୍କରେ ଖୋଦିତ ହୋଇଅଛି । ସଂସ୍କୃତଜ୍ଞ ପଣ୍ଡିତମାନେ ତାହା କାବ୍ୟିକ ଛଟାରେ ଲେଖିଛନ୍ତି । ପୂର୍ବେ ମହେନ୍ଦ୍ରାଚଳ ଭଗବାନ ସ୍ୱୟମ୍ଭୂଙ୍କୁ ପୁଳିନ୍ଦ (ଶବର) ବଂଶୀୟ ଜଣେ ଆଦିବାସୀ ରାଜା ପୂଜା କରୁଥିଲେ । ତାଙ୍କ ନାମ ଥିଲା 'ପୁଳିନ୍ଦ ସେନ' । ସେ ନିଜ ବାହୁବଳରେ କଳିଙ୍ଗ ରାଷ୍ଟ୍ର ନିରାପଦ କରି ଶାସନ ଚଳାଉ ଥିଲେ । ତାଙ୍କ ବୃଦ୍ଧ ବୟସରେ ଏକଦା ସେ ସ୍ୱୟମ୍ଭୂଙ୍କୁ ଜଣାଇଲେ—"ହେ ମହାପ୍ରଭୁ । ମୁଁ ବୃଦ୍ଧ ହେଲିଣି । ମୋ ପରେ କଳିଙ୍ଗର ପ୍ରଜାମାନଙ୍କୁ କିଏ ଶାସନ କରିବ, ତାହା ଆଜ୍ଞା କରନ୍ତୁ । ଭଗବାନ 'ସ୍ୱୟମ୍ଭୂ' ସ୍ୱପ୍ନରେ ଦେଖାଦେଇ କହିଲେ, "କାଲି ପ୍ରଭାତରେ ଏହି ଶୈଳ ଗାତ୍ରରୁ ଏକ ଯୁବକ ବାହାରିବ, ସେ କଳିଙ୍ଗର ରାଜା ହେବ" । ସତକୁ ସତ ପରଦିନ ପ୍ରଭାତରେ ପର୍ବତ ଶିଖରସ୍ଥ ଏକ ବିଶାଳ ଶିଳା ଦ୍ୱିଖଣ୍ଡିତ

ହୋଇ ସେଥିରୁ ଏକ ସୁନ୍ଦର ବୀର ଯୁବକ ସମ୍ଭୂତ ହେଲେ । ତେଣୁ ତାଙ୍କ ନାମ ହେଲା ଶୈଳୋଦ୍‌ଭବ । ତାଙ୍କର ନାମରେ ଶୈଳୋଦ୍‌ଭବ ରାଜବଂଶ ପ୍ରାଚୀନ କଳିଙ୍ଗର ଏକ ଅଂଶ (କୋଙ୍ଗୋଦ) ଶାସନ କରିବାକୁ ଲାଗିଲେ ।

ଏହି କିମ୍ବଦନ୍ତୀ ଖ୍ରୀ: ୭ମ ଶତାବ୍ଦୀରେ ପ୍ରଚଳିତ ହୋଇଥିଲା । ତେଣୁ ମହେନ୍ଦ୍ରଗିରିର ପ୍ରାଧାନ୍ୟ ସେଠାରେ ବାସ କରୁଥିବା ଆଦିବାସୀ ପୁଳିନ୍ଦ ବା ଶବରମାନଙ୍କ ଆଧିପତ୍ୟ କାଳକୁ ନିଶ୍ଚିତଭାବେ ସୂଚିତ କରୁଛି । ଏ' ଅଞ୍ଚଳକୁ ମାଠର ଓ ଗଙ୍ଗମାନଙ୍କ ଆଗମନର ବହୁକାଳ ପୂର୍ବରୁ ତାହା ଶବରମାନଙ୍କର ମୁଖ୍ୟ ବାସସ୍ଥଳୀ ହୋଇଥିଲା । ଶବରମାନଙ୍କ କିମ୍ବଦନ୍ତୀ ଅନୁସାରେ ସର୍ବ ପ୍ରଥମେ ରାମା ଓ ଭିମା ନାମକ ଦୁଇ ଭ୍ରାତା ସେଠାରେ ବାସ ସ୍ଥାପନ କରିଥିଲେ । ତାଙ୍କଠାରୁ ଶବର ବଂଶ ବୃଦ୍ଧି ଲାଭ କରିବାରୁ ସେମାନେ ମହେନ୍ଦ୍ରମାଳର ଦୀର୍ଘ ପାର୍ବତୀୟ ଅଞ୍ଚଳଗୁଡ଼ିକରେ ବାସ କରିବାକୁ ଲାଗିଲେ ।

ମହାଭାରତରେ ବର୍ଣ୍ଣିତ 'ବେଦୀ' ର ଚିହ୍ନ ଅଦ୍ୟାପି ମହେନ୍ଦ୍ର ଶିଖରସ୍ଥ କୁନ୍ତୀ ଓ ଯୁଧିଷ୍ଠିର ମନ୍ଦିର ନିକଟରେ ଦେଖାଯାଏ, ଯାହାକି ଏକ ସୁବିସ୍ତୀର୍ଣ୍ଣ ସମତଳ ଚଟାଣ । ସେଥିର ଅନତି ଦୂରରେ ଅତି ନିର୍ମଳ ଓ ସୁସ୍ୱାଦୁ ଜଳପୂର୍ଣ୍ଣ କୂପଟିଏ କୁନ୍ତୀ ମନ୍ଦିରକୁ ଲାଗି ଖୋଦିତ ହୋଇଅଛି । ବାସ୍ତବରେ ପ୍ରତ୍ୟହ ଷଡ଼ଋତୁ ସେଠାରେ ଖେଳା କରନ୍ତି । ପ୍ରକୃତିର ସେହି ବିଚିତ୍ର ମନୋହର ଦୃଶ୍ୟ ଏବଂ ମାନବକୃତ ମନ୍ଦିରାବଳୀ ଯେ ପରବର୍ତ୍ତୀ ରାଜାମାନଙ୍କୁ ସେଠାରେ ଦୁର୍ଗ-ନିର୍ମାଣ ପାଇଁ ଆହ୍ୱାନ କରିଥିବ, ଏଥିରେ ଆଦୌ ସନ୍ଦେହ ନାହିଁ । ଏହି ପର୍ବତର ସ୍ଥାନେ ସ୍ଥାନେ ମାନବୋପଯୋଗୀ ଗହ୍ୱର, ଗୁପ୍ତ ପଥ ଓ ସୁଡ଼ଙ୍ଗମାନ ଥିବାର ଦେଖାଯାଏ ! ଗ୍ରୀଷ୍ମକାଳରେ କଳିଙ୍ଗର ରାଜାମାନେ ସମ୍ଭବତଃ ସେଠାରେ ଅବସ୍ଥାନ କରି ତାଙ୍କ ଇଷ୍ଟଦେବତା ଗୋକର୍ଣ୍ଣେଶ୍ୱରଙ୍କ ଆରାଧନା କରୁଥିଲେ । ଆଉ ମଧ୍ୟ ସେଠାରେ ଏକ ଗିରିଦୁର୍ଗ ସ୍ଥାପନ କରି ଶତ୍ରୁ ଆକ୍ରମଣରୁ କଳିଙ୍ଗର ରାଜାମାନେ ସ୍ୱୀୟ ନିରାପତ୍ତା ସଙ୍ଗେ ସଞ୍ଚିତ ଧନ ରତ୍ନାଦି ସୁରକ୍ଷିତ କରିପାରୁଥିଲେ । ଭୀମ ଦେଉଳର ଅନତି ଦୂରରେ ଅର୍ଜୁନ ଗୁମ୍ଫା ନାମରେ ଏକ ଦୀର୍ଘ ଗହ୍ୱର ବିଦ୍ୟମାନ । ସ୍ଥାନୀୟ ଲୋକଙ୍କ ବିଶ୍ୱାସ ଯେ, ତାହା ପର୍ବତର ପାଦଦେଶ ପର୍ଯ୍ୟନ୍ତ ବିସ୍ତାରିତ ହୋଇଛି । କିନ୍ତୁ ଆମ୍ଭର ମନେହୁଏ, ତାହା ପ୍ରାଚୀନ ରାଜାମାନଙ୍କ ଏକ ରତ୍ନ ଭଣ୍ଡାର । କାରଣ ରାଜାମାନେ ଦୁର୍ଗର କୌଣସି ନିରାପଦ ଓ ଗୁପ୍ତ ସ୍ଥାନରେ ହିଁ ରାଜ-କୋଷ ସଞ୍ଚିତ କରୁଥିଲେ । ଏ' ଦୃଷ୍ଟିରୁ ଏଠାରେ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ଅନୁସନ୍ଧାନ ଚଳାଇ କଳିଙ୍ଗ ତଥା ଉତ୍କଳର ପ୍ରାଚୀନ ଇତିହାସକୁ

ଆଲୋକପାତ କରିବା ଆବଶ୍ୟକ । କିନ୍ତୁ ଏହି ପର୍ବତରେ ୪,୬୦୦ ଫୁଟ ଉଚ୍ଚରେ ଥିବା ସେହି ଐତିହାସିକ ସ୍ଥଳକୁ ଯିବାପାଇଁ ଅଦ୍ୟାପି ରାସ୍ତା ହୋଇ ପାରିନାହିଁ । ଶୁଣାଯାଏ ମହେନ୍ଦ୍ରାଚଳ ଏକ ଦର୍ଶନୀୟ କେନ୍ଦ୍ର କରିବାକୁ ସରକାରଙ୍କ ପକ୍ଷରୁ ଏବେ ମସୁଧା ହେଉଛି । ଯଦି ତାହା କାର୍ଯ୍ୟରେ ପରିଣତ ହୁଏ, ତେବେ ବହୁ ଅନୁସନ୍ଧିତ୍ସୁ ବୈଜ୍ଞାନିକ ମଧ୍ୟ ସେଠାକୁ ଯାଇ ପାରିବେ । ସେହି ପର୍ବତରେ ବହୁ ପ୍ରକାର ଔଷଧୀ ବୃକ୍ଷଲତା କଳିଙ୍ଗର ପ୍ରାଚୀନ ରାଜାମାନେ ରୋପଣ କରାଇଥିଲେ । ଅଦ୍ୟାପି ବହୁ ଅଜ୍ଞାତ ବୃକ୍ଷଲତା ସେଠାରେ ରହିଛି ।

ଯେଉଁ 'ବେଦୀ' କଥା ଉପରେ କୁହାଗଲା, ଏହି ଶିଖର ଦେଶରେ ଥିବା ତାହା ଏକ ସୁବିସ୍ତୀର୍ଣ୍ଣ ସମତଳଭୂମି । ସହଜରେ ସେଠାରେ ହେଲିକେପ୍ଟର ମଧ୍ୟ ଅବତରଣ କରିପାରିବ । ଏ' ଦୃଷ୍ଟିରୁ ମହେନ୍ଦ୍ରର ବହୁମୁଖୀ ଗବେଷଣା-ପ୍ରାଧାନ୍ୟ ରହିଛି । ଓଡ଼ିଶାର ଏକ ଅଜ୍ଞାତ ଉପାନ୍ତ ଅଞ୍ଚଳରେ ରହିଥିବାରୁ ସେଥିର ବୈଶିଷ୍ଟ୍ୟ ଅଦ୍ୟାପି ଲୋକଲୋଚନକୁ ଆସି ନାହିଁ ।

ମହେନ୍ଦ୍ର ପର୍ବତ ତଳେ ଏକ ସୁପ୍ରସିଦ୍ଧ ବିଷ୍ଣୁ ଓ ଶିବକ୍ଷେତ୍ର ଥିବା ପ୍ରସଙ୍ଗ ପ୍ରାଚୀନ ପୁରାଣମାନଙ୍କରୁ ପ୍ରକଟିତ ହୁଏ । ଅଦ୍ୟାପି ତାହା 'ପର୍ଶୁରାମ କ୍ଷେତ୍ର' ନାମରେ ପରିଚିତ । ସେହି ବିଷ୍ଣୁ କ୍ଷେତ୍ରର ଅବସ୍ଥାନ ପରେ "ନୀଳଗିରି" ନାମ ବହନ କରି 'ଶ୍ରୀପୁରୁଷୋତ୍ତମ-କ୍ଷେତ୍ର' ଗଙ୍ଗବଂଶୀୟ ରାଜାମାନଙ୍କ ସଙ୍ଗେ କଳିଙ୍ଗରୁ ସ୍ଥାନାନ୍ତରିତ ହୋଇ ମହୋଦଧି ତଟବର୍ତ୍ତୀ ଉତ୍କଳରେ ପ୍ରତିଷ୍ଠିତ ହେଲା ।



# ମହେନ୍ଦ୍ରଗିରିରେ ଶ୍ରୀଜଗନ୍ନାଥଙ୍କ ଆଦିମ ସ୍ୱରୂପ

କଳିଙ୍ଗ ସାମ୍ରାଜ୍ୟ କେନ୍ଦ୍ରରେ ମହେନ୍ଦ୍ରାଚଳ ଅବସ୍ଥିତ । ପ୍ରାଚୀନ ମାଠର ଓ ଗଙ୍ଗବଂଶୀୟ ରାଜାମାନେ କଳିଙ୍ଗରେ ଆଧିପତ୍ୟ ବିସ୍ତାର କରିବା ପୂର୍ବରୁ ସେଠାରେ ଆଦିବାସୀ ପୁଳିନ୍ଦ ବା ଶବରମାନେ ହିଁ ରାଜତ୍ୱ କରୁଥିଲେ । ମହେନ୍ଦ୍ରଗିରି ମାଳାରେ ଅଦ୍ୟାବଧି ସେମାନେ ବହୁ ସଂଖ୍ୟାରେ ରହି ଅଛନ୍ତି ।

ଗଙ୍ଗାବଂଶୀୟ ମହାରାଜା ଚୋଡ଼ଙ୍କ କେତେକ ଦାନପତ୍ରରେ (୧) ତାଙ୍କ ବଂଶର ଇତିହାସ ପ୍ରଶସ୍ତି ରୂପେ ଖୋଦିତ ହୋଇଅଛି । ସେଥିରେ ଉଲ୍ଲେଖ ଅଛି ଯେ, ପୂର୍ବେ କୋଲାହଳପୁରରେ ବୀରସିଂହ ନାମକ ଜଣେ ରାଜା ଥିଲେ । ତାଙ୍କ ଔରସରୁ ପାଞ୍ଚଟି ପୁତ୍ର ଜନ୍ମଲାଭ କରିଥିଲେ, ଯଥା-କାମାର୍ଣ୍ଣବ, ଦାନାର୍ଣ୍ଣବ, ଗୁଣାର୍ଣ୍ଣବ, ମାରସିଂହ ଓ ବଜ୍ରହସ୍ତ । ବୀରସିଂହଙ୍କ ମୃତ୍ୟୁପରେ ଏକଦା ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ରାଜ୍ୟ ଭାର ନିଜ ପିତୃବ୍ୟଙ୍କୁ ଦେଇ ଆଉ କେତେକ ରାଜ୍ୟ ଜୟ କରିବା ସକାଶେ ଚାରି ଭାଇଙ୍କ ସହ ଦକ୍ଷିଣକୁ ଯାତ୍ରା କଲେ ଓ ମହେନ୍ଦ୍ର-ଗିରିରେ ଉପସ୍ଥିତ ହେଲେ । ସେହି ଗିରି ଶିଖରରେ ସେମାନେ ଦେଖିଲେ ଯେ, ସେଠାରେ ଶବରାଦିତ୍ୟ (୨) ନାମକ ଜଣେ ଆଦିବାସୀ ରାଜା ରାଜତ୍ୱ କରୁଅଛନ୍ତି । ତାଙ୍କୁ ଯୁଦ୍ଧରେ ନିହତ କରି କାମାର୍ଣ୍ଣବ କଳିଙ୍ଗର ଅଧୀଶ୍ୱର ହେଲେ । ମହେନ୍ଦ୍ରଶିଖରସ୍ଥ ଗୋକର୍ଣ୍ଣେଶ୍ୱର ମହାଦେବଙ୍କ ପ୍ରସାଦରୁ ସେ ରାଜ୍ୟ ଜୟ କରି ଥିବାରୁ ତାଙ୍କୁ ଇଷ୍ଟଦେବତା ରୂପେ ଆରାଧନା କରି 'ଦନ୍ତାପୁର' (ଦନ୍ତପୁର) ନାମକ ନଗରରେ ସ୍ୱୀୟ ରାଜଧାନୀ ସ୍ଥାପନ କଲେ । ଏ ସମ୍ବନ୍ଧରେ ଚୋଡ଼ଗଙ୍ଗଙ୍କ ତାମ୍ର ଶାସନରେ ସଂସ୍କୃତରେ ଯାହା ଖୋଦିତ ହୋଇଅଛି, ତାହା ନିମ୍ନରେ ଉଦ୍ଧୃତ ହେଲା ।

---

୧ । Journal of Andhra Historical Research Society, Vol I, P-113. Ind, Ant, Vol. XVIII, P-105, Ins, Of. Vol. III, Pt. I. Nos. 55 & 70.

୨ । ଜି. ଭି. ସୀତାପତିଙ୍କ କୋଣ୍ଡି ତାମ୍ର ଶାସନର ଏହି ପାଠ ହିଁ ଶୁଦ୍ଧ ବୋଲି ଗୃହୀତ ହୋଇପାରେ, କାରଣ ଡଃ ଫିଟଙ୍କ ଚିରଜାଗପାଟମ୍ ତାମ୍ର ଶାସନର ଏ ଅଂଶଟି ଠିକ୍‌ଭାବେ ପଠିତ ହୋଇ ପାରି ନାହିଁ ।

"ଅଥ କାମାର୍ଣ୍ଣବୋ ଦତ୍ୱା ପିତୃବ୍ୟାୟ ନିଜାଂ ମହୀମ୍ । ପ୍ରାସ୍ଥାତ୍ ପୃଥ୍ୱୀଂ ଭୁବଂ ଜେତୁଂ ମହେନ୍ଦ୍ରଂ ଭ୍ରାତୃଭିଃ ଗିରିମ ।। ତତ୍ର ଚ ସକଳସୁରାସୁରସିଦ୍ଧସାଧ୍ୟ-କିଙ୍କରକୋଟି ବଘୃଷ୍ଟ-ମସୃଣ-ଚରଣ-ପୀଠ ମାରାଧ୍ୟ ଗୋକର୍ଣ୍ଣସ୍ୱାମୀ ନମସ୍ୟ ପ୍ରସାଦାତ୍ତ ସମାସାଦିତ ବର ବୃଷଭ ଲାଞ୍ଛନ ସମୁପଲବ୍ଧ ସକଳସାମ୍ରାଜ୍ୟ-ଚଚିହ୍ନୋରୁପଶୋଭମା ନସ୍ତନରେନ୍ଦ୍ରେ ।। ମହେନ୍ଦ୍ରାଞ୍ଚଳ ଶିଖରାଜ ବରାର୍ଦ୍ଧ ଯୁଧିଷ୍ଠିର ଇବ ଚତୁର୍ଭିରନୁଜୈରନୁଗମ୍ୟମାନ ସସମର ଶିରସିସବଳାବିଳାକ୍ୟାନ୍ନି-ର୍ଜିତ୍ୟ (୩) କାମାର୍ଣ୍ଣବଃ କଳିଙ୍ଗାନଗ୍ରହୀତ୍ ତସ୍ୟ ଚ ଅପଦ୍ଧସିତ୍ ସୁରେନ୍ଦ୍ରପୁରଂ କଂ (ଦଂ) ତାଦୁର ନ୍ନାମ ନଗର୍ଯ୍ୟା ରାଜଧାନ୍ୟାସୀତ୍ ।......"

ଖ୍ରୀ୧୧ଶ ଶତାବ୍ଦୀରେ ଖୋଦିତ ହୋଇଥିବା ସେହି ଗଙ୍ଗାବଂଶ ପ୍ରଶସ୍ତିରୁ ସ୍ପଷ୍ଟ ପ୍ରମାଣ ମିଳୁଛି ଯେ, ପୂର୍ବକାଳରେ ମହେନ୍ଦ୍ରାଚଳରେ ଯୁଧିଷ୍ଠିରଙ୍କ ପରି ଗଙ୍ଗ ରାଜକୁମାର କାମାର୍ଣ୍ଣବ ଦେବ ତାଙ୍କର ଚାରି ଭ୍ରାତାଙ୍କ ସଙ୍ଗେ ପର୍ବତ ଆରୋହଣ କରି ସେଠାରେ ପ୍ରତିଷ୍ଠିତ ପୂଣ୍ୟଚରଣପୀଠରେ ଗୋକର୍ଣ୍ଣ ସ୍ୱାମୀ (ଶିବ)ଙ୍କ ଆରାଧନା କରିଥିଲେ । କାମାର୍ଣ୍ଣବ କଳିଙ୍ଗ ରାଜ୍ୟ ଅଧିକାର କରିବା ଆଗରୁ ସେଠାରେ ଯେଉଁ ପୁଳିନ୍ଦ ବା ଶବରମାନେ ରହିଥିଲେ, ସେମାନେ ତାଙ୍କର ଅଧୀନତା ସ୍ୱୀକାର କଲେ । କଳିଙ୍ଗର ପ୍ରଥମ ରାଜଧାନୀ ଦନ୍ତପୁରଠାରେ ସ୍ଥାପିତ ହେଲା । କିନ୍ତୁ ପରବର୍ତ୍ତୀ ରାଜାମାନଙ୍କ ଦ୍ୱାରା ତାହା କଳିଙ୍ଗ ନଗର ନାମକ ସ୍ଥାନରେ ପ୍ରତିଷ୍ଠା ଲାଭ କଲା । ଦନ୍ତପୁରର ନାମ ବୌଦ୍ଧ ଜାତକ କଥାରୁ ମଧ୍ୟ ପ୍ରକଟିତ ହୋଇଅଛି । ସେଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ପୂର୍ବେ ଗୁହଶିବ (ଗୁହଶବର ?) ନାମକ ଜଣେ ବୌଦ୍ଧ ରାଜା ସେଠା ସମୁଦ୍ର କୂଳରେ ରାଜତ୍ୱ କରି ବୁଦ୍ଧଙ୍କର ଗୋଟିଏ ଦନ୍ତ ଆରାଧନା କରୁଥିଲେ । ତେଣୁ ସେହି ନଗରର ନାମ ରଖା ଯାଇଥିଲା "ଦନ୍ତପୁର" । ବର୍ତ୍ତମାନ ମହେନ୍ଦ୍ରଗିରି ଓ ବାରୁଣା-ବନ୍ଦର ମଧ୍ୟରେ ଥିବା ଏକ ଶିବ ମନ୍ଦିର ଗାତ୍ରରେ ପରିଦୃଷ୍ଟ ଗଙ୍ଗ ରାଜା ଭାନୁଦେବଙ୍କ ଓଡ଼ିଆ ଶିଳାଲେଖରୁ ପ୍ରମାଣିତ ହୋଇଅଛି ଯେ, ଦନ୍ତଗଡ଼ ନାମକ ଗ୍ରାମଟି ସେଠାରେ ଅବସ୍ଥିତ । ତେଣୁ ତାହା ଯେ ବାରୁଆ (ବାରୁଣା) ବନ୍ଦର ନିକଟବର୍ତ୍ତୀ ପ୍ରାଚୀନ ଦନ୍ତାପୁରର ଏକ ଅଂଶ ଥିଲା ସେଥିରେ ଆଦୌ ସନ୍ଦେହ ନାହିଁ । ରାଜା ଗୁହଶିବ, ଯେ କି ଦନ୍ତପୁରରେ ବୁଦ୍ଧଙ୍କ ଦନ୍ତ ପୂଜା କରୁଥିଲେ, ସମ୍ଭବତଃ ସେ ମଧ୍ୟ ଜଣେ ଗୁହ-ଶବର ବଂଶୀୟ ହୋଇଥିବେ ।

---

୩ । ପାର୍ଲାକିମେଡିରୁ ପ୍ରାପ୍ତ ମଧ୍ୟମ ରାଜାଙ୍କ ତାମ୍ରଶାସନ Ep. Ind. Vol. XI, PP. 281-287,

ରାମାୟଣରେ ବର୍ଣ୍ଣିତ ଅଛି ଯେ, ଗୁହଶବର ବଂଶୀୟ ଜଣେ ଆଦିବାସୀ ଶ୍ରୀରାମଚନ୍ଦ୍ରଙ୍କ ବନବାସ ବେଳେ ତାଙ୍କର ମିତ୍ର ରାଜା ରୂପେ ଦଣ୍ଡକାରଣ୍ୟ ନିକଟବର୍ତ୍ତୀ କୌଣସି ସ୍ଥାନରେ ବାସ କରୁଥିଲେ । ତାଙ୍କର ଅନ୍ୟ ଏକ ରାଜଧାନୀର ନାମ ଥିଲା 'ଶୃଙ୍ଗବେରପୁର' । ବର୍ତ୍ତମାନ ବାରୁଆ ବନ୍ଦର ଠାରୁ ଅଳ୍ପ କେତେ ମାଇଲ ଦକ୍ଷିଣକୁ ଗଲେ କଳିଙ୍ଗପଟ୍ଟନ ନିକଟରେ 'ଶୃଙ୍ଗବର-ପୁକୋଟା' ନାମକ ଏକ ବୃହତ୍ ଗ୍ରାମ ଦେଖାଯାଏ । ଏ ଦୃଷ୍ଟିରୁ ବାଲ୍ମୀକିମୁନି 'ରାମାୟଣ' ରଚନା କଲାବେଳେ ମଧ୍ୟ ଆଦିବାସୀ ଶବରମାନେ ସେହି ବନ୍ୟାଞ୍ଚଳରେ ରାଜତ୍ୱ କରୁଥିଲେ ।

କୋଙ୍ଗଦର ଶୈଳୋଦ୍ଭବ ବଂଶୀୟ ମଧ୍ୟମ ରାଜାଙ୍କ ତାମ୍ର ଶାସନରେ (୪) ଲେଖାଅଛି ଯେ, ପ୍ରାଚୀନ କାଳରେ ମହେନ୍ଦ୍ରଗିରିରେ 'ପୁଳିନ୍ଦସେନ' ନାମକ ଜଣେ ଆଦିବାସୀ (ଶବର) କଳିଙ୍ଗର ଶାସକ ରୂପେ ରହିଥିଲେ । ସେ ବୃଦ୍ଧ ବୟସରେ ତାଙ୍କ ଇଷ୍ଟଦେବତା ସ୍ୱୟମ୍ଭୁଙ୍କୁ ବିନୀତ ଭାବରେ ଜଣାଇଲେ—"ହେ ପ୍ରଭୁ, ମୋ ପରେ ଏ ରାଜ୍ୟର ଶାସନ ଭାର କିଏ ବହନ କରି ପାରିବ, ଅନୁଜ୍ଞା ହେଉ ।" ଦେବତା ତାଙ୍କୁ ସ୍ୱପ୍ନରେ ଦେଖାଦେଇ କହିଲେ "ଗୋଟିଏ ବିଶାଳ ଶିଳା (ପର୍ବତ) (୫) ଦୁଇଖଣ୍ଡ ହୋଇ ବିଭକ୍ତ ହେବ । ସେଥିରୁ ଜଣେ ଦିବ୍ୟ ଯୁବକ ଜାତ ହେବ । ସେ କଳିଙ୍ଗର ଅଧୀଶ୍ୱର ହେବେ ।" ଦେବତାଙ୍କର ଆଦେଶର ସତ୍ୟତା ଦେଖାଗଲା, ଯେତେବେଳେ ମହେନ୍ଦ୍ରର ଗିରି ଶିଖର-ପାଦ ପର୍ଯ୍ୟନ୍ତ ଦୁଇଖଣ୍ଡ ହୋଇ ଫାଟିଗଲା ଓ ସେଥିରୁ ଜଣେ ଯୁବକ ବାହାରିଲେ । ଶୈଳଭେଦ କରି ସେ ଜନ୍ମିବାରୁ ତାଙ୍କ ନାମ ରଖାଗଲା "ଶୈଳୋଦ୍ଭବ" । ତାଙ୍କ ରାଜବଂଶ ମଧ୍ୟ ସେହି ନାମରେ ପରିଚିତ ହୋଇ ମହେନ୍ଦ୍ରାଚଳର ପୂର୍ବୋତ୍ତର ଅଞ୍ଚଳରେ (କୋଙ୍ଗଦରେ) ରାଜତ୍ୱ କରିବାକୁ ଲାଗିଲେ । ସେହି ଶୈଳୋଦ୍ଭବ ବଂଶୀୟ ମହାରାଜା ମଧ୍ୟମ ରାଜାଙ୍କ ପ୍ରଦତ୍ତ ବାଣପୁର ତାମ୍ର ଶାସନରେ ଏ ସମ୍ବନ୍ଧରେ ଯେଉଁ ଶ୍ଳୋକଗୁଡ଼ିକ ଲେଖା ହୋଇଅଛି ତାହା ନିମ୍ନରେ ଉଦ୍ଧୃତ ହେଲା ।

---

୪ । ଅଭିଲେଖମାନଙ୍କରେ 'ପର୍ବତ' ଅର୍ଥରେ 'ଶିଳା' ଶବ୍ଦ ବ୍ୟବହୃତ ହେଉଥିଲା ।

୫ । Journal of Kalinga Historical Research Society, Vol. II, Pt. I, PP. 59-65. Inscriptions of Orissa, Vol. I, Pt. II, PP. 191-198

ପ୍ରାଚ୍ୟାମ୍ଭୋନିଧି ଲଗ୍ନ ସାନୁରରୁଚଃ ପୁଷ୍ପଦ୍ରୁମାଲୀ ବୃତଃ
ସ୍ୟନ୍ଦନ୍ନିର୍ଝରବାରି ଦାରିତଦୃଷ୍ଟ ଫେନସ୍ଖଳନ୍ନିସ୍ୱନୈଃ ।
ସ୍ଥାନସ୍ତସ୍ତ ପତଙ୍ଗବଲ୍ଗୁ ବିରୁତୈରାପୂରିତାନ୍ତର୍ଗୁହୈଃ
ଶ୍ରୀମାନ୍ ମେରୁସଖୋ ବୃହତ୍ କୁଲଗିରିଃ ଖ୍ୟାତୋ ମହେନ୍ଦ୍ରଃ କ୍ଷିତୌ ॥
ପ୍ରାଂଶୁର୍ମହେଭକରପୀବରଚାରୁ ବାହୁ
କୃଷ୍ଣାଶ୍ମ ସଞ୍ଚୟ ବିଭେଦବିଶାଳ ବକ୍ଷାଃ ।
ରାଜୀବକୋମଳ ଦଳାୟତ ଲୋଚନାନ୍ତଃ
ଖ୍ୟାତଃ କଳିଙ୍ଗ ଜନତାସୁ ପୁଳିନ୍ଦ ସେନଃ ॥
ତେନେତ୍ତ୍ଥଂ ଗୁଣିନାପି ସନ୍ତ୍ୟମହତାନେ ଷାଂ ଭୁବୋ ମଣ୍ଡଳଂ
ଶକ୍ତୋ ଯଃ ପରିପାଳନାୟ ଜଗତଃ କୋ ନାମ ସ ସ୍ୟାଦିତି ।
ପ୍ରତ୍ୟାଦିଷ୍ଟବିଭୂସ୍ତବେନ ଭଗବାନାରାଧିତଃ ଶାଶ୍ୱତ-
ସ୍ତସ୍ମୈ ନିତ୍ୟାନୁଗୃଣଂ ବିଧିତ୍ସୁରଦିଶଦ୍ ବାଞ୍ଛାଂ ସ୍ୱୟମ୍ଭୋରପି ॥
ସଶିଳା ଶକଲୋଦ୍ଭେଦୀ ତେନାପ୍ୟାଲୋକ୍ୟଧୀମତା
ପରିକଳ୍ପିତତଦ୍ବଂଶଃ ପ୍ରଭୁ ଶୈଲୋଦ୍ଭବଃ କୃତଃ ॥ (୧

ଉପରୋକ୍ତ ଶ୍ଳୋକଗୁଡ଼ିକରୁ ସ୍ପଷ୍ଟ ଜଣାଯାଉଛି ଯେ, ମହେନ୍ଦ୍ରାଚଳରେ ଶବର (ପୁଳିନ୍ଦ) ରାଜାଙ୍କର ଇଷ୍ଟଦେବତା ଥିଲେ, ଯାହାକୁ ଶୈଳୋଦ୍ଭବ ରାଜାମାନଙ୍କ ପ୍ରଶସ୍ତି ଲେଖକ ବ୍ରାହ୍ମଣ ପଣ୍ଡିତମାନେ "ସ୍ୱୟମ୍ଭୂ" (ବ୍ରହ୍ମା ? ବା ଶିବ) ନାମରେ ଅଭିହିତ କରି ଅଛନ୍ତି । ହୁଏତ ଶବରମାନଙ୍କ ଭାଷାରେ ସେହି ଦେବତାଙ୍କର ନାମ ଅନ୍ୟ କିଛି ହୋଇଥିବ । ତେବେ ଉପରେ ଯେଉଁ 'ଶୈଲୋଭବ' ନାମକ ବଂଶକର୍ତ୍ତା ମହେନ୍ଦ୍ର ପର୍ବତ ପରି ଏକ ସମୁଦ୍ର ନିକଟବର୍ତ୍ତୀ ଅଦ୍ଭୁତ ଶୈଳକୁ ଭେଦ କରି ଜାତ ହୋଇଥିଲେ, ସେଥିର ସ୍ଥାନୀୟ ନାମ "ଦାରୁବ୍ରହ୍ମ" ବୋଲି ଅଦ୍ୟାପି କୁହାଯାଉଛି । ଗୋଟିଏ ଅତି ଉନ୍ନତ (ପ୍ରାୟ ୫,୦୦୦ ଫୁଟ) ଗିରି ଶୃଙ୍ଗର ଏକ ଅଂଶ ଦ୍ୱିଖଣ୍ଡିତ ହୋଇ ସେଥିର ପାଦ ପର୍ଯ୍ୟନ୍ତ ଏକ ବିରାଟ ଆକାରରେ ଗହ୍ୱରତୁଲ୍ୟ ରାସ୍ତା ସୃଷ୍ଟି ହୋଇଛି, ତାହା ଦେଖିଲେ ପ୍ରକୃତିର ଏକ ଦୁର୍ଲ୍ଲଭ ଓ ଭୟଙ୍କର ଚିତ୍ର ଚକ୍ଷୁ ସମ୍ମୁଖରେ ଭାସିଯାଏ । (୨) ସେହି ଅଂଶଟି ଅଦ୍ୟାପି ମନୁଷ୍ୟର ଅଗମ୍ୟ ହୋଇଥିଲେ ମଧ୍ୟ

୧ । Ep. Ind. Vol. XXIII. PP. 73—78.

ତାହା ବିରାଟ ଆକାରର ସର୍ପ ଓ ଭୟଙ୍କର ବନ୍ୟହାତୀ ଓ ବ୍ୟାଘ୍ରମାନଙ୍କ କ୍ରୀଡ଼ାସ୍ଥଳୀରେ ପରିଣତ ହୋଇଅଛି । ନିକଟବର୍ତ୍ତୀ ବାରପଣିଆ ଗ୍ରାମର ଶବରମାନଙ୍କ ମୁଖରୁ ଶୁଣାଯାଏ, ସେଠାରେ ଏକ ଦୀର୍ଘକାୟ ଶ୍ମଶ୍ରୁ ଓ ଜଟାଧାରୀ ଅଦ୍ଭୁତ ବ୍ରହ୍ମରାକ୍ଷସ କେବେ କେବେ ଦେଖାଦିଏ । କିନ୍ତୁ ତାକୁ ଦେଖି ଆସି ଭୟରେ ମୃତ୍ୟୁବରଣ କରିଥିବା ନରନାରୀଙ୍କ ସଂଖ୍ୟା ୪।୫ ହେବ ବୋଲି ମଧ୍ୟ ଶୁଣାଯାଏ । ସେ ଯାହାହେଉ ସେହି ସ୍ଥାନକୁ କାହିଁକି ଯେ "ଦାରୁବ୍ରହ୍ମ" ଆଖ୍ୟା ଦିଆଗଲା, ଏ ବିଷୟରେ ଅଦ୍ୟାପି କେହି ହେଲେ ସନ୍ତୋଷଜନକ ଉତ୍ତର ଦେଇ ପାରି ନାହାନ୍ତି । ତଥାପି ଆମର ସନ୍ଦେହ ହୁଏ, ଯେଉଁ "ସ୍ୱୟମ୍ଭୁ" (ଆଦିବାସୀ ରାଜାଙ୍କ ଇଷ୍ଟଦେବତା) ଖ୍ରୀ: ୫ମ ଶତାବ୍ଦୀ ପୂର୍ବରୁ ମହେନ୍ଦ୍ର ଶିଖରରେ ପ୍ରତିଷ୍ଠା ଲାଭ କରିଥିଲେ, ତାଙ୍କ ସଙ୍ଗେ ପରବର୍ତ୍ତୀ ଯୁଗରେ ନୀଳାଚଳ କ୍ଷେତ୍ରର "ଦାରୁବ୍ରହ୍ମ" (ଜଗନ୍ନାଥ)ଙ୍କ ସମ୍ପର୍କ କଳ୍ପିତ ଭାବରେ ରହିଥିଲା ।

କେବଳ କିମ୍ବଦନ୍ତୀ ବା ଲୋକମୁଖରୁ ଶୁଣିବା ପ୍ରବାଦ ଉପରେ ନିର୍ଭର କରି ଐତିହାସିକ ସତ୍ୟ ଆବିଷ୍କାର କରିବା ସମ୍ଭବ ନୁହେଁ । ଏଥିପାଇଁ ପ୍ରାମାଣିକ ଓ ବିଶ୍ୱାସଯୋଗ୍ୟ ନିଦର୍ଶନ ମଧ୍ୟ ଆବଶ୍ୟକ । ବର୍ତ୍ତମାନ ପ୍ରଶ୍ନ ହେଉଛି, ମହେନ୍ଦ୍ର ଶିଖରରେ ଏପରି କିଛି ପ୍ରମାଣ ରହିଛି କି, ଯାହା ବଳରେ ଆମ୍ଭେ କହିପାରୁ ଯେ, ମହେନ୍ଦ୍ରାଚଳର "ଦାରୁବ୍ରହ୍ମ" ପରି ସେଠାରି ଏକ ବିରାଟ ପ୍ରସ୍ତର ନିର୍ମିତ ଜଗନ୍ନାଥଙ୍କ ମୂର୍ତ୍ତିର ଆଦିମ ଆକୃତି ପରିଲକ୍ଷିତ ମନେହୁଏ, କେଉଁ ଆଦିମ ଯୁଗରେ ଜଗନ୍ନାଥଙ୍କ ଆକୃତି ବିଶିଷ୍ଟ ପ୍ରସ୍ତର ମୂର୍ତ୍ତି ସେଠାରେ ସ୍ଥାପନ କରି ଆଦିବାସୀ ଶବରମାନେ ତାଙ୍କ ଦେବତା ରୂପେ ପୂଜା କରୁଥିଲେ, କିନ୍ତୁ କାଳକ୍ରମେ ଗଙ୍ଗ ଓ ଶୈଳୋଦ୍ଭବ ରାଜବଂଶର ରାଜତ୍ୱ କାଳରେ ତାହା କଳିଙ୍ଗର ରାଷ୍ଟ୍ରଦେବତାରେ ପରିଣତ ହେଲେ । ସୁତରାଂ ତାହା ଏକ ସୁଚିକ୍କଣ ପୂଣ୍ୟ ଚରଣ ପୀଠ (ବେଦୀ) ରୂପେ ତାମ୍ର ଶାସନମାନଙ୍କରେ ବର୍ଣ୍ଣିତ ହୋଇଅଛି ।

ଗଙ୍ଗ ରାଜାମାନେ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକତା କରୁଥିବାରୁ, ସେହି ଆଦିବାସୀ ବିଗ୍ରହ ସମୀପରେ ଶୈବ ମନ୍ଦିରମାନ ନିର୍ମାଣ କରାଇ ତାଙ୍କ ଇଷ୍ଟ ଦେବତା ଗୋକର୍ଣ୍ଣେଶ୍ୱରଙ୍କ ଆରାଧନା କରିବାକୁ ଲାଗିଲେ, କିନ୍ତୁ ଆଦିବାସୀ ଦେବତାଙ୍କ ଦେବତ୍ୱ ତାଙ୍କ ଦ୍ୱାରା ଅସ୍ୱୀକୃତ ହେଲା ନାହିଁ । ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ତାଙ୍କର ପ୍ରତିଷ୍ଠା ସମାନ [illegible]ର [illegible] ହୋଇ ରହିଲା ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଆଦିବାସୀମାନେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ପୂଜା କରିବା ନିଦର୍ଶନ କେଉଁଠାରେ ରହିଛି, ଏ ସମ୍ବନ୍ଧରେ ଏ ଲେଖକେ ମହେନ୍ଦ୍ର ନିକଟବର୍ତ୍ତୀ କେତେକ ଆଦିବାସୀ ଅଞ୍ଚଳରେ ପୂଜିତ ହେଉଥିବା ଶ୍ରୀଜଗନ୍ନାଥ, ବଳଦେବ ଓ ସୁଭଦ୍ରାଙ୍କ ବିଗ୍ରହ ସାଧାରଣ ଗୃହ (ମନ୍ଦିର ନୁହେଁ) ମାନଙ୍କରେ ସ୍ଥାପନ କରାଇ ସେଠା ବିଶୋୟୀମାନେ କିପରି ଦେବତାଙ୍କ ରଥଯାତ୍ରା ଓ ପୂଜା ବ୍ୟବସ୍ଥା କରୁଥିଲେ ତାର ଉଦାହରଣ ଦେଇପାରେ । ସେପରି ମନ୍ଦିରଗୁଡ଼ିକ ମହେନ୍ଦ୍ରଗିରି ନିକଟବର୍ତ୍ତୀ ଜିରାଙ୍ଗ, ସେରଙ୍ଗ, ନରଣପୁର, ଲହୁଣିଆଗଡ଼, ନାରାୟଣପୁର, ଗୁମ୍ମା, ରାମଗିରି ପ୍ରଭୃତି ଆଦିବାସୀ ପ୍ରଧାନ ସ୍ଥାନଗୁଡ଼ିକରେ ନିର୍ମିତ ହୋଇଅଛି । କାଳର ପ୍ରସାରଣକୁ ଭିତ୍ତି କରି ସାମାଜିକ ସଂସ୍କୃତିର ପରିବର୍ତ୍ତନ ମଧ୍ୟ ହୁଏ । ଏହି ନୀତି ଅନୁସାରେ ସେହି ମନ୍ଦିରଗୁଡ଼ିକରେ ବ୍ରାହ୍ମଣ ସେବକମାନଙ୍କୁ ଏବେ ନିଯୁକ୍ତ କରାଯାଇଅଛି, ଯାହା ଫଳରେ ଉତ୍କଳୀୟ ସଂସ୍କୃତି ହିଁ ସେହି ଅଞ୍ଚଳର ଆଦିମ ଅଧିବାସୀମାନଙ୍କୁ ପ୍ରଭାବିତ କରି ରଖିଛି । ଭାଷା, ଜାତି, ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ସେହି ବିଗ୍ରହମାନଙ୍କ ପର୍ବ-ପର୍ବାଣିରେ ସହଯୋଗ କରନ୍ତି ।

ଓଡ଼ିଶାର ପ୍ରତି ଗ୍ରାମାଞ୍ଚଳରେ ଗ୍ରାମଦେବୀଙ୍କ ବିଗ୍ରହ ପ୍ରତିଷ୍ଠା କରାଯାଏ । କାରଣ ସାଧାରଣ ଲୋକଙ୍କ ବିଶ୍ୱାସ ଯେ ଗ୍ରାମକୁ ସେହି ଦେବୀ ସୁରକ୍ଷିତ କରି ରଖନ୍ତି । ଏହି ବିଶ୍ୱାସ ଆଦିବାସୀମାନଙ୍କ ମଧ୍ୟରେ କେଉଁ ଆଦିମ ଯୁଗରୁ ପ୍ରଚଳିତ ଥିଲା । ସୁତରାଂ ତାଙ୍କର ସେହି ବିଶ୍ୱାସ ସଙ୍ଗେ କାଳକ୍ରମେ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀଙ୍କର ବିଶ୍ୱାସ ମଧ୍ୟ ଓତଃପ୍ରୋତ ଭାବେ ଜଡ଼ିତ ହେଲା । ମହେନ୍ଦ୍ର ଶିଖରର ରକ୍ଷୀ ଦେବତା, ଯେକି ଅଚଳ ଭାବେ ଆଦିବାସୀଙ୍କ ପରିକଳ୍ପିତ ମୂର୍ତ୍ତି ଆକାରରେ ଏକ ବିରାଟ ପ୍ରସ୍ତରରେ ଗଠିତ ହୋଇ ମହେନ୍ଦ୍ରଗିରି ଶୃଙ୍ଗରେ ସ୍ଥାପିତ ହୋଇଥିଲେ, ଠିକ୍ ସେହି ଆକୃତି ବିଶିଷ୍ଟ ମୂର୍ତ୍ତି ଦାରୁ (କାଷ୍ଠ) ମାଧ୍ୟମରେ ସମତଳ ଅଞ୍ଚଳରେ ଗଠିତ ହେଲା । ପବିତ୍ର ପୀଠ ମହେନ୍ଦ୍ରରୁ ବିଶାଳ ପ୍ରସ୍ତର ଓ ଦାରୁଖଣ୍ଡମାନ ଯେଉଁ ପଥଦେଇ ତଳକୁ ଗଡ଼ାଇ ଦିଆଯାଉଥିଲା, ସମ୍ଭବତଃ ତାହାହିଁ ଆଜି "ଦାରୁବ୍ରହ୍ମ" ନାମରେ ପରିଚିତ ହେଉଛି ।

କଳିଙ୍ଗକୁ ଦୁଇ ଅଂଶରେ ବିଭକ୍ତ କରି ଦକ୍ଷିଣ ଭାଗଟି କଳିଙ୍ଗ-ଗଙ୍ଗମାନଙ୍କ ଅଧିକାରଭୁକ୍ତ ହେଲା, କିନ୍ତୁ ଉତ୍ତର ଭାଗର ନାମ ହେଲା "ଶ୍ୱେତକ" । ସେହି ଭାଗରେ ମଧ୍ୟ ଗଙ୍ଗା ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଉଭୟ ରାଜ୍ୟର କେନ୍ଦ୍ରରେ ଥିଲା ମହେନ୍ଦ୍ରାଚଳ । ଉଭୟ ରାଜବଂଶର ଇଷ୍ଟ-ଦେବତା ଗୋକର୍ଣ୍ଣେଶ୍ୱର ସେଥିର ଶିଖର ଦେଶରେ ପ୍ରତିଷ୍ଠିତ ହୋଇଥିବାରୁ

ଗିରଣ୍ଣଙ୍କ ଆରୋହଣ ସକାଶେ ଉଭୟ ଦିଗରୁ ଦୁଇଟି ଚଲାରାସ୍ତା ଏପର୍ଯ୍ୟନ୍ତ ରହିଛି । ପ୍ରଥମ ରାସ୍ତାର ପାଦଦେଶରେ ବୁରୁଖାତ ନାମକ ଆଦିବାସୀ ଗ୍ରାମ ଅବସ୍ଥିତ । ସେଥିର ପ୍ରାଚୀନ ନାମ ଥିଲା 'ବୁରୁଜ୍ନା' । ଏ ନାମଟି ଏକମାତ୍ର ଶାସନରେ ଉଲ୍ଲେଖ ଅଛି । (୮) ଦ୍ୱିତୀୟ ରାସ୍ତାର ପାଦଦେଶରେ ଯେଉଁ ଗ୍ରାମଟି ଅଛି, ସେଥିର ନାମ 'ରାଜବସା' । ସେଠାରୁ ଅଳ୍ପ ଦୂରରେ 'ରମ୍ଭା' ନାମକ ମାଳଭୂମି ଓ ସେହି ନାମର ଏକ ଶବର ପଲ୍ଲୀ ବିଦ୍ୟମାନ । ଉତ୍ତର ଓ ଦକ୍ଷିଣରେ ଯେଉଁ ଗଙ୍ଗ ରାଜାମାନେ ଥିଲେ ସମସ୍ତଙ୍କର ଇଷ୍ଟଦେବତା ରୂପେ ମହେନ୍ଦ୍ର ଶିଖରସ୍ଥ ଗୋକର୍ଣ୍ଣେଶ୍ୱର ଗୃହୀତ ହୋଇଥିଲେ । ତେଣୁ ସେମାନଙ୍କ ପ୍ରଦତ୍ତ ତାମ୍ରଶାସନଗୁଡ଼ିକରେ ପ୍ରଥମେ ଗୋକର୍ଣ୍ଣେଶ୍ୱରଙ୍କ ବନ୍ଦନା ଉଲ୍ଲେଖ ହେଉଥିଲା ।

> "ମହେନ୍ଦ୍ରାଚଳା ମଳ କନକ ଶିଖର ପ୍ରତିଷ୍ଠିତସ୍ୟ
> ସଚରାଚର ଗୁରୋ ସକଳ ଶଶାଙ୍କ ଚୂଡ଼ାମଣେ ସ୍ଥିତ୍ୟୁତ୍ପତ୍ତି-
> ପ୍ରଳୟକାରଣହେତୋ ଭଗବତ୍ ଗୋକର୍ଣ୍ଣ-
> ସ୍ୱାମିନଶ୍ଚରଣାରାଧନ ବ୍ୟାପ୍ତ ପୂଣ୍ୟ ନିଚୟଃ…" ।

ମହେନ୍ଦ୍ର ଶିଖର ଏକ ପୂଣ୍ୟକ୍ଷେତ୍ର ରୂପେ ଗଙ୍ଗବଂଶୀ ରାଜାମାନେ କଳିଙ୍ଗ-ନଗରରୁ ଏବଂ ଶ୍ୱେତକରୁ ଘୋଷଣା କରୁଥିଲେ । ପୌରାଣିକ ଆଖ୍ୟାନ-ଗୁଡ଼ିକରେ ମଧ୍ୟ ତାହା ପର୍ଶୁରାମଙ୍କ ଆଶ୍ରମ ରୂପେ ବର୍ଣ୍ଣିତ ହୋଇଅଛି । ତେଣୁ ସେଠାକୁ ବହୁ ତୀର୍ଥଯାତ୍ରୀଙ୍କ ସମାଗମ ହୁଏ । ମହାଶିବରାତ୍ରି ଉତ୍ସବଟି ସେଠାରେ ଅଦ୍ୟାପି ଆଡ଼ମ୍ବର ସହକାରେ ପାଳିତ ହେଉଅଛି ।

ଗତ ଦୁଇବର୍ଷ ଆଗେ ଏ ଲେଖକ ସେଠାକୁ ଶିବରାତ୍ରି ଉତ୍ସବ ଶେଷରେ ଥରେ ଯିବାକୁ ସୁଯୋଗ ପାଇଥିଲେ । ସେତେବେଳେ ଆମେରିକାରୁ କେଲିଫୋର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଦୁଇଜଣ ଅଧ୍ୟାପିକା ପାରଳାଖେମୁଣ୍ଡିକୁ ଆସି ମହେନ୍ଦ୍ରାଚଳ ଆରୋହଣ କରିବାକୁ ଏବଂ ସେମାନଙ୍କ ସଙ୍ଗେ ଯିବାକୁ ମୋତେ ଅନୁରୋଧ କଲେ । ପାରଳାଖେମୁଣ୍ଡିରୁ ପ୍ରାୟ ୨୫ ମାଇଲ ଦୂରରେ ଥିବା ଜିରାଙ୍ଗ ଓ ବୁରୁଖାତ ପର୍ଯ୍ୟନ୍ତ ଜିପ୍‌ରେ ଯାଇ ସେଠାରୁ ପାଞ୍ଚ ହଜାର ଫୁଟ ଉଚ୍ଚ ଏବଂ ପାଞ୍ଚ କିଲୋମିଟର ଜଙ୍ଗଲ ରାସ୍ତା ଦେଇ ମହେନ୍ଦ୍ର ଶିଖରକୁ ଯିବା ମୋ

୮ । Inscriptions of Orissa, Vol. III Pt. I. Nos. 26, 81 and 143.

ପକ୍ଷରେ ଅତ୍ୟନ୍ତ କଷ୍ଟକର । ତେବେ ବହୁଦିନରୁ ମୋ ମନରେ ପ୍ରବଳ ଅଭିଳାଷ ଥିଲା, ଗୋକର୍ଣ୍ଣ-କ୍ଷେତ୍ରର ଐତିହାସିକ ସ୍ଥାପତ୍ୟଗୁଡ଼ିକ ପରୀକ୍ଷା କରିବାକୁ । ତେଣୁ ସେହି ବିଦେଶିନୀ ଅଧ୍ୟାପିକାଙ୍କ ଅନୁରୋଧ ଏଡ଼ାଇ ନଦେଇ ତାଙ୍କ ସଙ୍ଗେ ଯିବାକୁ ବାହାରିଲି । ପର୍ବତର ପାଦ ପର୍ଯ୍ୟନ୍ତ ଅର୍ଥାତ୍ ବୁରୁଖାତ ଆଦିବାସୀ ପଲ୍ଲୀ ପର୍ଯ୍ୟନ୍ତ ଯିବାପାଇଁ ପାରଳାଖେମୁଣ୍ଡିରୁ ପ୍ରତ୍ୟୁଷ ୬ଘଣ୍ଟା ବେଳେ ଦୁଇଟି ଜିପ୍ ଯୋଗାଡ଼ କରି ଆମେ କେତେଜଣ ମହେନ୍ଦ୍ର ଯାତ୍ରା କଲୁ । ଆମ ସଙ୍ଗେ ମୋ ପରିବାରର ପିଲାଏ ମଧ୍ୟ ଗଲେ । ସକାଳ ପ୍ରାୟ ୮ଟାରେ ବୁରୁଖାତ-ଠାରୁ ଆମର ପର୍ବତ ଆରୋହଣ ଆରମ୍ଭ ହେଲା । ଜଙ୍ଗଲ ପଥରେ ପାଞ୍ଚ ହଜାର ଫୁଟ ଉପରକୁ ଉଠିବାପାଇଁ ମନୋବଳହିଁ ମୋତେ ଠେଲି ନେଲା, ଯାହା-ଫଳରେ ମୋର ସମସ୍ତ ପରିଶ୍ରମ ଆଦୌ ଜଣାଗଲା ନାହିଁ ।

ନିର୍ମଳ ପ୍ରଭାତରେ ମହେନ୍ଦ୍ର ଶିଖର ଦେଶରେ ଆମେ ପହଞ୍ଚିଗଲୁ । ସେଠାରେ ଏକ ସୁବିସ୍ତୀର୍ଣ୍ଣ ସମତଳ ଭୂମି ରହିପାରେ, ଏହା ମୁଁ ପ୍ରଥମେ ଚିନ୍ତା କରି ନଥିଲି । ଏକ ସୌମ୍ୟ ନିସ୍ତବ୍ଧତା ଯେପରି ସେଠାର ଆଧିପତ୍ୟ ବିସ୍ତାର କରିଛି । ଶୀତଳବାୟୁ ପ୍ରବାହରେ ମେଘଖଣ୍ଡମାନ ଝାସି ଆସି ଆମ ଦେହକୁ ସ୍ପର୍ଶ କରି ଯାଉଛନ୍ତି । ଏକ ଆଡ଼େ ସୁଦୂର ବନାନୀର ଅପୂର୍ବ ଶୋଭା ସ୍ତରଆଡ଼େ ବିଚ୍ଛୁରିତ, ଅନ୍ୟଆଡ଼େ ନୀଳ ବର୍ଣ୍ଣାଢ୍ୟ ଆକାଶ ସଙ୍ଗେ ସୁନୀଳ ସମୁଦ୍ରର ସମିଶ୍ରଣ ଚକ୍ରବାଳରେଖା ଯେପରି ତାହା ମଙ୍ଗଳସୂତ୍ର ପରି ବାନ୍ଧି ରଖିଛି ।

ଅପୂର୍ବ ସେହି ପ୍ରାକୃତିକ ବୈଚିତ୍ର୍ୟରେ ବିଭୋର ହେବାକୁ ଆମର ବେଳ କାହିଁ ? ବିଦେଶିନୀ ଅଧ୍ୟାପିକାଙ୍କ ଆହ୍ୱାନ ମୋର ମୋହ ଭାଙ୍ଗିଦେଲା । ଯୁଧିଷ୍ଠିର ମନ୍ଦିରର ଏକ ଶିଳାଲେଖ ଦେଖିବାକୁ ସେ ମୋତେ ଡାକି ନେଲେ । ମନ୍ଦିରର ପ୍ରବେଶଦ୍ୱାର ବନ୍ଧରେ ଯେଉଁ ତିନୋଟି ଶିଳାଲେଖ ରହିଛି, ତାହା ମୁଁ ଆଗରୁ ଛପା ନକଲ ସାହାଯ୍ୟରେ ପାଠ କରିଥିଲି ଏବଂ ମୋ ଆଗରୁ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ମଧ୍ୟ ତାହା ପଠିତ ହୋଇଥିଲା । ଗୋଟିଏ ଶିଳାଲେଖରେ ଚୋଳ ବଂଶୀୟ ମହାରାଜା ରାଜେନ୍ଦ୍ର ଚୋଳଙ୍କ ପ୍ରଶସ୍ତି ବର୍ଣ୍ଣିତ ହୋଇଛି ଏବଂ ଅନ୍ୟ ଦୁଇଟିରୁ ଗୋଟିଏ ମହାରାଜା ଚୋଡ଼ଗଙ୍ଗଙ୍କ ଅଖଣ୍ଡବର୍ତ୍ତୀ ଦୀପ ଦାନ, ଯାହାକି ସେ ୧୦୫୫ ଶକାବ୍ଦ (ଖ୍ରୀ: ୧୧୩୩)ରେ ଦାନ କରିଥିଲେ । ତୃତୀୟ ଶିଳାଲେଖଟି 'ମହେନ୍ଦ୍ରେଶ୍ୱର'ଙ୍କ ଉଦ୍ଦେଶ୍ୟରେ ଲକ୍ଷ୍ମୀଧରାଚାର୍ଯ୍ୟ ନାମକ ଜଣେ ବ୍ରାହ୍ମଣ ଅଖଣ୍ଡଦୀପ ଦାନ କରିଥିବା ପ୍ରସଙ୍ଗ ଉଲ୍ଲେଖ ହୋଇଅଛି, ତାହା ୧୦୪୫ (ଖ୍ରୀ: ୧୧୨୩)ରେ ଖୋଦିତ ହୋଇଥିଲା ।

ଯୁଧିଷ୍ଠିରମନ୍ଦିରଠାରୁ ଅଳ୍ପ ଦୂରରେ କୁନ୍ତୀମନ୍ଦିର ଅବସ୍ଥିତ । ସେଠାରେ ଏକ ବିଶାଳ ଶିଳାରେ ଅଦ୍ଭୁତ ଭାବେ ହସ୍ତହୀନ ଜଗନ୍ନାଥ ପ୍ରତୀକ ମୂର୍ତ୍ତି ଥିବା ଦେଖାଯାଏ । ସେହି ପ୍ରସ୍ତର ପ୍ରତିମାର ଉଭୟ ପାର୍ଶ୍ୱରେ ଏକା ଆକୃତିର ମୁଖ ଥିବା ମଧ୍ୟ ଏକ ଅଦ୍ଭୁତ ବିଗ୍ରହ ବୋଲି ଜଣା ଯାଉଛି । ଏପରି ବିଗ୍ରହ ଏପର୍ଯ୍ୟନ୍ତ ପ୍ରତ୍ନତତ୍ତ୍ୱ ଗବେଷଣାଗାର ପରିସରଭୁକ୍ତ ହୋଇ ନାହିଁ । ତେଣୁ ଅଧ୍ୟାପିକା ଡକ୍ଟର ଜୋନ୍ନା ଉଇଲିୟମ୍ (Dr. Jonna William)ଙ୍କୁ ଅନୁରୋଧ କରି ସେଥିର ଏକ ଫଟୋଚିତ୍ର ମୁଁ ସଂଗ୍ରହ କଲି । (୯)

କୁନ୍ତୀଦେଉଳ ଓ ଯୁଧିଷ୍ଠିରଦେଉଳର କାରୁକାର୍ଯ୍ୟ ଓଡ଼ିଶାର ରେଖ ଦେଉଳ ପ୍ରତୀକ । ସେଥିର ନିର୍ମାଣ ସମୟ ବୋଧହୁଏ ଖ୍ରୀ: ୭ମ ଶତାବ୍ଦୀ କିମ୍ବା ସେଥିର ପାଖାପାଖି ବୋଲି ମନେହୁଏ । କୁନ୍ତୀଦେଉଳର ପାର୍ଶ୍ୱ ଦେବତା-ଗୁଡ଼ିକ ଯଥାକ୍ରମରେ ବାହାର ଭିତ୍ତିଗାତ୍ରରେ ସ୍ଥାପିତ ହୋଇ ଅଛନ୍ତି । ସେ ଯୁଗରେ କଳିଙ୍ଗର ଶିଳ୍ପୀମାନଙ୍କ ମୂର୍ତ୍ତି ଗଠନ କୌଶଳ ସମ୍ବନ୍ଧରେ ଅଧିକ ଗବେଷଣା ଆବଶ୍ୟକ । ତେବେ ଗଣେଶ ଓ କାର୍ତ୍ତିକେୟ ମୂର୍ତ୍ତି ଓଡ଼ିଶୀ ଶିଳ୍ପର ବୈଶିଷ୍ଟ୍ୟ ଗ୍ରହଣ କରିଥିବା ସ୍ପଷ୍ଟ ଜଣାଯାଏ । (୧୦) ଏହି ଦେଉଳର ପଶ୍ଚିମ ପାର୍ଶ୍ୱରେ ଗୋଟିଏ କୂପ ଅଛି । ସେଥିରେ ଏକ ପାର୍ବତ୍ୟ ଝରଣା ଭିତରେ ପାଣି ଯୋଗାଇବା ଫଳରେ କେବେ ତାହା ଶୁଖେ ନାହିଁ ବରଂ ଯାତ୍ରା-ଉତ୍ସବ କାଳରେ ଉପସ୍ଥିତ ହଜାର ହଜାର ଯାତ୍ରୀଙ୍କୁ ଜଳ ଯୋଗାଇ ଦିଏ । ମହେନ୍ଦ୍ରର ପୂର୍ବ ଓ ପଶ୍ଚିମ ଉଭୟ ଦିଗରୁ ଦୁଇଟି ନଦୀ ପ୍ରବାହିତ ହେଉଛି । ତାହା 'ମହେନ୍ଦ୍ରତନୟା' ନାମରେ ପ୍ରସିଦ୍ଧ । ପ୍ରାଚୀନ ପୁରାଣ-ମାନଙ୍କରେ ମଧ୍ୟ ମହେନ୍ଦ୍ରତନୟା ଏକ ପବିତ୍ର ନଦୀ ରୂପେ ବର୍ଣ୍ଣିତ ହୋଇଅଛି ।

ମହେନ୍ଦ୍ରାଚଳର ଉଚ୍ଚତମ ଶିଖରରେ ଭୀମଦେଉଳ ଅବସ୍ଥିତ । ସେଥିର ନିର୍ମାଣ କୌଶଳ କୁନ୍ତୀ ବା ଯୁଧିଷ୍ଠିରମନ୍ଦିର ପରି ନୁହେଁ । ତାହା ଗୁପ୍ତଯୁଗର ଏକ କୃତ୍ରିମ ଗୁହାର ପ୍ରତୀକ । ତେଣୁ ସେ ମନ୍ଦିରଟି ଓଡ଼ିଶାରେ ମନ୍ଦିର ଇତିହାସର ଆଦିମ ଯୁଗକୁ ନିର୍ଦ୍ଦେଶ କରେ । ତାହା ୭ଟି ମାତ୍ର ବିରାଟ ମସୃଣ

---

୯ । ଏହି ପ୍ରବନ୍ଧରେ ତାହା ପ୍ରଦର୍ଶିତ ହୋଇଅଛି ।

୧୦ । ଗଣେଶ ଓ କାର୍ତ୍ତିକଙ୍କ ଛବି ଏଥି ସଙ୍ଗେ ପ୍ରଦର୍ଶିତ ହେଲା ।

ପ୍ରସ୍ତରରେ ନିର୍ମିତ ଏକ କ୍ଷୁଦ୍ର ଶିବାଳୟ । ସେଥିରେ ଅନ୍ୟ ମନ୍ଦିରଗୁଡ଼ିକ ପରି କାରୁକାର୍ଯ୍ୟ ଆଦୌ ନାହିଁ କହିଲେ ଚଳେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଏତେ ଓଜନର ବିଶାଳ ମୁଗୁନି ପଥର କିପରି ସେହି ଉଚ୍ଚତମ ଶିଖରକୁ ବୋହି ନିଆଗଲା, ଯେତେବେଳେ ସ୍ଥାନୀୟ ଆଦିବାସୀ ଶବରମାନେ ଶିଳ୍ପ ସୃଷ୍ଟିରେ ଆଦୌ ଅଭ୍ୟସ୍ତ ହୋଇ ନଥିଲେ । ତେଣୁ ବାହାରର ଶିଳ୍ପୀମାନଙ୍କୁ ନିଯୁକ୍ତ କରି ତତ୍କାଳୀନ ମାଠର ବଂଶୀୟ ରାଜାମାନେ ସେହି ମନ୍ଦିରଟି ଗଢ଼ାଇଥିବା ସମ୍ଭବ । ପରବର୍ତ୍ତୀ ଯୁଗରେ ଗଙ୍ଗବଂଶୀୟ ରାଜାମାନେ ଅନ୍ୟ ଦୁଇଟି ମନ୍ଦିର ଗଢ଼ାଇବାକୁ ତାଲିମପ୍ରାପ୍ତ ଶିଳ୍ପୀମାନଙ୍କୁ ସେହି କାମରେ ଲଗାଇଥିବା ସମ୍ଭବ ।

କୁନ୍ତୀ ଦେଉଳ ସମ୍ମୁଖରେ ଇତସ୍ତତଃ ପଡ଼ିଥିବା ବିଷ୍ଣୁ, ସୂର୍ଯ୍ୟ, ହନୁମାନ ପ୍ରଭୃତି ଦେବଦେବୀଙ୍କ ପ୍ରସ୍ତର ମୂର୍ତ୍ତିମାନ ଦେଖାଯାଏ । ସେଠାରୁ ଅଳ୍ପ ଉଚ୍ଚରେ ଗୋଟିଏ ଗହ୍ୱର ରହିଛି । ଯାହାକୁ "ଅର୍ଜୁନଗୁମ୍ଫା" ବୋଲି ସ୍ଥାନୀୟ ଲୋକେ କହନ୍ତି । ସେହି ଗୁମ୍ଫାର ପ୍ରବେଶ ପଥଟି ସଙ୍କୀର୍ଣ୍ଣ ହୋଇଥିଲେ ମଧ୍ୟ ଭିତରେ ବହୁଲୋକ ଅବସ୍ଥାନ କରି ପାରିବା ଅନୁମିତ ହୁଏ । ସମ୍ଭବତଃ ସେହି ଗୁମ୍ଫାର ଆୟତନ ବହୁ ଦୂରକୁ ବ୍ୟାପିଥିବ, କାରଣ ମହେନ୍ଦ୍ରଗିରି ପୂର୍ବେ କଳିଙ୍ଗର ଏକ ଶ୍ରେଷ୍ଠ ଗିରି ଦୁର୍ଗ ରୂପେ ବ୍ୟବହୃତ ହେଉଥିଲା । ଶତ୍ରୁ ଆକ୍ରମଣ ବେଳେ କଳିଙ୍ଗର ରାଜା ଓ ରାଜପରିବାର ସେଠାରେ ଆଶ୍ରୟ ନେଉଥିଲେ । ତେଣୁ "କଳିଙ୍ଗ ପୁରାଣି" ନାମକ ଏକ ପ୍ରାଚୀନ ତାମିଲ୍ କାବ୍ୟରେ ବର୍ଣ୍ଣିତ ଅଛି ଯେ, କାଞ୍ଚିର ଚୋଳ ସମ୍ରାଟ ରାଜେନ୍ଦ୍ର ଚୋଳଙ୍କ ପ୍ରେରିତ ସୈନ୍ୟମାନେ ଏକଦା ସେହି ଗିରି-ଦୁର୍ଗଟି ଆକ୍ରମଣ କରି କଳିଙ୍ଗରେ ତାଙ୍କ ବିଜୟସ୍ତମ୍ଭ ସ୍ଥାପନ କରିଥିଲେ । ସେହି କାବ୍ୟର ଐତିହାସିକ ସତ୍ୟତା ଯାହା ହେଉନା କାହିଁକି, ମହେନ୍ଦ୍ରଗିରି ଯେ, କଳିଙ୍ଗର ଏକ ବିରାଟ ଗିରି-ଦୁର୍ଗ ହୋଇଥିଲା ଏବଂ ସେଠାରେ କେବଳ ଧର୍ମ ସୁରକ୍ଷା ପାଇଁ ନୁହେଁ, ବରଂ ରାଜ୍ୟରକ୍ଷା ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରାଯାଇଥିଲା, ଏଥିରେ ଆଦୌ ସନ୍ଦେହ ନାହିଁ । ତେଣୁ ଆଦିବାସୀମାନଙ୍କ ବିଶ୍ୱାସ ଅନୁସାରେ ଯେଉଁ ରାଷ୍ଟ୍ରଦେବତାଙ୍କୁ ସେଠାରେ ପ୍ରତିଷ୍ଠା କରାଯାଇଥିଲା, ସେ ନିଶ୍ଚିତ ଭାବରେ ସେହି ଗିରି ଚୂଳରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ (ପୁରୁଷୋତ୍ତମ)ଙ୍କ ପ୍ରତୀକ ପ୍ରସ୍ତର ବିଗ୍ରହ । ତଳଦେଶକୁ ଏଠାରୁ ଦାରୁ ଗଢ଼ା ନେଇ ଏପରି ପଦସ୍ଥାନ ଜଗନ୍ନାଥଙ୍କ ବିଗ୍ରହମାନ ନିର୍ମାଣ କରି ପ୍ରଥମେ ଶବର-ପଲ୍ଲୀମାନଙ୍କରେ ତାହା ପ୍ରତିଷ୍ଠା କରାଯାଇଥିଲା । ପରବର୍ତ୍ତୀ ଯୁଗରେ, ଅର୍ଥାତ୍ ଖ୍ରୀ: ୮ମ ଶତାବ୍ଦୀରୁ ନେଇ ବହୁବେଳେ ଉତ୍କଳ ସାମ୍ରାଜ୍ୟରେ ବୌଦ୍ଧ ରାଜାମାନେ

ଆଧିପତ୍ୟ ବିସ୍ତାର କଲେ, ସେତେବେଳେ ତାଙ୍କ ଅଧୀନସ୍ଥ ଶ୍ୱେତକର ଗଙ୍ଗବଂଶୀୟ ମହାରାଜା ଇନ୍ଦ୍ରବର୍ମା (୧୧) ନୀଳାଚଳ କ୍ଷେତ୍ରରେ ଶ୍ରୀପୁରୁଷୋତ୍ତମଙ୍କ ଦାରୁ ବିଗ୍ରହ ସ୍ଥାପନ କରିଥିବା ଆମର ବିଶ୍ୱାସ ହୁଏ । (୧୨) ମହାରାଜା ଇନ୍ଦ୍ରବର୍ମାଙ୍କୁ ସମ୍ଭବତଃ ମାଳବର ରାଜା 'ଇନ୍ଦ୍ରଦ୍ୟୁମ୍ନ' ନାମରେ ପରବର୍ତ୍ତୀ କାଳରେ "ମାଦଳାପାଞ୍ଜି"ରେ ଉଲ୍ଲେଖ କରାଯାଇ ଥିବା ସମ୍ଭବ । ଏ ସମ୍ବନ୍ଧେ ଭବିଷ୍ୟତରେ ଅଧିକ ଆଲୋଚନା ସ୍ପୃହଣୀୟ ।



---

୧୧ । Inscription of Orissa, Vol. II ଦ୍ରଷ୍ଟବ୍ୟ ।

୧୨ । ଯେଉଁ ଶ୍ୱେତକ ଗଙ୍ଗା ରାଜବଂଶର ନାମକୁ ଅଦ୍ୟାପି ପୁରୀର ପବିତ୍ର "ଶ୍ୱେତଗଙ୍ଗା" ସ୍ମରଣ କରାଇ ଦେଉଛି, ସେହି ବଂଶରେ ହିଁ ମହାରାଜା ଇନ୍ଦ୍ରବର୍ମା ଜନ୍ମ ଗ୍ରହଣ କରିଥିଲେ ।

# ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ରଥୋତ୍ସବର ଆରମ୍ଭକାଳ

ଶ୍ରୀଜଗନ୍ନାଥଙ୍କ ଯାତ୍ରାଗୁଡ଼ିକ ଯେଉଁ ପଦ୍ଧତିରେ ବର୍ତ୍ତମାନ ଅନୁଷ୍ଠିତ ହେଉଛି, ତାହା ବିଚାର କଲେ ଜଣାଯାଏ ଯେ ଖ୍ରୀ: ୧୨ଶ ଶତାବ୍ଦୀରେ ଯେଉଁ ସବୁ ପଦ୍ଧତି ପ୍ରାଚୀନ କଳିଙ୍ଗ ରାଷ୍ଟ୍ରରେ ପ୍ରତିଷ୍ଠିତ ବିଷ୍ଣୁମନ୍ଦିରମାନଙ୍କରେ ପ୍ରଚଳିତ ଥିଲା ତାହା ହିଁ ଶ୍ରୀମନ୍ଦିରରେ ଗୃହୀତ ହେଲା । ମହାରାଜା ଚୋଡ଼ଗଙ୍ଗ ଦେବ ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଉତ୍କଳର ତତ୍କାଳୀନ ସୋମ-ବଂଶୀୟ ରାଜା କର୍ଣ୍ଣକେଶରୀଙ୍କୁ ଯୁଦ୍ଧରେ ପରାସ୍ତ କରି ଯେତେବେଳେ କଳିଙ୍ଗ ଏବଂ ଉତ୍କଳ ଉଭୟ ରାଜ୍ୟକୁ ଏକତ୍ରିତ କଲେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ସାମ୍ରାଜ୍ୟ ଗଠିତ ହେଲା । ତାଙ୍କ ରାଜଧାନୀ ବଂଶଧାରା ନଦୀ କୂଳସ୍ଥ କଳିଙ୍ଗ ନଗରରୁ ଉଠାଇ ଆଣି ମହାନଦୀ ତଟବର୍ତ୍ତୀ ବାରାଣସୀ କଟକଠାରେ ସ୍ଥାପନ କଲେ । ଚୋଡ଼ଗଙ୍ଗ ଦେବ କେବଳ ବୀର ନଥିଲେ, ଶାସନ କାର୍ଯ୍ୟରେ ମଧ୍ୟ ତାଙ୍କର ଯଥେଷ୍ଟ ଦକ୍ଷତା ଥିବାର ଜଣାଯାଏ । ସେ ନିଜେ ଶିବ, ବିଷ୍ଣୁ ଏବଂ ଦୁର୍ଗାଙ୍କର ପରମଭକ୍ତ ହୋଇଥିବାରୁ ନୀଳାଚଳ ଧାମରେ ସେହି ତିନି ଦେବତାଙ୍କ ଆରାଧନା ସକାଶେ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଦେବ ଓ ସୁଭଦ୍ରାଙ୍କୁ ଏକତ୍ରିତ କରି ଗୋଟିଏ ମନ୍ଦିର ସ୍ଥାପନ କରିବା ପାଇଁ ପ୍ରସ୍ତାବ କଲେ । ଶାସ୍ତ୍ର ସମ୍ମତ ପଦ୍ଧତି ଅନୁସରଣ କଲେ । ଉତ୍କଳ ଜୟ କରିବା ପୂର୍ବରୁ ସେ ସୋମ-ବଂଶୀୟ ମହାରାଜା ଯଯାତିକେଶରୀ ଯେଉଁଠାରେ ଶ୍ରୀପୁରୁଷୋତ୍ତମଙ୍କ ଶିଳା ବିଗ୍ରହ ସ୍ଥାପନ କରିଥିଲେ, ସେହି ମନ୍ଦିରରେ ଚୋଡ଼ଗଙ୍ଗ ଦେବଙ୍କ ଶଂସିତ ମୂର୍ତ୍ତି ହିଁ ପ୍ରତିଷ୍ଠିତ ହେଲେ । ସେହି ମନ୍ଦିରଟି ଏବେ ମୁକ୍ତିମଣ୍ଡପ ସନ୍ନିକଟ ନୃସିଂହ ମନ୍ଦିର ବୋଲି ସ୍ପଷ୍ଟ ଜଣାଯାଇଛି ।

ଯଯାତିକେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଚତୁର୍ଭୁଜ ବିଶିଷ୍ଟ ଶ୍ରୀପୁରୁଷୋତ୍ତମ ମାଧବଙ୍କ ମୂର୍ତ୍ତି କୌଣସି ଅଜ୍ଞାତ କାରଣରୁ ବହୁକାଳ ପର୍ଯ୍ୟନ୍ତ ଅପୂଜିତ ହେବା ଦୃଷ୍ଟିରୁ ସେହି ମୂର୍ତ୍ତିଙ୍କୁ ଅନ୍ୟତ୍ର ସ୍ଥାପନ କରି ସେଠାରେ ଶ୍ରୀପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ପ୍ରତିଷ୍ଠା କରାଗଲା । ନୃସିଂହ ମନ୍ଦିରରୁ ପ୍ରାପ୍ତ ଏକ ଶିଳାଲେଖରୁ ଏହାର ପ୍ରମାଣ ସୂଚିତ ହୋଇଛି ।

ଡ଼ଜମୂର୍ତ୍ତି ଧର୍ମଶାସ୍ତ୍ର ଏବଂ ଶିଳ୍ପଶାସ୍ତ୍ରର ପଦ୍ଧତି ଅନୁସାରେ ଗଠିତ ହୋଇଥିବା ଜଣାଯାଏ । ସେହି ଶିଳାମୂର୍ତ୍ତି ନୃସିଂହ ମନ୍ଦିର ପରି ଏକ କ୍ଷୁଦ୍ର ମନ୍ଦିରରେ ସ୍ଥାପନ କରାଯାଇ ଥିବାରୁ ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ପରି ଜଣେ ସମ୍ରାଟଙ୍କ ପକ୍ଷେ ଶ୍ରୀପୁରୁଷୋତ୍ତମଙ୍କୁ ଇଷ୍ଟଦେବତା ରୂପେ ସମସ୍ତ ନୀତି ନିୟମ ଅନୁସାରେ ଆରାଧନା କରିବା ଏବଂ ଅନ୍ୟାନ୍ୟ ବିଷ୍ଣୁ କ୍ଷେତ୍ରରେ ପ୍ରବର୍ତ୍ତିତ ଉତ୍ସବ ଆଦି ନିଷ୍ପାଦନ କରିବା ସମ୍ଭବ ହେଲା ନାହିଁ । ଚୋଡ଼ଗଙ୍ଗଙ୍କ ପିତୃ ପିତାମହ କଳିଙ୍ଗରେ ରାଜତ୍ୱ କରୁଥିବା ବେଳେ ତତ୍ରସ୍ଥ ଦୁଇଟି ବିଷ୍ଣୁ ମନ୍ଦିରରେ ଅର୍ଥାତ୍ ସିଂହାଚଳ ଓ ଶ୍ରୀକୂର୍ମ ମନ୍ଦିରରେ ଯେଉଁ ସବୁ ରୀତି, ନୀତି ପ୍ରଚଳିତ ହୋଇଥିଲା ତାହା ସେହି ନୃସିଂହ ମନ୍ଦିରରେ ପ୍ରବର୍ତ୍ତନ କରିବା ସମ୍ଭବ ହେଲା ନାହିଁ । ସୁତରାଂ ସେ ତାଙ୍କ ରାଜତ୍ୱର ଶେଷ କାଳରେ ନିଜର ଜ୍ୟେଷ୍ଠ ପୁତ୍ର କାମାର୍ଣ୍ଣବଙ୍କ ହସ୍ତରେ ରାଜ୍ୟର ଶାସନ ଭାର ଅର୍ପଣ କରିବାକୁ ଯାଇ ତାଙ୍କୁ ଯୌବରାଜ୍ୟାଭିଷେକରେ ଅଭିଷିକ୍ତ କରି ସାମ୍ରାଜ୍ୟର ଶାସନ ଭାର ସମର୍ପଣ କରିଥିବା ସମ୍ଭବ । ଏହା ୧୧୪୨ ଖ୍ରୀଷ୍ଟାବ୍ଦରେ ସମ୍ପୂର୍ଣ୍ଣ ହୋଇଥିଲା । ସେତେବେଳକୁ ଚୋଡ଼ଗଙ୍ଗଙ୍କ ବୟସ ପ୍ରାୟ ଷାଠିଏ ଥିବା ଅନୁମିତ ହୁଏ । ଏହାପରେ ସେ ୧୫ ବର୍ଷ ଜୀବିତ ରହିଥିବା ଏବଂ ସେହି କାଳ ମଧ୍ୟରେ ଧର୍ମ ଚର୍ଚ୍ଚା ଓ ଶ୍ରୀପୁରୁଷୋତ୍ତମଙ୍କ ଏକ ବିରାଟ ମନ୍ଦିର ନିର୍ମାଣ କରାଇବା ପରିକଳ୍ପନା ପୂର୍ଣ୍ଣ କରିବାକୁ ଯାଇ ଉତ୍କଳର ଜଣେ ସୁପ୍ରସିଦ୍ଧ ଶିଳ୍ପୀ ତଥା କର୍ମକାର କୁଳପୁତ୍ର ପରି ନାମକ ବ୍ୟକ୍ତିଙ୍କୁ ସେହି କାର୍ଯ୍ୟରେ ନିଯୁକ୍ତ କରିଥିବା ଶିଳାଲେଖମାନଙ୍କରୁ ପ୍ରମାଣିତ ହୋଇଛି ।

ଚୋଡ଼ଗଙ୍ଗ ଦେବ ସେହି ନୂତନ ମନ୍ଦିରକୁ ସୋମବଂଶୀୟ ରାଜାଙ୍କ ଦ୍ୱାରା ଗଠିତ ଶ୍ରୀଲିଙ୍ଗରାଜ ମନ୍ଦିରଠାରୁ ଅଧିକ ଉଚ୍ଚରେ ନୀଳାଚଳ ଧାମରେ ଗଠିତ କରିବା ପାଇଁ ଯୋଜନା ପ୍ରସ୍ତୁତ ହେଲା, ସେତେବେଳେ ତାଙ୍କର ବୈଷ୍ଣବ ଗୁରୁଙ୍କ ନିର୍ଦ୍ଦେଶକ୍ରମେ ମନ୍ଦିରଟି କଳାସୌଷ୍ଠବ ସମ୍ପୂର୍ଣ୍ଣ ପୂର୍ବକ ଧର୍ମଶାସ୍ତ୍ରୋକ୍ତ ପଦ୍ଧତି ଅନୁସାରେ ଗଠିତ ହେଲା । କିନ୍ତୁ ତାହା ଚୋଡ଼ଗଙ୍ଗଙ୍କ ଜୀବିତ କାଳ ମଧ୍ୟରେ ଶେଷ ହୋଇ ପାରିଲା ନାହିଁ । ତେଣୁ ତାଙ୍କ ପ୍ରତିଷ୍ଠିତ ନିମ୍ବମୂର୍ତ୍ତି ସେହି ନୃସିଂହ ମନ୍ଦିରରେ ହିଁ ପୂଜିତ ହେଉଥିଲା । ପ୍ରାୟ ୯୦ ବର୍ଷ ପର୍ଯ୍ୟନ୍ତ ତାଙ୍କର ଉତ୍ତରାଧିକାରୀମାନେ ସାମ୍ରାଜ୍ୟର ଉପାନ୍ତ ଅଞ୍ଚଳରେ ସଂଗଠିତ ଯୁଦ୍ଧ ବ୍ୟାପାରରେ ଲିପ୍ତ ହୋଇଥିବାରୁ ବୋଧହୁଏ ମନ୍ଦିରର ନିର୍ମାଣ କାର୍ଯ୍ୟ ମଧ୍ୟ ସ୍ଥଗିତ ରହିଥିଲା । ପରିଶେଷରେ ଖ୍ରୀ: ତ୍ରୟୋଦଶ ଶତାବ୍ଦୀର ଆରମ୍ଭରେ ଯେତେବେଳେ ଶତ୍ରୁ ଉପଦ୍ରବ ପ୍ରଶମିତ ହେଲା ଏବଂ ମହାବୀର ଓ ଧର୍ମପ୍ରାଣ ମହାରାଜା ତୃତୀୟ

ଅନଙ୍ଗଭୀମ ଦେବ ଶାସନ ଭାର ଗ୍ରହଣ କଲେ, ସେତେବେଳେ ଶ୍ରୀମନ୍ଦିରର ଗଠନ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ପାରିବାରୁ ବହୁ ଜାଗ, ଯଜ୍ଞ ଏବଂ ଭୂମିଦାନ ସମେତ ବିରାଟ ଉତ୍ସବରେ ନବଗଠିତ ମନ୍ଦିରଟି ପ୍ରତିଷ୍ଠିତ ହେଲା ଏବଂ ସେଥିରେ ପ୍ରସ୍ତର ନିର୍ମିତ ହସ୍ତପଦଯୁକ୍ତ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର ଏବଂ ସୁଭଦ୍ରାଙ୍କ ମୂର୍ତ୍ତି ରତ୍ନସିଂହାସନରେ ସ୍ଥାପିତ ହେଲେ ।

ଅନଙ୍ଗଭୀମଙ୍କ ଦାନ ସମ୍ବଳିତ ଗୋଟିଏ ତାମ୍ର ଶାସନ ପୁରୀ ଜିଲ୍ଲା ନଗରୀ ଗ୍ରାମରୁ ଆବିଷ୍କୃତ ଅଭିଲେଖରେ ବର୍ଣ୍ଣିତ ହୋଇଛି । ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ସମ୍ପର୍କୀୟ ବିଷୟ ସେଥିରେ ବର୍ଣ୍ଣିତ ହୋଇ ତାହା ୧୨୩୦ ଖ୍ରୀଷ୍ଟାବ୍ଦରେ ହୋଇଥିବା ଉଲ୍ଲେଖ ହୋଇଛି । ବାସ୍ତବରେ କହିବାକୁ ଗଲେ ମନ୍ଦିରର ଆକାର ଦୃଷ୍ଟିରୁ ସେଥିରେ ସ୍ଥାପିତ ମୂର୍ତ୍ତିଗୁଡ଼ିକର ଆକାର ଯଥେଷ୍ଟ ବଢ଼ିଥିବା ଜଣାଯାଏ ।

ଶ୍ରୀପୁରୁଷୋତ୍ତମଙ୍କ ପୂଜା ପଦ୍ଧତି ଏବଂ ଯାନଯାତ୍ରାଗୁଡ଼ିକ ଅନଙ୍ଗଭୀମଙ୍କ ଗୁରୁ ଦୌତାପତାବାଗୀ ଶ୍ରୀବୈଷ୍ଣବ ସମ୍ପ୍ରଦାୟର ପଦ୍ଧତି ଅନୁସାରେ ପରିଚାଳିତ ହେଲା ।

ମହାପ୍ରଭୁ ଶ୍ରୀପୁରୁଷୋତ୍ତମଙ୍କ ରଥଯାତ୍ରା ସେତେବେଳେ ସମ୍ଭବତଃ ଉତ୍ସବ ପ୍ରତିମାମାନଙ୍କ ସାହାଯ୍ୟରେ ଅନୁଷ୍ଠିତ ହେଉଥିଲା । ଠିକ୍ ଏହିପରି ଉତ୍ସବମାନ କଳିଙ୍ଗ ରାଜ୍ୟରୁ ପ୍ରତିଷ୍ଠିତ ଶ୍ରୀନୃସିଂହନାଥ ମନ୍ଦିରରେ ଶ୍ରୀବୈଷ୍ଣବ ସମ୍ପ୍ରଦାୟ ଗୁରୁଙ୍କ ଅଧ୍ୟକ୍ଷତାରେ ପରିଚାଳିତ ହେଉଥିଲା । ତେଣୁ ସେହି ଗୁରୁମାନଙ୍କ ଉପଦେଶ ଅନୁସାରେ ପ୍ରସ୍ତର ବିଗ୍ରହଙ୍କୁ ତାଙ୍କ ସିଂହାସନରୁ ଉଠାଇ ରଥଯାତ୍ରା ସମ୍ପନ୍ନ କରିବା ପରିବର୍ତ୍ତେ ଉତ୍ସବ ପ୍ରତିମାମାନଙ୍କୁ ନେଇ ରଥୋତ୍ସବ ହେଉଥିବା ସମ୍ଭବ । ଏହି ଉତ୍ସବକୁ ଦକ୍ଷିଣ ଭାରତୀୟ ବୈଷ୍ଣବ ମନ୍ଦିରମାନଙ୍କରେ କଲ୍ୟାଣୋତ୍ସବ ବା ରଥୋତ୍ସବ ନାମରେ ଅଭିହିତ କରାଯାଏ । ଏହାର ତାତ୍ପର୍ଯ୍ୟ ହେଉଛି, ଶ୍ରୀବିଗ୍ରହଙ୍କର ବିବାହ ଉତ୍ସବ । କଲ୍ୟାଣ ମଣ୍ଡପରେ ବିଷ୍ଣୁ ଏବଂ ଲକ୍ଷ୍ମୀଙ୍କର ବିବାହ କର୍ମ ପଦ୍ଧତି ସମ୍ପୂର୍ଣ୍ଣ ହୋଇ ଯେଉଁ ଯାତ୍ରା କରାଯାଉଥିଲା ତାହା ରଥୋତ୍ସବ ଆକାରରେ ସାହିମାନଙ୍କରେ ବୁଲାଇ ଶ୍ରୀମନ୍ଦିରକୁ ଫେରି ଆସିବା ପଦ୍ଧତି । ଅଦ୍ୟାପି ଏହି ପଦ୍ଧତି ଅନୁସୃତ ହେଉଛି ।

ଉପରୋକ୍ତ ଦୃଷ୍ଟାନ୍ତମାନଙ୍କରୁ ଆମ୍ଭେ ସ୍ଥିର କରିପାରୁ ଯେ ଯେତେଦିନ ପର୍ଯ୍ୟନ୍ତ ହସ୍ତପଦଯୁକ୍ତ ପ୍ରସ୍ତର ମୂର୍ତ୍ତି ଶ୍ରୀମନ୍ଦିରରେ ସ୍ଥାପିତ ହୋଇଥିଲେ ସେ ପର୍ଯ୍ୟନ୍ତ

ତାଙ୍କୁ ସିଂହାସନ ଚ୍ୟୁତ କରିବା ସମ୍ଭବ ନଥିଲା । ଧର୍ମଶାସ୍ତ୍ରମାନଙ୍କରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ ପ୍ରତିଷ୍ଠିତ ମୂର୍ତ୍ତି ସ୍ଥାନଚ୍ୟୁତ ହେଲେ ତାଙ୍କୁ ଫେରାଇ ଆଣି ସିଂହାସନରେ ପୂଜିତ କରାଇବା ଧର୍ମବିରୋଧୀ କାର୍ଯ୍ୟ । ଅତଏବ ପ୍ରସ୍ତର ମୂର୍ତ୍ତିଙ୍କୁ ଦାରୁ ମୂର୍ତ୍ତିରେ ପରିଣତ କରିବା କାଳ ପର୍ଯ୍ୟନ୍ତ ଉତ୍ସବ ପ୍ରତିମା ହିଁ ରଥଯାତ୍ରା ପାଇଁ ଉଦ୍ଦିଷ୍ଟ ହୋଇଥିଲା ।

ଅନଙ୍ଗଭୀମ ଦେବଙ୍କ ପୁତ୍ର ନରସିଂହ ଦେବ ୧ମ ମଧ୍ୟ ଜଣେ ପରାକ୍ରମୀ ବୀର ଏବଂ ଧର୍ମପ୍ରାଣ ରାଜା ଥିଲେ । ତାଙ୍କ ସମୟରେ ବଙ୍ଗର ମୁସଲମାନ ସୁଲତାନମାନେ ଓଡ଼ିଶା ଆକ୍ରମଣ କରିବାକୁ ବାରମ୍ବାର ଚେଷ୍ଟା କରୁଥାନ୍ତି । ସେମାନଙ୍କ ଯୁଦ୍ଧ ନୀତି ଦୃଷ୍ଟିରୁ ଓଡ଼ିଶାର ହିନ୍ଦୁ ଶସ୍ତ୍ରାୟୁଧ ସୈନ୍ୟମାନେ ପ୍ରତି-ଆକ୍ରମଣ କରିବା ସମ୍ଭବ ହୋଇନଥିଲା । କାରଣ ଆଉରଙ୍ଗଜେବ ଯେପରି ଶିବାଜୀଙ୍କ ବିପକ୍ଷରେ ଯୁଦ୍ଧ କରିବା ବେଳେ ହିନ୍ଦୁ ସୈନ୍ୟମାନଙ୍କୁ ନିରୁତ୍ସାହିତ କରିବା ଉଦ୍ଦେଶ୍ୟରେ ଗୋଟିଏ ଗୋଟିଏ ଗୋରୁ ପଲକୁ ଆଗରେ ରଖି ମୁସଲମାନ ସୈନ୍ୟଙ୍କ ସହିତ ପଛରେ ଥାଇ ଯୁଦ୍ଧ କରୁଥିଲେ, ଠିକ୍ ସେହିପରି ପ୍ରଥା ବଙ୍ଗର ମୁସଲମାନମାନେ ଉତ୍କଳ ଜୟ କରିବାକୁ ଗୋରୁ ପଲ ବ୍ୟବହାର କରୁଥିବା ସମ୍ଭବ । ତେଣୁ ଉତ୍କଳର ଧର୍ମଭୀରୁ ଶସ୍ତ୍ରାୟୁଧ ସୈନ୍ୟମାନେ ପଶ୍ଚାତ୍‌ପଦ ହୋଇ ଯୁଦ୍ଧ କ୍ଷେତ୍ରରେ ଅସ୍ତ୍ର ତ୍ୟାଗ କରିଥିବା ମଧ୍ୟ ସମ୍ଭବ । ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ ନରସିଂହ ଦେବଙ୍କ ପକ୍ଷରେ ଏକ ବିରାଟ ସମସ୍ୟା ଦେଖାଗଲା । ତେଣୁ ସେ ନିଜ ଗୁରୁଙ୍କ ପରାମର୍ଶ କ୍ରମେ ଶବରମାନଙ୍କୁ ଆଣାଇ ତାଙ୍କୁ ସୈନ୍ୟ ଶ୍ରେଣୀରେ ଅନ୍ତର୍ଭୁକ୍ତ କଲେ । ସେମାନଙ୍କର ଉପସ୍ଥିତି ହେତୁ ମୁସଲମାନମାନଙ୍କ ଯୁଦ୍ଧ କୌଶଳ ହାର ମାନିଲା । ଉତ୍କଳ ସୈନ୍ୟ ସେତେବେଳେ ବଙ୍ଗର ଲକ୍ଷଣାବତୀ ପର୍ଯ୍ୟନ୍ତ ଅସ୍ତ୍ର ଚାଳନା କରିବାକୁ ସମର୍ଥ ହୋଇ ପାରିଥିଲେ । ଏ ସମ୍ପର୍କରେ ମୁସ୍‌ଲିମ୍ ଐତିହାସିକମାନେ ମଧ୍ୟ ଉଲ୍ଲେଖ କରିଛନ୍ତି ।

ଶବରମାନଙ୍କ ଦେବତାଙ୍କୁ ଆରାଧନା କରିବାପାଇଁ ସେମାନଙ୍କର ପ୍ରବଳ ଇଚ୍ଛା ହେତୁ ପ୍ରସ୍ତର ମୂର୍ତ୍ତିଙ୍କୁ ଶ୍ରୀମନ୍ଦିରରୁ ବାହାର କରି ଆଦିବାସୀ ପୂଜିତ ଦେବତାଙ୍କ ସ୍ୱରୂପରେ ଦାରୁ ମୂର୍ତ୍ତି ସ୍ଥାପନ କରାଗଲା ଏବଂ ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ନବଗଠିତ ଦାରୁ ବିଗ୍ରହଙ୍କ ହୃଦୟ ମଧ୍ୟରେ ଦୁଇଟି ଶାଳଗ୍ରାମ ଶିଳା ସ୍ଥାପିତ ହେଲା । ନବକଳେବର ବେଳେ ଅତି ଗୁପ୍ତରେ ଏହା

ରଖାଯାଇଥାଏ । ସେହି ଦୁଇଟି ପବିତ୍ର ଶାଳଗ୍ରାମ ମଧ୍ୟରୁ ଗୋଟିଏ ନେପାଳର ଗଣ୍ଡକୀ ନଦୀରୁ ଏବଂ ଅନ୍ୟଟି ଦ୍ୱାରକାରୁ ଅଣାଯାଇ ଶ୍ରୀଜଗନ୍ନାଥଙ୍କ ହୃଦୟ ମଧ୍ୟରେ ସଂଗୃହୀତ ହେବା ଯୋଗୁଁ ଆଦ୍ୟ-ଶଙ୍କରାଚାର୍ଯ୍ୟଙ୍କ ମତାନୁସାରେ ସେ ସ୍ଥାନରେ ନିଶ୍ଚିତ ଭାବରେ ହରିହରଙ୍କ ଅବସ୍ଥିତି ପ୍ରମାଣିତ । ତେଣୁ ଉଭୟେ ଆଦିବାସୀ ଓ ବ୍ରାହ୍ମଣମାନେ କୌଣସି ଆକ୍ଷେପ ନକରି ସର୍ବଧର୍ମ ସମନ୍ୱିତ ଧର୍ମ ରୂପେ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଦାରୁ-ବିଗ୍ରହଙ୍କୁ ଆରାଧନା କରିବାକୁ ଲାଗିଲେ । ତଦ୍‌ବଧି ଯେଉଁ ରଥୋତ୍ସବ ଅନୁଷ୍ଠିତ ହେଲା ସେଥିରେ କେବଳ ହିନ୍ଦୁ ନୁହନ୍ତି, ବୌଦ୍ଧ, ଜୈନ, ଶିଖ ଏବଂ କବୀର ପନ୍ଥୀମାନେ ମଧ୍ୟ ସହଯୋଗ କରିବା ଏବଂ ଏହି ରଥଯାତ୍ରା ଉତ୍ସବକୁ ଭାରତର ଅନ୍ୟାନ୍ୟ ହିନ୍ଦୁ ମନ୍ଦିରମାନଙ୍କରେ ଅନୁଷ୍ଠିତ ରଥୋତ୍ସବମାନଙ୍କ ମଧ୍ୟରେ ବହୁ ଆଡ଼ମ୍ବର ସହକାରେ ଅଦ୍ୟାପି ପାଳନ କରାଯାଉଛି ।



# ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଗୁଣ୍ଡିଚା ଯାତ୍ରାର ବୈଶିଷ୍ଟ୍ୟ

ପୁରୀରେ ଶ୍ରୀଜଗନ୍ନାଥଙ୍କ ଯାତ୍ରା-ଉତ୍ସବଗୁଡ଼ିକ ମଧ୍ୟରେ ଶ୍ରୀଗୁଣ୍ଡିଚା ଯାତ୍ରା ସର୍ବପ୍ରଧାନ । ଆଷାଢ଼ ଶୁକ୍ଳ ଦ୍ୱିତୀୟାତିଥିଠାରୁ ନବଦିନ ବ୍ୟାପୀ ଏ ଯାତ୍ରା ମହାସମାରୋହରେ ସମ୍ପନ୍ନ ହୁଏ । ଲକ୍ଷ ଲକ୍ଷ ଯାତ୍ରୀ ଏ ଉତ୍ସବରେ ଦେଶ ବିଦେଶରୁ ଆସି ଯୋଗ ଦେଇଥାନ୍ତି ।

ଆଷାଢ଼ମାସ ଅମାବାସ୍ୟାଠାରୁ ଶୁକ୍ଳ ପ୍ରତିପଦା ମଧ୍ୟରେ ଶ୍ରୀଠାକୁରଙ୍କ ନେତ୍ରୋତ୍ସବ ଓ ନବଯୌବନ ବିଧି ସମ୍ପନ୍ନ ହୋଇଥାଏ । ପୂର୍ବରୁ ଏହାଙ୍କୁ 'ଅଣସର-କୋଠରୀ'ରେ ୧୫ ଦିନ ରଖାଯାଏ ଗୋଟିଏ ବାଉଁଶ-ତାଟି ବେଢ଼ ମଧ୍ୟରେ । ସେଠାରୁ ଦଇତା ଓ ପତି-ମହାପାତ୍ରମାନେ ଯାଇ ଠାକୁର-ଠାକୁରାଣୀଙ୍କ ସେବାରେ ନିଯୁକ୍ତ ହୋଇଥାନ୍ତି । ଅନ୍ୟ ଦର୍ଶକ ଓ ଭକ୍ତମାନେ 'ଅଣସର' (ଅନବସର) ବେଳେ ଦର୍ଶନ କରିବାକୁ ଯିବା ନିଷିଦ୍ଧ । ସୁତରାଂ ଶବରବଂଶଜଙ୍କ ପ୍ରଚଳିତ ବିଧି-ବିଧାନ ହିଁ ସେଠାରେ ପ୍ରବର୍ତ୍ତିତ ହୋଇଥିବା ଅନୁମେୟ । ଆଷାଢ଼ମାସରେ ଅନୁଷ୍ଠିତ ସମସ୍ତ ଉତ୍ସବରେ ଦଇତା ଓ ପତି-ମହାପାତ୍ରମାନଙ୍କ ସେବାର ପ୍ରାଧାନ୍ୟ ଉପଲବ୍ଧି ହୁଏ । ସୁତରାଂ ରଥଯାତ୍ରାର ଆରମ୍ଭ ଶ୍ରୀମନ୍ଦିରରେ 'ଦାରୁବ୍ରହ୍ମ', ଅର୍ଥାତ୍ ହସ୍ତପଦହୀନ ବିଗ୍ରହମାନଙ୍କ ପ୍ରତିଷ୍ଠା ପରେ ଯେଉଁ ସମୟରେ ଶବର ସମ୍ପ୍ରଦାୟ ଶ୍ରୀଠାକୁରଙ୍କ ସେବାରେ ନିଯୁକ୍ତ ହୋଇଥିଲେ, ସେହି କାଳ ବୋଲି ନିର୍ଦ୍ଦେଶ କରାଯାଇପାରେ । ତେଣୁ ଶ୍ରୀମନ୍ଦିରରେ ପୂର୍ବ ପ୍ରଚଳିତ ପ୍ରଥା ଅନୁଯାୟୀ ଯଦି ରଥୋତ୍ସବ ସମ୍ପନ୍ନ ହେଉଥିବ, ତେବେ ତାହା ଶ୍ରୀମନ୍ଦିରର ଉତ୍ସବ ପ୍ରତିମାମାନଙ୍କୁ ରଥ କିମ୍ବା ବିମାନରେ ବସାଇ ବାଦ୍ୟ-ବାଦ୍ୟରେ ପରିକ୍ରମା କରାଯାଇ ଦେବଦେବୀ ମନ୍ଦିରକୁ ନେଇ ବିଜେ କରାଯାଉଥିବା ସମ୍ଭବ ।

ଶ୍ରୀନୃସିଂହ ମନ୍ଦିରରୁ ଆବିଷ୍କୃତ ଏକ ଶିଳାଲେଖରୁ ଜଣାଯାଇଛି ଯେ, ପ୍ରାୟ ୧୧୫୦ ଖ୍ରୀଷ୍ଟାବ୍ଦ କିମ୍ବା ତତ୍ପୂର୍ବରୁ ତଥାକଥିତ ନୃସିଂହ ମନ୍ଦିରରେ ଶ୍ରୀପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରା ତିନିମୂର୍ତ୍ତିଙ୍କୁ ସ୍ଥାପନ କରାଯାଇଥିଲା ଓ ସେହି ମୂର୍ତ୍ତିମାନଙ୍କୁ 'ଶିଳ୍ପଶାସ୍ତ୍ର'ର ପଦ୍ଧତି ଅନୁସାରେ ଗଠନ କରାଇ ଶ୍ରୀମନ୍ଦିରରେ ସ୍ଥାପନ କରାଯାଇଥିଲା । ତେଣୁ ଶ୍ରୀପୁରୁଷୋତ୍ତମଙ୍କର ମୂର୍ତ୍ତି ଶାସ୍ତ୍ରୀୟ ମାଧବ ମୂର୍ତ୍ତିଙ୍କ ପରି ଚତୁର୍ଭୁଜ ସମ୍ପନ୍ନ ପ୍ରସ୍ତରରେ ଗଠିତ ହୋଇଥିବା

ସମ୍ଭବ । ବଳଭଦ୍ର ଓ ସୁଭଦ୍ରା ମଧ୍ଯ ହସ୍ତପଦଯୁକ୍ତ ପ୍ରସ୍ତର ମୂର୍ତ୍ତି ହୋଇଥିଲେ ।

ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ କାଳରେ ଧର୍ମଶାସ୍ତ୍ରାନୁସାରେ ଯେଉଁ ମୂର୍ତ୍ତିମାନ ଗଠିତ ହୋଇ ନୃସିଂହ ମନ୍ଦିରରେ ସ୍ଥାପିତ ହୋଇଥିଲେ ସେପରି ପ୍ରସ୍ତରମୂର୍ତ୍ତି ହିଁ ମହାରାଜା ଅନଙ୍ଗଭୀମ (ତୃତୀୟ) ୧୨୩୦ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ଦିର (ବଡ଼ଦେଉଳ) ପ୍ରତିଷ୍ଠା ବେଳେ ସେଥିରେ ସ୍ଥାପନ କରିଥିଲେ । ଧର୍ମଶାସ୍ତ୍ରର କୌଣସି ବ୍ୟତିକ୍ରମ ଅନଙ୍ଗଭୀମ କରିବା ସମ୍ଭବ ନୁହେଁ । କାରଣ ତାଙ୍କ ନାଗରୀ ତାମ୍ର ଶାସନରେ ଯେଉଁ ଧର୍ମକାର୍ଯ୍ୟମାନ ଉଲ୍ଲେଖ ଅଛି, ସେ ସମସ୍ତ ଧର୍ମଶାସ୍ତ୍ରର ଅନୁବର୍ତ୍ତୀ ବୋଲି ସେ ନିଜେ ପ୍ରକାଶ କରିଛନ୍ତି । ତେଣୁ ଶାସ୍ତ୍ରୋକ୍ତ ପଦ୍ଧତି ଅନୁସାରେ କୌଣସି ଦେବବିଗ୍ରହଙ୍କୁ ତାଙ୍କ ପ୍ରତିଷ୍ଠିତ ଆସନରୁ ଉଠାଇ ନେବା ଅନୁଚିତ ବୋଲି ଉଲ୍ଲେଖ ଥିବା ପଦ୍ଧତି ସେ ଆଦୌ ଲଙ୍ଘନ କରି ନ ଥିବେ । ଏପରି ସ୍ଥଳେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରସ୍ତର ବିଗ୍ରହମାନଙ୍କୁ ତାଙ୍କ ପ୍ରତିଷ୍ଠିତ ରତ୍ନସିଂହାସନରୁ ଉଠାଇ ନେଇ ସ୍ଥାନାନ୍ତରିତ କରିଥିବା ଆଦୌ ସମ୍ଭବ ନୁହେଁ । ସୁତରାଂ ଦ୍ୱାଦଶ ଶତାବ୍ଦୀ ମଧ୍ୟଭାଗଠାରୁ ତ୍ରୟୋଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ହସ୍ତପଦଯୁକ୍ତ ପ୍ରସ୍ତରମୂର୍ତ୍ତିଙ୍କ ପାଇଁ ରଥଯାତ୍ରା ଉଦ୍ଦିଷ୍ଟ ହୋଇ ନଥିଲା ।

ମହାରାଜା ଅନଙ୍ଗଭୀମଙ୍କ ପୁତ୍ର ପ୍ରଥମ ନରସିଂହଦେବଙ୍କ ରାଜତ୍ୱ କାଳରେ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ, ଯେତେବେଳେ କୋଣାର୍କଠାରେ 'ସୂର୍ଯ୍ୟମନ୍ଦିର' ନିର୍ମାଣ କରାଇ ସେଥିର ଆକାର ସୂର୍ଯ୍ୟଙ୍କ ରଥର ପ୍ରତୀକରେ ଗଢ଼ାଇଲେ, ସେତିକବେଳୁ ସମ୍ଭବତଃ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ରଥଯାତ୍ରା ପାଇଁ ଏକ ନୂତନ ପ୍ରକଳ୍ପ କାର୍ଯ୍ୟକାରୀ ହେଲା । ସିଂହାଚଳଠାରେ ବର୍ତ୍ତମାନ ଗୋଟିଏ ମଣ୍ଡପ ରଥ ଆକାରରେ ନିର୍ମିତ ହୋଇଥିବା ଦେଖାଯାଏ; ତାହା ମଧ୍ଯ ସେହି ନରସିଂହଦେବଙ୍କର କୀର୍ତ୍ତି । ସୁତରାଂ ରଥ ପ୍ରତି ନରସିଂହଦେବଙ୍କ ପ୍ରବଳ ଆଗ୍ରହ ଏଥିରୁ ପ୍ରମାଣିତ ହୁଏ । ରଥରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ସୁଭଦ୍ରା ତିନି ମୂର୍ତ୍ତିଙ୍କ ଯାତ୍ରା ଉତ୍ସବ ଆରମ୍ଭ କରିବାରେ ରାଜା ପ୍ରଥମ ନରସିଂହ ଦେବ ସର୍ବପ୍ରଥମ ବୋଲି ନିର୍ଦ୍ଦେଶ କରାଯାଇପାରେ ।

ଶ୍ରୀମନ୍ଦିରର ରଥ ଉତ୍ସବ ପରି ଏକ ପ୍ରସିଦ୍ଧ ଉତ୍ସବକୁ ଏକାଦଶ ଶତାବ୍ଦୀରେ ସତାନନ୍ଦ ତାଙ୍କ ଗ୍ରନ୍ଥ 'ସତାନନ୍ଦ-ସଂଗ୍ରହ'ରେ ଉଲ୍ଲେଖ କରିନାହାନ୍ତି । ଅଥଚ, କୃଷ୍ଣଜନ୍ମାଷ୍ଟମୀ, ବଳଭଦ୍ର ଜନ୍ମ, କୁଆଁର ପୂର୍ଣ୍ଣିମୀ ପ୍ରଭୃତି ଉତ୍କଳରେ ପ୍ରଚଳିତ

ଉତ୍ସବମାନଙ୍କର ନାମ ସେ ଉଲ୍ଲେଖ କରିଛନ୍ତି । ତାଙ୍କ ପରେ ଶମ୍ଭୁକର ବାଜପେୟୀ ଓ ତାଙ୍କ ପୁତ୍ର ବିଦ୍ୟାକର ବାଜପେୟୀଙ୍କର ସ୍ମୃତି ଗ୍ରନ୍ଥରେ ମଧ୍ୟ 'ରଥଯାତ୍ରା' ବିଷୟ ଉଲ୍ଲେଖ ହୋଇନାହିଁ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଖ୍ରୀଷ୍ଟ ତ୍ରୟୋଦଶ ଶତାବ୍ଦୀ ପୂର୍ବରୁ କୌଣସି ଧର୍ମ ଗ୍ରନ୍ଥରେ ଆଷାଢ଼ ମାସର ରଥଯାତ୍ରା ବିଷୟ ଉଲ୍ଲେଖ ହୋଇନାହିଁ କିମ୍ବା ହସ୍ତପଦ ବିହୀନ ଦାରୁମୂର୍ତ୍ତିଙ୍କର ଗଠନ ସମ୍ବନ୍ଧରେ ସୂଚନା ଦିଆଯାଇନାହିଁ ।

ପ୍ରଥମ ନରସିଂହଦେବଙ୍କ ସମୟରେ ବଙ୍ଗଦେଶର ମୁସଲମାନ୍‌ମାନେ ଓଡ଼ିଶା ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ତେଣୁ ନରସିଂହଦେବ ତାଙ୍କ ସୈନ୍ୟସାମନ୍ତ ସହ ବଙ୍ଗ ଦେଶରେ ଅଭିଯାନ କରିଥିବା ବିଷୟ ଇତିହାସରୁ ପ୍ରମାଣିତ ହୁଏ । ସେହି ଯୁଦ୍ଧରେ ପାର୍ବତୀୟ ଶବର-ସୈନ୍ୟମାନେ ବୀରତ୍ୱ ପ୍ରଦର୍ଶନ କରିଥିବାରୁ ସେମାନଙ୍କ ସନ୍ତୋଷ ବିଧାନ ପାଇଁ 'ଦାରୁବ୍ରହ୍ମ' ରୂପକ ହସ୍ତପଦହୀନ କାଷ୍ଠମୂର୍ତ୍ତି ଶ୍ରୀମନ୍ଦିରରେ ପ୍ରତିଷ୍ଠା କରାଯାଇଥିବା ସମ୍ଭବ । ଏହା ପ୍ରମାଣିତ କରିବାକୁ ଏ ଲେଖକ ନିକଟରେ ପ୍ରକାଶିତ ଏକ ଗ୍ରନ୍ଥରେ ବିସ୍ତୃତ ଆଲୋଚନା କରିଅଛି । ତାହା ଏଠାରେ ଅବତାରଣା କରି ପ୍ରବନ୍ଧର କଳେବର ବଢ଼ାଇବା ଅନାବଶ୍ୟକ । ସଂକ୍ଷେପରେ କହିବାକୁ ଗଲେ, ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ଶେଷ ଭାଗରେ ହିଁ ଆଦିବାସୀମାନଙ୍କ ସାହଚର୍ଯ୍ୟରେ ଦାରୁମୂର୍ତ୍ତି କୌଣସି ବଣ ଜଙ୍ଗଲରୁ ଅଣାଇ 'ଦାରୁ-ବ୍ରହ୍ମ' ରୂପେ ତାଙ୍କର 'ନବକଳେବର' ସୃଷ୍ଟି କରି ଶ୍ରୀମନ୍ଦିରରେ ପ୍ରତିଷ୍ଠା କରିଥିବା ସମ୍ଭବ ବୋଲି ମନେହୁଏ । ପୂର୍ବପ୍ରଥା ଅନୁଯାୟୀ ଦଇତା ଓ ପତି-ମହାପାତ୍ରମାନଙ୍କର ସେବା, ବାସ୍ତବରେ 'ନବକଳେବର' ତଥା 'ଅନବସର' ସମେତ 'ରଥୋତ୍ସବ' ପାଇଁ ଉଦ୍ଦିଷ୍ଟ ହୋଇଅଛି । ଏହା ଆଷାଢ଼ ମାସରେ ସମ୍ପନ୍ନ ହେବାରୁ ଶ୍ରୀମନ୍ଦିର ପ୍ରାଚୀନ ପଦ୍ଧତିରେ କେତେକ ପରିବର୍ତ୍ତନ କରାଗଲା । ସେହି ମାସରେ ପୂର୍ବେ ଦେବଶୟନ ଉତ୍ସବ ସଙ୍ଗେ ରଥୋତ୍ସବ ପରି ଏକ ନୂତନ ଉତ୍ସବର ସଂଯୋଗ ହେବାରୁ 'ଦ୍ୱାଦଶ ଉତ୍ସବ' (*) ପରିବର୍ତ୍ତେ "ବାରମାସରେ ତେର ଉତ୍ସବ" ସୃଷ୍ଟି

(*) 'ଦ୍ୱାଦଶ-ଯାତ୍ରା'ର ନାମ ତାଲିକା ସମ୍ବଳିତ ଶ୍ଳୋକରୁ ପ୍ରକଟିତ ହୁଏ—

ମଞ୍ଚେ ସ୍ନାନଂ ରଥବରଗତିଃ ଶାୟନଂ ଶ୍ୱୟନଂହେ
ପାର୍ଶ୍ୱାବୃତ୍ତିଃ ଶୟନନିବୃତଃ ପ୍ରାବୃତଃ ପୁଷ୍ୟପୂଜା ।
ଦୋଳାକେଳିର୍ଦମନକ ମହୋକ୍ଷୟ୍ୟପୁଣ୍ୟତୃତୀୟା
ଏଷ୍ଣା ଯାତ୍ରା ଭୁବନବିଦିତା ଦ୍ୱାଦଶେତି ନରେନ୍ଦ୍ର ।।

(ଗଦାଧର ପଦ୍ଧତି-ସ୍ମୃତି, ପୃ-୧୬୭)

ହେଲା । ପ୍ରତି ମାସରେ ଗୋଟିଏ ଗୋଟିଏ ଉତ୍ସବ ବିଷ୍ଣୁ ମନ୍ଦିରମାନଙ୍କରେ ପାଳିତ ହୁଏ । କିନ୍ତୁ ଶ୍ରୀମନ୍ଦିରରେ ପୂର୍ବପ୍ରଚଳିତ 'ଦ୍ୱାଦଶ-ଯାତ୍ରା'ର ସଂଖ୍ୟା ସଂରକ୍ଷିତ କରିବା ପାଇଁ ଆଶ୍ୱିନ ମାସର କୁମାର-ପୂର୍ଣ୍ଣିମା ଉତ୍ସବ ପରିବର୍ତ୍ତେ "ରଥ ଉତ୍ସବ' ସଂଯୋଗ କରାଗଲା, କିନ୍ତୁ ପରେ ତାହା ତେରଟି ଯାତ୍ରାରେ ପରିଣତ ହେଲା ଏବଂ ଆଶ୍ୱିନ ମାସର କୁମାର ପୂର୍ଣ୍ଣିମାକୁ ମିଶାଇ ଦିଆଗଲା । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଆଷାଢ଼ ମାସରେ ଗୋଟିଏ ଅଧିକ ଉତ୍ସବ ସଂଯୋଗ କରାଯାଇ "ବାରମାସରେ ତେର ପର୍ବ" ସମ୍ଭବ ହୋଇଥିଲା ।

ବର୍ତ୍ତମାନ ଓଡ଼ିଶାରେ ପ୍ରଚଳିତ 'ରଥଯାତ୍ରା'ର ମୌଳିକ ଉଦ୍ଦେଶ୍ୟ ବିଚାର କରାଯାଉ । ଗଙ୍ଗ ରାଜତ୍ୱରେ ଦକ୍ଷିଣରୁ ଶ୍ରୀ ବୈଷ୍ଣବ ସଂପ୍ରଦାୟ ଓଡ଼ିଶାକୁ ଆସି ସେହି ରାଜାମାନଙ୍କର ବୈଷ୍ଣବଗୁରୁ ରୂପେ ପରିଚିତ ହୋଇଥିଲେ । କଳିଙ୍ଗର ପୂର୍ବ ରାଜଧାନୀ ଅର୍ଥାତ୍ କଳିଙ୍ଗ ନଗରରେ ରହି ଚୋଡ଼ଗଙ୍ଗଙ୍କ ଓ ତାଙ୍କ ପୂର୍ବରୁ ଯେଉଁ ରାଜାମାନେ ରାଜତ୍ୱ କରୁଥିଲେ, ସେମାନଙ୍କ ଅଧୀନରେ ଦୁଇଟି ବିଷ୍ଣୁମନ୍ଦିର ଥିଲା । ପ୍ରଥମଟି ହେଉଛି, ବରାହ-ନୃସିଂହଙ୍କର ସିଂହାଚଳ ମନ୍ଦିର ଓ ଦ୍ୱିତୀୟଟି ଶ୍ରୀକୁର୍ମେଶ୍ୱରଙ୍କ ଶ୍ରୀକୂର୍ମ ମନ୍ଦିର । ଉଭୟ ମନ୍ଦିରର ପରିଚାଳନା ଭାର ଶ୍ରୀ ବୈଷ୍ଣବ ସମ୍ପ୍ରଦାୟର 'ଆଚାର୍ଯ୍ୟ' ପଦବାଚ୍ୟ ପଣ୍ଡିତ ଓ ଗୁରୁମାନେ ବହନ କରିଥିଲେ । ଚୋଡ଼ଗଙ୍ଗଙ୍କ ରାଜତ୍ୱର ଶେଷାର୍ଦ୍ଧରେ ଯେତେବେଳେ କଳିଙ୍ଗ ସଙ୍ଗେ ଉତ୍କଳର ସମ୍ମିଶ୍ରଣ ହୁଏ, ସେତେବେଳେ ଗଙ୍ଗ-ରାଜଧାନୀ କଳିଙ୍ଗ ନଗରରୁ ଉଠାଇ ନେଇ ଉତ୍କଳର ବାରାଣସୀ କଟକଠାରେ, ଅର୍ଥାତ୍ ଆଧୁନିକ କଟକରେ ସ୍ଥାପିତ ହେଲା । ଚୋଡ଼ଗଙ୍ଗ ପୁରୁଷୋତ୍ତମଙ୍କର ଶ୍ରୀମନ୍ଦିର ନିର୍ମାଣ କରିବାକୁ ଉଦ୍ୟମ କଲେ । ସେତିକିବେଳେ ଦକ୍ଷିଣର ଶ୍ରୀବୈଷ୍ଣବ-ସମ୍ପ୍ରଦାୟର ଗୁରୁମାନେ ଉତ୍କଳକୁ ଆସି ତାଙ୍କୁ ବୈଷ୍ଣବଧର୍ମରେ ଦୀକ୍ଷା ଦେଉଥିଲେ । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିର ଆକାର ଓ ତାଙ୍କ ପୂଜା ତଥା ପର୍ବପର୍ବାଣୀର କେତେକ ଅଂଶ ଦକ୍ଷିଣ କଳିଙ୍ଗର ବିଷ୍ଣୁମନ୍ଦିରମାନଙ୍କରେ ପ୍ରଚଳିତ ପଦ୍ଧତି ଅନୁସାରେ ପ୍ରବର୍ତ୍ତିତ ହୋଇଥିବା ଜଣାଯାଏ । ଶ୍ରୀବୈଷ୍ଣବମାନଙ୍କ କପୋଳର ତିଳକ ପ୍ରତୀକ 'ଚିତା' ଚିତାଲାଗି ଅମାବାସ୍ୟା ଦିନ ଶ୍ରୀଜଗନ୍ନାଥଙ୍କ କପୋଳ ମଣ୍ଡିତ କରେ । ସେପରି ଶ୍ରୀ ବୈଷ୍ଣବଙ୍କ ଦ୍ୱାରା ଦକ୍ଷିଣର ବୈଷ୍ଣବ ମନ୍ଦିରମାନଙ୍କରେ ଅନୁଷ୍ଠିତ 'ରଥୋତ୍ସବ' (କଲ୍ୟାଣୋତ୍ସବ) ମଧ୍ୟ ଖ୍ରୀ: ୧୩ଶ ଶତାବ୍ଦୀରେ ପୁରୀର ଶ୍ରୀମନ୍ଦିରରେ ପ୍ରବର୍ତ୍ତିତ ହେଲା । ଶ୍ରୀଜଗନ୍ନାଥଙ୍କ 'ଦ୍ୱାଦଶ-ଯାତ୍ରା'ରେ ଅଧିକ ଗୋଟିଏ ଯାତ୍ରା ରୂପେ, ଅର୍ଥାତ୍ ଆଷାଢ଼ମାସରେ ଅନୁଷ୍ଠିତ 'ଶୟନ ଏକାଦଶୀ ଉତ୍ସବ' ସଙ୍ଗେ ମିଶାଇ ଦିଆଗଲା । ତଦବଧି ଶ୍ରୀଜଗନ୍ନାଥଙ୍କ ମୁଖ୍ୟ ମୁଖ୍ୟ

ଉତ୍ସବଗୁଡ଼ିକ "ଦ୍ୱାଦଶ-ଯାତ୍ରା" ପରିବର୍ତ୍ତେ "ବାରମାସରେ ତେର ଯାତ୍ରା" ବୋଲି ଲୋକମାନଙ୍କ ମଧ୍ୟରେ ପ୍ରବାଦ ସୃଷ୍ଟି ହେଲା ।

ପ୍ରଥମେ କୁହାଯାଇଛି ଯେ, ଦକ୍ଷିଣରେ ଅର୍ଥାତ୍ ଗଙ୍ଗବଂଶୀୟ ରାଜାମାନଙ୍କ ଅଧୀନରେ ଶ୍ରୀବୈଷ୍ଣବ ଆଚାର୍ଯ୍ୟମାନଙ୍କ କର୍ତ୍ତୃକ ଯେଉଁ 'ରଥୋତ୍ସବ' ବା 'କଲ୍ୟାଣୋତ୍ସବ' ବିଷ୍ଣୁମନ୍ଦିରମାନଙ୍କରେ, ବିଶେଷତଃ ସିଂହାଚଳର ଶ୍ରୀନରସିଂହଙ୍କ ମନ୍ଦିରରେ ପରିଚାଳିତ ହୁଏ, ସେଥିର ପ୍ରତୀକ ଉତ୍ସବ ରୂପେ ଶ୍ରୀଜଗନ୍ନାଥଙ୍କ 'ରଥଯାତ୍ରା' ବା 'ଗୁଣ୍ଡିଚା-ଯାତ୍ରା' ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ପ୍ରବର୍ତ୍ତିତ ହେଲା । ଖ୍ରୀ: ୧୩ଶ ଶତାବ୍ଦୀ ପୂର୍ବରୁ ଶ୍ରୀମନ୍ଦିରରେ ଦାରୁ ନିର୍ମିତ ବିଗ୍ରହଙ୍କ ପ୍ରତିଷ୍ଠା କିମ୍ବା ଆଦିବାସୀ ଶବରମାନଙ୍କୁ 'ଦୟିତା' ଓ 'ପତି-ମହାପାତ୍ର' ଆଖ୍ୟା ଦେଇ ଦେବତାଙ୍କ ସେବକ ରୂପେ ନିଯୁକ୍ତ କରାଯାଇ ନଥିଲା । ତେଣୁ ଯତି ଚୋଡ଼ଗଙ୍ଗ କିମ୍ବା ତାଙ୍କ ପୁତ୍ର କାମାର୍ଣ୍ଣବଙ୍କ ରାଜତ୍ୱ କାଳରେ ତଥାକଥିତ ନୃସିଂହମନ୍ଦିରରେ ପ୍ରତିଷ୍ଠିତ ଶିଳାମୂର୍ତ୍ତି, ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର ଏବଂ ସୁଭଦ୍ରାଙ୍କ 'ରଥୋତ୍ସବ' ପାଳିତ ହେଉଥିବ, ତେବେ ତାହା ତାଙ୍କ ଉତ୍ସବ-ବିଗ୍ରହଙ୍କୁ ରଥ ବା ବିମାନରେ ବସାଇ ସାହିରେ ବୁଲାଇ ନିଆ ଯାଉଥିବା ସମ୍ଭବ । କାରଣ ସେହି ରାଜାମାନଙ୍କ ରାଜତ୍ୱକାଳରେ 'ବଡ଼ଦେଉଳ'ର ପ୍ରତିଷ୍ଠା ହୋଇ ନଥିଲା । ତେଣୁ ଦେବବିଗ୍ରହମାନେ ସେଥିରେ ସ୍ଥାପିତ ହୋଇ ନଥିଲେ । ଖ୍ରୀ: ୧୨୩୦ରେ ମହାରାଜା ଅନଙ୍ଗଭୀମଦେବ (୩ୟ) ଶ୍ରୀପୁରୁଷୋତ୍ତମଙ୍କ ନବନିର୍ମିତ ମନ୍ଦିର ପ୍ରତିଷ୍ଠା କରି ସେଥିରେ ସେହି ପ୍ରସ୍ତର ବିଗ୍ରହମାନଙ୍କୁ ସ୍ଥାପନ କରିଥିବା ପ୍ରସଙ୍ଗ ତାଙ୍କ ତାମ୍ରଶାସନରୁ ପ୍ରମାଣିତ ହୋଇଛି । ପ୍ରଥମେ କୁହାଯାଇଛି ଯେ, କୌଣସି ପ୍ରତିଷ୍ଠିତ ଦେବବିଗ୍ରହଙ୍କୁ ତାଙ୍କ ଆସନରୁ ଉଠାଇ ଅନ୍ୟତ୍ର ନେବା ଧର୍ମ-ବିରୋଧୀ ଏବଂ ସେହି ବିଗ୍ରହଙ୍କୁ ପୁଣି ସ୍ଥାପନ କରି ପୂଜା କରିବା ମଧ୍ୟ ଅନୁଚିତ । ତେଣୁ ଯେଉଁ ତ୍ରିମୂର୍ତ୍ତିଙ୍କୁ ଅନଙ୍ଗଭୀମଦେବ ବଡ଼ଦେଉଳରେ ପ୍ରତିଷ୍ଠା କରିଥିଲେ, ତାଙ୍କୁ ସିଂହାସନରୁ ଉଠାଇ ରଥରେ ବିଜେ କରାଇବା ଅସଙ୍ଗତ । ସୁତରାଂ ସିଂହାଚଳରେ ଯେଉଁ ରଥଯାତ୍ରା ଅନୁଷ୍ଠିତ ହୁଏ, ସେଥିରେ ମୁଖ୍ୟ ବିଗ୍ରହ ପରିବର୍ତ୍ତେ ଉତ୍ସବ-ବିଗ୍ରହଙ୍କୁ ହିଁ ରଥରେ ସ୍ଥାପନ କରି ସାହିରେ ପରିକ୍ରମା କରି ବିବାହ ବେଦୀରେ ସେହି ଉତ୍ସବ ପ୍ରତିମା ନୃସିଂହ ଓ ଶ୍ରୀଦେବୀ ଏବଂ ଭୂଦେବୀଙ୍କ ବିବାହ ସମ୍ପାଦିତ ହୁଏ ।

ଓଡ଼ିଶାର ଶ୍ରୀଗୁଣ୍ଡିଚା ଯାତ୍ରାପାଇଁ ଯେଉଁ ମୂଳ ବିଗ୍ରହମାନଙ୍କୁ, ଅର୍ଥାତ୍ ଦାରୁନିର୍ମିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ତାଙ୍କ ରତ୍ନସିଂହାସନରୁ

ଉଠାଇ ନେଇ ଯଥାକ୍ରମେ ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷ ନାମକ ରଥରେ ସ୍ଥାପନ କରାଯାଏ, ସେ ପ୍ରଥା ଖ୍ରୀ: ୧୩ଶ ଶତାବ୍ଦୀ କିମ୍ବା ତତ୍‌ପରବର୍ତ୍ତୀ ସମୟର ଘଟଣା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଦଇତା ଓ ପତି-ମହାପାତ୍ର ସଂଜ୍ଞକ ଆଦିବାସୀ କୁଳଜମାନଙ୍କ ପ୍ରାଧାନ୍ୟ 'ଅନବସର'ଠାରୁ ଆରମ୍ଭ କରି ଆଷାଢ଼ମାସର ଏକାଦଶୀ ପର୍ଯ୍ୟନ୍ତ ଅର୍ଥାତ୍ 'ବାହୁଡ଼ାଯାତ୍ରା' ଶେଷ ହେବା ପର୍ଯ୍ୟନ୍ତ ବଳବତ୍ତର ରହିଥାଏ । ଏଠାରେ ସୂଚିତ କରାଯାଇପାରେ ଯେ, ଶୂଦ୍ର କିମ୍ବା ଅନ୍ତ୍ୟଜମାନଙ୍କ ସଂସ୍ପର୍ଶରେ ପୂଜିତ ହେବା କୌଣସି ବସ୍ତୁ-ପ୍ରତିମାଙ୍କ ପକ୍ଷରେ ସମ୍ଭବ ନୁହେଁ । କେବଳ ପରବର୍ତ୍ତୀ ଯୁଗର କୌଣସି ଶୁଦ୍ର ପଣ୍ଡିତ 'ନୃସିଂହପୁରାଣ'ରେ ନିମ୍ନୋକ୍ତ ଶ୍ଳୋକଟି ଯୋଗ କରିଥିବା ଅନୁମିତ ହୁଏ—

ବ୍ରାହ୍ମଣାଃ କ୍ଷତ୍ରିୟାଃ ବୈଶ୍ୟାଃ ସ୍ତ୍ରିୟଃ ଶୂଦ୍ରାନ୍ତ୍ୟଜାତୟଃ ।
ସଂପୂଜ୍ୟତେ ସୁରଶ୍ରେଷ୍ଠଂ ଭକ୍ତ୍ୟା ସିଂହବପୂର୍ଧରମ୍ ।।

ଏହି ଶ୍ଳୋକକୁ ଅନୁସରଣ କରି ବୋଧହୁଏ କେତେକ ପାଶ୍ଚାତ୍ୟ ପଣ୍ଡିତ ମତ ପ୍ରକାଶ କରନ୍ତି ଯେ, ପୁରୀର ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ବିକୃତ ନରସିଂହ ବିଗ୍ରହ ହୋଇଥିବା ସମ୍ଭବ । କିନ୍ତୁ ଶବରମାନଙ୍କ ସମ୍ପର୍କରେ ଯେଉଁ ପ୍ରସିଦ୍ଧ କିମ୍ବଦନ୍ତୀ ରହିଛି, ସେଥିରୁ ସ୍ପଷ୍ଟ ଜଣାଯାଇଛି ଯେ, ପୂର୍ବେ ଯେଉଁ ଶବର ବିଶ୍ୱାବସୁ ସେହି ଦେବତା (ନୀଳମାଧବ)ଙ୍କର ପୂଜା କରୁଥିଲେ, ତାଙ୍କର ବଂଶଧରଙ୍କୁ ଆଣି ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କ ସେବାରେ ନିଯୁକ୍ତ କରାଯାଇଥିଲା । ତେଣୁ ନବକଳେବର ପୂର୍ବରୁ ଦାରୁ ସଂଗ୍ରହ ପାଇଁ ସେମାନେ ଜଙ୍ଗଲକୁ ଯାଇ ନିର୍ଦ୍ଦିଷ୍ଟ ଦାରୁର ସନ୍ଧାନ କରିଥା'ନ୍ତି । "ଓଢ୍ରଦେଶ ରାଜବଂଶାବଳୀ" ନାମକ ଗୋଟିଏ ପ୍ରାଚୀନ ପାଣ୍ଡୁଲିପି ମାନ୍ଦ୍ରାଜର ଓରିଏଣ୍ଟାଲ ଅଭିଲେଖାଗାର (Madras Oriental Manuscript Library)ରେ ଗଚ୍ଛିତ ଅଛି । ତାହା ଖ୍ରୀ: ୧୮ଶ ଶତାବ୍ଦୀରେ କର୍ନଲ ମେକାଞ୍ଜି ସାହେବ ଓଡ଼ିଶାର ଏକ ପ୍ରାଚୀନ ସଂସ୍କୃତ ପୋଥିରୁ ତେଲୁଗୁ ଲିପିରେ ଉଦ୍ଧୃତ କରିନେଇଥିଲେ । ସେଥିରେ ଲେଖାଅଛି—

"ଅନନ୍ତରଂ କବିନରସିଂହ ଦେବୋ ରାଜା ବଭୁବ । ତଦାନିଂ ଶ୍ରୀନୀଳାଦ୍ରିନାୟକସ୍ୟ ଘୋଷଯାତ୍ରାୟାଂ ଶ୍ରୀଗୁଣ୍ଡିଚ୍ଚ ମହୋତ୍ସବେ ପ୍ରତିବର୍ଷଂ ରଥଷଟ୍‌କଂ କ୍ରିୟେତ । ବୃହତ୍‌ପଥମଧ୍ୟମେରୁଗେ ଏକା ନଦୀ

ସ୍ଥିତା । ବାଲୁକାଦଭିଃ ତଦ୍ୱୈୟପ୍ରପୂର୍ଣ୍ଣ ରଥଃଧ୍ୱେଣ ଯାତ୍ରାନଦୀଛିଃ କୃତଃ ।" (*)

ଅର୍ଥାତ୍ କବି ନରସିଂହ ବଉଦାଣ୍ଡ ମଧ୍ୟରେ ପ୍ରବାହିତ ଗୋଟିଏ ନଦୀ ପୋତାଇ ଛ'ଟି ରଥ ଯଣ୍ଣବର୍ତ୍ତେ ଛନୋଟି ରଥରେ ଶ୍ରୀଗୁଣ୍ଡିଚାଯାତ୍ରା କରିଥିଲେ । ସେ ମଧ୍ୟ ବଉଦାଣ୍ଡକୁ ପ୍ରସାରିତ କରିଥିବା ସମ୍ଭବ ।

ପ୍ରାଚୀନ ଅଭିଲେଖରୁ କବି ନରସିଂହଦେବ (୨ୟ)ଙ୍କ ରାଜତ୍ୱ କାଳ ସଠିକ ଭାବେ ନିରୂପିତ ହୋଇ ନାହିଁ । କିନ୍ତୁ କେନ୍ଦୂଲିରୁ ପ୍ରାପ୍ତ ଚତୁର୍ଥ ନରସିଂହ ଦେବଙ୍କ ତାମ୍ର ଶାସନରେ ଯେଉଁ ଗଙ୍ଗ ରାଜାମାନଙ୍କର ପ୍ରଶସ୍ତି ଖୋଦିତ ହୋଇଅଛି, ସେଥିରୁ କବି ନରସିଂହଙ୍କ ନାମ ଓ ତାଙ୍କର ସଠିକ୍ ରାଜତ୍ୱକାଳ ନିର୍ଣ୍ଣିତ ହୋଇ ପାରୁଛି ଖ୍ରୀ: ୧୨୭୮–୧୩୦୬ । ତାଙ୍କ ପାଣ୍ଡିତ୍ୟ ଓ ଗୁଣାବଳୀ ନିମ୍ନୋକ୍ତ ପ୍ରଶସ୍ତି ଶ୍ଳୋକରୁ ଜଣାଯାଏ :—

ଆକର୍ଣ୍ଣ୍ୟ ବିଶ୍ୱବିବୁଧାବଳି କର୍ଣ୍ଣକୂପ
ସଂପୂରଣାମୃତବଶାପିଂତମନ୍ୟମେବ ।
ବାଚାଂ କଳାସମସକୃଦ୍ବିବଲ୍ଲଭସ୍ୟ
ବାଚାଂ ଯଶୋଭବଦ ବାକ୍‌ପତିରେବ ଯସ୍ୟ ।।

× × ×

ଚତୁସ୍ତ୍ରିଂଶଦ୍ ବର୍ଷାଣ୍ୟବନି ବଲୟଂ ନିର୍ଗତ ରିପୁଂ
ନିରାତଙ୍କୋଭୁକ୍ତ୍ୱା ହରିଚରଣସେବା ସୁରସିକଃ ।
ପ୍ରୃଥ୍ୱୀଶାସାର୍ଦ୍ଧଂସନ ବହୁତ ସମ୍ମାନ ଲୁଋକଂ
ସମସ୍ତେ ଯଃ ସଖ୍ୟଂ କବି କୁମୁଦଚନ୍ଦ୍ରୋନରପତି ।। (+)

'ଓଡ୍ରଦେଶ ରାଜବଂଶାବଳୀ'ରେ ତାଙ୍କ ରାଜତ୍ୱକାଳ 'ସପ୍ତବିଂଶତି' ବର୍ଷ । କିନ୍ତୁ ତାମ୍ରଶାସନରେ ତାହା 'ଚତୁସ୍ତ୍ରିଂଶତ୍' ବୋଲି ଲେଖାଅଛି । ଏଣୁ ତାମ୍ରଶାସନୋକ୍ତ ସମୟ ହିଁ ଠିକ୍ ବୋଲି ବୁଝାଯିବ ।

କବି ନରସିଂହଙ୍କ ରାଜତ୍ୱ କାଳରେ ରାଜ୍ୟରେ ଶାନ୍ତି ପ୍ରତିଷ୍ଠିତ ହୋଇ-ଥିବାରୁ ସେ କେବଳ କାବ୍ୟ ଲେଖିବାରେ ସମୟ ଅତିବାହିତ କରୁନଥିଲେ;

(*) Odradesa Rajavansavali, P. 17 Ed, by Dr. K. C. Mishra.

(+) O. H. R. J., Vol. V, No. 1, P. 34 f.

ବିରଂ ହରି (ଶ୍ରୀପୁରୁଷୋତ୍ତମ)ଙ୍କ ଶ୍ରୀଚରଣ ସେବାରେ ମନୋନିବେଶ କରିଥିଲେ । ତାଙ୍କର ୩୪ ବର୍ଷ ରାଜତ୍ୱ କାଳରେ ଶ୍ରୀଜଗନ୍ନାଥଙ୍କ 'ରଥୋତ୍ସବ' ମହା-ଆଡ଼ମ୍ବରରେ ଅନୁଷ୍ଠିତ ହେଉଥିଲା, କାରଣ ତାଙ୍କ ପୂର୍ବରୁ ଯେଉଁ ଗୁଣ୍ଡିଚା-ମଣ୍ଡପ କାଷ୍ଠରେ ନିର୍ମିତ ହୋଇଥିଲା, ତାହା ସମ୍ଭବତଃ ମଠମଠ କରି ବଡ଼ଦାଣ୍ଡ ମଝିରେ ପ୍ରବାହିତ ଗୋଟିଏ ନଦୀ (ମାଳିନୀ ବା ସାରଦା)କୁ ବାଲିରେ ପୋତାଇ ସେଥିର ଗତିପଥ ଅନ୍ୟ ଦିଗକୁ ନେଇ ଶ୍ରୀମନ୍ଦିରଠାରୁ ଗୁଣ୍ଡିଚା ମଣ୍ଡପଯାଏ ପ୍ରସାରିତ କରି ବଡଦାଣ୍ଡରେ ତିନି ରଥରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ସୁଭଦ୍ରାଙ୍କ ଘୋଷଯାତ୍ରା ସମ୍ପନ୍ନ କରାଇଲେ ।

ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି ଯେ, ଖ୍ରୀ: ୧୬ଶ ଶତାବ୍ଦୀରେ ଚାଳୁକ୍ୟ-ବଂଶୀୟ ମହାରାଜା ମୁକୁନ୍ଦଦେବ ଗୁଣ୍ଡିଚାମନ୍ଦିର ସମ୍ମୁଖସ୍ଥ ଜଗମୋହନ ନିର୍ମାଣ କରିବା ସକାଶେ ଉଦ୍ୟମ କରି ଚାରିଗୋଟି ପଥର ସ୍ତମ୍ଭ ନିର୍ମାଣ କରାଇଥିଲେ, କିନ୍ତୁ ବଙ୍ଗଦେଶରେ ଘୋର ଯୁଦ୍ଧ ଏବଂ ଓଡ଼ିଶାରେ ଅନ୍ତର୍ବିବାଦ ହେତୁ ତାଙ୍କର ସେହି ଇଚ୍ଛା ଅପୂର୍ଣ୍ଣ ରହିଥିଲା । କିନ୍ତୁ ଖୋଇବଂଶୀୟ ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ତାଙ୍କର ବକ୍‌ସି ବେଣୁ ଭ୍ରମରବର ରାୟ ସେଠାରେ ଥିବା ୪ଟି ପଥରଖମ୍ବ ଉପଯୋଗ କରି ଗୁଣ୍ଡିଚା ମନ୍ଦିରର ଜଗମୋହନ ନିର୍ମାଣ କରିଥିଲେ । (++)

ଆମ୍ଭେ ପ୍ରଥମେ ଉଲ୍ଲେଖ କରିଛୁ ଯେ, ସିଂହାଚଳ ମନ୍ଦିର ତଥା ଦକ୍ଷିଣ ଭାରତର କେତେକ ବିଷ୍ଣୁ ମନ୍ଦିରରେ 'କଲ୍ୟାଣୋତ୍ସବ' ବା 'ରଥୋତ୍ସବ' ଯେଉଁ ଉଦ୍ଦେଶ୍ୟରେ ପାଳିତ ହେଉଥିଲା, ସେହି ଉଦ୍ଦେଶ୍ୟ ବା ନୀତି ପୁରୀର ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ମଧ୍ୟ ଏକ ବିଶିଷ୍ଟ ଅଂଶରୂପେ ପାଳିତ ହେଉଅଛି ।

ବାହୁଡ଼ାଯାତ୍ରା ପରେ ପ୍ରଥମେ ଶ୍ରୀବଳଭଦ୍ର ଓ ପରେ ସୁଭଦ୍ରାଙ୍କୁ ମନ୍ଦିରରେ ରତ୍ନବେଦିରେ ବିଜେକଲା ପରେ ଶେଷରେ ଦଇତାଙ୍କ ସାଙ୍ଗରେ ଧରି ଯେତେବେଳେ ଶ୍ରୀଜଗନ୍ନାଥଙ୍କର ପହଣ୍ଡି ହୁଏ, ସେତିକବେଳେ ସିଂହଦ୍ୱାର ଭିତରୁ ବନ୍ଦ ହୋଇଯାଏ । ଭିତର ପାଖେ ମହାଲକ୍ଷ୍ମୀଙ୍କ ଦାସୀ ଦ୍ୱାର ଫିଟାଇବାକୁ ମନାକରି କହନ୍ତି "ଲକ୍ଷ୍ମୀ ଠାକୁରାଣୀଙ୍କ ଆଜ୍ଞାରେ ଦ୍ୱାର ବନ୍ଦ କରାଯାଇଛି । ଠାକୁରାଣୀଙ୍କ ଆଜ୍ଞା ନହେଲେ ସିଂହଦ୍ୱାର ଫିଟିବ ନାହିଁ ।" ଶ୍ରୀଜଗନ୍ନାଥଙ୍କ ପକ୍ଷରୁ

(++) 'ମାଦଳାପାଞ୍ଜି' (ପ୍ରାଚୀ ସଂସ୍କରଣ) ପୃ-୭୪; କେଦାରନାଥ ମହାପାତ୍ରଙ୍କ ଖୋର୍ଦ୍ଧା ଇତିହାସ (୧୯୬୯), ପୃ-୯୧ ।

ବାହାରେ ଥାଇ ଦସ୍ୟିତାମାନେ ବହୁ ପ୍ରକାରେ ମିନତି କରନ୍ତି । ଉଭୟ ପକ୍ଷରୁ ଯେଉଁ ବାକ୍ୟ ବିନିମୟ ହୁଏ, ତାହାକୁ 'ବଚନିକା' କୁହାଯାଏ ।

ବହୁ କାକୁତି ମିନତି ପରେ ଲକ୍ଷ୍ମୀଠାକୁରାଣୀଙ୍କ ଦୟା ହେବାରୁ ସିଂହଦ୍ୱାର ଉନ୍ମୋଚିତ ହୁଏ । ଏପରି ଏକ ନାଟକୀୟ ବ୍ୟବସ୍ଥା ଓଡ଼ିଶାରେ କମ୍ବା ଦକ୍ଷିଣ-ଭାରତରେ କୁତ୍ରାପି ବିବାହ ଉତ୍ସବରେ ହୋଇ ନଥାଏ । ତେବେ ଆଦିବାସୀ ଶବରମାନଙ୍କ ବିବାହର ପ୍ରସ୍ତାବ ବେଳେ ବର ପକ୍ଷର ଲୋକଙ୍କୁ ଥରେ ବା ଦୁଇଥର ବିବାହ ପୂର୍ବରୁ ତଡ଼ିଦେଇ ଦ୍ୱାର ବନ୍ଦ କରି ଦେଇଥା'ନ୍ତି । ହୁଏତ 'ଦସ୍ୟିତା' ସଂଜ୍ଞକ ଆଦିବାସୀଙ୍କ ବ୍ୟବସ୍ଥାକୁ ଭିତ୍ତିକରି ଏହା କରାଯାଇଥିବ ।

ମନ୍ଦିର ଭିତରକୁ ଶ୍ରୀଜଗନ୍ନାଥଙ୍କ ପହଣ୍ଡି ହେଲା ପରେ ତାଙ୍କୁ ରତ୍ନସିଂହାସନଠାକୁ ନେବା ପରିବର୍ତ୍ତେ ଯେଉଁଠାରେ ଗରୁଡ଼ ଅବସ୍ଥିତ, ସେଠାରେ ଉତ୍ତରକୁ ଶ୍ରୀମୁଖ କରି ଶ୍ରୀଜଗନ୍ନାଥଙ୍କୁ ବିଜେ କରାଯାଏ । ତା'ପରେ ଲକ୍ଷ୍ମୀଠାକୁରାଣୀ (ଉତ୍ସବ ପ୍ରତିମା)ଙ୍କୁ ଭଣ୍ଡାର ଘରୁ ଆଣି ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ବିଜେ କରାଯାଏ । ପରସ୍ପର ଠାକୁର ଓ ଠାକୁରାଣୀ ଶ୍ରୀମୁଖ ଦେଖନ୍ତି । ଉଭୟଙ୍କ ଉପରାଣିବସ୍ତ୍ରରେ ଗଣ୍ଠି ପଡ଼େ, ଅର୍ଥାତ୍ 'ଗଣ୍ଠିଠାଲ' ପଡ଼େ । ଏହି ବିବାହର ପ୍ରଥମ ଅବସରେ 'ମଙ୍ଗଳାଚରଣ' ('ସାତମଙ୍ଗଳା') କୁହାଯାଏ । ଏହି ବିଧି ସମାପନ ପରେ ବରକନ୍ୟାଙ୍କୁ ପଞ୍ଚ-ତାମ୍ବୁଳ (ପାନଗୁଆ) ଅର୍ପଣ କରି ବସ୍ତ୍ରର ଗଣ୍ଠି ('ଗଣ୍ଠିଠାଲ') ଫିଟାଯାଏ ।

ଏ ପଦ୍ଧତି ଖ୍ରୀ: ୧୬ଶ ଶତାବ୍ଦୀରେ ପାଳିତ ହେଉଥିବା ପ୍ରସଙ୍ଗ 'ନୀଳାଦ୍ରି-ମହୋଦୟ'ରେ ଉଲ୍ଲେଖ ଥିବା ନିମ୍ନୋକ୍ତ ଶ୍ଳୋକମାନଙ୍କରୁ ପ୍ରକଟିତ ହୁଏ—

"ଉତ୍ତରାଭି-ମୁଖଂ କୃତ୍ୱା ରମାଂ ଦକ୍ଷିଣଦିଙ୍ମୁଖମ୍ ।
ରଚୟିତ୍ୱା ଚ ଯୋ ରାଜନ୍ ପରସ୍ପର ନିରୀକ୍ଷଣମ୍ ।।
ମିଥଃ ଶମ୍ବର-ବସନ-ଗ୍ରନ୍ଥି ଯୋଜନ ମାଚରେତ୍ ।
ବିବାହ ସମ୍ପ୍ରଦବସେ ମଙ୍ଗଳାଚରଣଂ ହୁଦା ।।
ସମ୍ପିନ୍ତ୍ୟ ଯୁଗପଦ୍ ଭକ୍ତ୍ୟା ତୟୋର୍ବନ୍ଦାପନାଂ ଚରେତ୍ ।
ତତୋ ବନ୍ଦାପନାନ୍ତେ ଚ ସୁବାସିତଜଳଂ ପୁନଃ ।।

ପକ୍ୱତାମ୍ରୂକନକସ୍ଥଂ ତାଭ୍ୟାଂ ଦଦ୍ୟାଚ ଭକ୍ତିତଃ ।
ତଦ୍‌ବସ୍ତ୍ରଗ୍ରନ୍ଥିଶ୍ଲଥନଂ କୁର୍ଯ୍ୟାଗ୍ରାବନ୍ଧୁପୋତ୍ତମ ।।” (*)

ଉପରୋକ୍ତ ବିବାହ ବିଧି ବର୍ତ୍ତମାନ ପରିବର୍ତ୍ତିତ ହୋଇଯାଇଛି । ଏବେ ଯେଉଁ ବିଧିରେ ଏହା ପାଳିତ ହୁଏ, ସେଥିର ବିବରଣୀ ନିମ୍ନ ପ୍ରକାରେ ଶ୍ରୀଲକ୍ଷ୍ମଣ ମହାପାତ୍ର ଦେଇଥିବା 'Record of Rights'ରେ ଉଲ୍ଲେଖ କରିଛନ୍ତି—“ଏହି ନୀତି ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ହୁଏ ।”

“ଶ୍ରୀଜଗନ୍ନାଥ ରଥରୁ ସ୍ନାନ ଉପରକୁ ଓହ୍ଲାଇଲେ ଲକ୍ଷ୍ମୀ ଠାକୁରାଣୀ ମହାଜନ ହାତରେ ବିଜେ ହୋଇ ଦେବଦାସୀ ସହ ଭେଟ ମଣ୍ଡପଠାରେ (ପ୍ଲ. ନ. ୧୮୨) ଖଟ ଶେଜ ମେଲାପ ପକାଇଥିବା ତମ୍ବୁରୁ ଉପରେ ବିଜେ କରିଥା'ନ୍ତି । ରଥରେ ଠାକୁରଙ୍କ ବନ୍ଦାପନା ହେଲେ ଭିତରରୁ ମହାପାତ୍ରେ ଏହାଙ୍କର ବନ୍ଦାପନା କରନ୍ତି । ଲକ୍ଷ୍ମୀ ଭଣ୍ଡାରଘରକୁ ବିଜେ କରନ୍ତି । ଏହାପରେ ଦେବଦାସୀ ଯାଇ ଶ୍ରୀଜଗନ୍ନାଥଙ୍କ ସିଂହଦ୍ୱାରକୁ ଆସିବା ପୂର୍ବରୁ ଦରଜା ବନ୍ଦ କରିଥା'ନ୍ତି । ମହାପ୍ରଭୁ ସିଂହଦ୍ୱାରକୁ ଆସିଲେ ତାହା ଫିଟାଇ ଦିଅନ୍ତି । ତା'ପରେ ଠାକୁର ଭିତରକୁ ବିଜେ କରନ୍ତି ଓ ଜୟ ବିଜୟଦ୍ୱାରଠାରେ ଦ୍ୱାର ବନ୍ଦ ଥାଏ । ଦଇତାମାନଙ୍କ ମଧ୍ୟରେ ଓ ଦେବଦାସୀମାନଙ୍କ ମଧ୍ୟରେ ବଚନିକା ଆରମ୍ଭ ହୁଏ ଓ ଦେବଦାସୀମାନେ ଦଇତାଙ୍କୁ ଲଣ୍ଡଭଣ୍ଡ କରନ୍ତି । ତା'ପରେ ଦ୍ୱାର ଫିଟି ଠାକୁର ଭଣ୍ଡାରକୁ ମୁହଁ କରି ଭଣ୍ଡାର ଦ୍ୱାରଠାରେ ବିଜେ କରିଥିବା ଲକ୍ଷ୍ମୀଙ୍କ ପାଖରେ ବିଜେ ହେଲେ ରୁକ୍ମଣୀ ବିବାହର ଗଣ୍ଠିଠାଳ ଭିତରରୁ ମହାପାତ୍ର ଫିଟାନ୍ତି । ବନ୍ଦାପନା ଓ ଭୋଗ ହୁଏ । ଘସାବଡ଼ୁଆ ମଣୋହି ପରେ ଠାକୁର ସିଂହାସନକୁ ବିଜେ କରନ୍ତି ।”

କାଳକ୍ରମେ ଶ୍ରୀଜଗନ୍ନାଥଙ୍କ ନୀତିନିୟମ କିପରି ବଦଳିଯାଇଛି, ଏହା ସେଥିର ଏକ ଜ୍ୱଳନ୍ତ ଉଦାହରଣ । ସେ ଯାହାହେଉ, 'ରଥଯାତ୍ରା' ଶେଷରେ ଲକ୍ଷ୍ମୀଙ୍କ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ବିବାହ ଯେ ସେହି ଯାତ୍ରା ଉତ୍ସବର ମୁଖ୍ୟ ଉଦ୍ଦେଶ୍ୟ, ଏହା ସ୍ପଷ୍ଟ ଉପଲବ୍ଧ ହୁଏ । ତେଣୁ 'ରଥଯାତ୍ରା' ଦକ୍ଷିଣ ଭାରତରେ ଅନୁଷ୍ଠିତ 'କଲ୍ୟାଣୋତ୍ସବ'ର ପ୍ରତୀକ—ଏଥିରେ ଆଦୌ ସନ୍ଦେହ ନାହିଁ ।

କଳିଙ୍ଗର ସିଂହାଚଳ ମନ୍ଦିରରେ ଠାକୁରଙ୍କ 'କଲ୍ୟାଣୋତ୍ସବ' ଚୈତ୍ର ମାସରେ ଅନୁଷ୍ଠିତ ହୁଏ । କିନ୍ତୁ ଓଡ଼ିଶାରେ ସେହି ଉତ୍ସବଟି ଆଷାଢ଼ ମାସରେ

---

(*) 'ନୀଳାଦ୍ରିମହୋଦୟ' (୧୯୮୪) ୧୬-୧୬୭-୧୭୦ ଶ୍ଳୋକ ।

କେବେ ଓ କେଉଁ କାରଣରୁ ଆରମ୍ଭ ହୋଇଥିଲା, ତାହା ଜଣାଯାଇ ନାହିଁ । ଏ ସମ୍ପର୍କରେ ଏକ କୌତୂହଳ ବିଷୟ ପ୍ରତି ପାଠକଙ୍କ ଧ୍ୟାନ ଆକର୍ଷଣ କରାଯାଇପାରେ । ଶ୍ରୀଗୁଣ୍ଡିଚା ଯାତ୍ରାର ଠିକ୍ ପୂର୍ବରୁ ଅର୍ଥାତ୍ ଆଷାଢ଼ ଅମାବାସ୍ୟା ଦିନ ଠାକୁରଙ୍କ ନବଯୌବନ ଓ ନେତ୍ରୋତ୍ସବ ସମ୍ପନ୍ନ ହୁଏ । କିନ୍ତୁ ହେଲେ 'ନେତ୍ରୋତ୍ସବ' ପୂର୍ବେ ଭାଦ୍ରପଦ ମାସରେ ଅନୁଷ୍ଠିତ ହେଉଥିବା ପ୍ରସଙ୍ଗ ଗୋଟିଏ ଶିଳାଲେଖରେ ଉଲ୍ଲେଖ ହୋଇଅଛି । ସେହି ଅଭିଲେଖଟି ଶ୍ରୀମନ୍ଦିରସ୍ଥ ପାତାଳେଶ୍ୱର ମନ୍ଦିର ଭିତରେ ଭିତ୍ତିଗାତ୍ରରେ ଖୋଦିତ ହୋଇଅଛି । ତାହା ଦାକ୍ଷିଣାତ୍ୟ ଲିପି ଓ ତେଲୁଗୁ ଭାଷାରେ ଖୋଦିତ ହୋଇଥିବାରୁ ବୋଧହୁଏ କେହି ପ୍ରତ୍ନତତ୍ତ୍ୱବିତ୍ ତାହା ପାଠ କରିନଥିଲେ । ଏ ଲେଖକ ସେଥିର ପାଠୋଦ୍ଧାର କରି ନିମ୍ନୋକ୍ତ ପ୍ରକାରେ ସେଥିରେ ଲେଖା ଅଛି 'ଶକବର୍ଷଂବୁଲୁ ୧୧୮ (୮)ସ୍ୱଗୁନେଂଟି ଭାଦ୍ରବ (ପ)ଦ ବୃହସ୍ପତି ବାରମୁନା ଶ୍ରୀପୁରୁଷୋତ୍ତମଦେବର (ଚ)ନ୍ଦ ଲେଚନ ସୂତ୍ସବମୁଲୁ କୋଲ୍ବା...'' (ଇତ୍ୟାଦି)

ଅର୍ଥାତ୍ ୧୧୮ (୮) ଶକାବ୍ଦରେ, [ଖ୍ରୀ. ୧୨୬ (୭)]ରେ ଭାଦ୍ରପଦମାସ ଗୁରୁବାର ଦିନ ଶ୍ରୀପୁରୁଷୋତ୍ତମ (ଜଗନ୍ନାଥ)ଙ୍କ ଶ୍ରୀମୁଖଚନ୍ଦ୍ର ହୋଇ 'ଲେଚନ ଉତ୍ସବ' ଅନୁଷ୍ଠିତ ହୋଇଥିଲା । ଏହି ଅଭିଲେଖରେ ମତ୍ସ୍ୟବଂଶୀୟ ଜଣେ ରାଜାଙ୍କର ଦାନ ବିଷୟ ବିବୃତ ହୋଇଅଛି ।

ଖ୍ରୀ. ୧୨୬୭ରେ ଓଡ଼ିଶାରେ ମହାରାଜା ନରସିଂହଦେବ (୧ମ) ବା ତାଙ୍କ ପୁତ୍ର ଭାନୁଦେବ (୧ମ) ରାଜତ୍ୱ କରୁଥିଲେ । ତେଣୁ ସେ ସମୟରେ ଶ୍ରୀମନ୍ଦିରରୁ ହସ୍ତପଦଯୁକ୍ତ ପ୍ରସ୍ତରପ୍ରତିମାଙ୍କ ପରିବର୍ତ୍ତେ ଦାରୁବିଗ୍ରହମାନଙ୍କ ପ୍ରତିଷ୍ଠା କରାଯାଇ ତାଙ୍କ ଶ୍ରୀମୁଖ ଚନ୍ଦ୍ର ସଙ୍ଗେ 'ଲେଚନୋତ୍ସବ' ପ୍ରବର୍ତ୍ତିତ ହେଲା । ଉପରୋକ୍ତ ଶିଳାଲେଖରେ ଲେଖାଅଛି ଯେ, ସେହି ଉତ୍ସବଟି ଆଷାଢ଼ ପରିବର୍ତ୍ତେ ଭାଦ୍ରପଦ ମାସରେ ଅନୁଷ୍ଠିତ ହୋଇଥିଲା । ତେଣୁ ଶ୍ରୀଜଗନ୍ନାଥଙ୍କ ରଥୋତ୍ସବର ଆଭିମୁଖ୍ୟ ଓ କାଳ ବିଭିନ୍ନ ସମୟରେ ପରିବର୍ତ୍ତନର ଆବର୍ତ୍ତ ମଧ୍ୟରେ ଗତି ଆସିଛି ।



# ଦାରୁବ୍ରହ୍ମ ଓ ନବକଳେବର

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଦାରୁ ବିଗ୍ରହମାନ ନୂତନରେ ଗଠିତ ହେବା ବିଧିକୁ 'ନବକଳେବର' ଆଖ୍ୟା ଦିଆଯାଇଛି । ଏପରି ଏକ ବିଚିତ୍ର ବିଧି ଅନ୍ୟ କେଉଁ ବିଷ୍ଣୁ ମନ୍ଦିରରେ ପ୍ରଚଳିତ ହୁଏ ନାହିଁ, କୌଣସି ପ୍ରାଚୀନ ଗ୍ରନ୍ଥରେ ମଧ୍ୟ ଏ ପ୍ରଥା ଉଲ୍ଲେଖ ଥିବା ଦେଖିବାକୁ ମିଳେ ନାହିଁ । ତେଣୁ ଏ ବିଧି କେବେ କେଉଁ ପରିସ୍ଥିତିରେ କେବଳ ଶ୍ରୀକ୍ଷେତ୍ରରେ ହିଁ ପ୍ରବର୍ତ୍ତିତ ହେଲା, ତାହା ଜାଣିବାକୁ ଭକ୍ତମାନେ ଆଗ୍ରହ ପ୍ରକାଶ କରୁଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ସେଥିର ଐତିହାସିକ ତଥ୍ୟ ଅାବିଷ୍କୃତ ହୋଇ ନାହିଁ । କେତେକ ଅର୍ବାଚୀନ ପୁସ୍ତକରେ ଏ ସମ୍ବନ୍ଧରେ ଯେତେ ସବୁ କିମ୍ବଦନ୍ତୀକ ଆଖ୍ୟାନମାନ ଲେଖା ହୋଇଛି, ତାହା ସତ୍ୟମୂଳକ ନୁହେଁ । କେବଳ ଆଗ୍ରହୀ ଭକ୍ତମାନଙ୍କୁ କିଛି କହିବାପାଇଁ ଉଦ୍ଦିଷ୍ଟ ବୋଲି ଜଣାଯାଏ ।

ଶ୍ରୀଜଗନ୍ନାଥଙ୍କ ଦାରୁବିଗ୍ରହ କେବେ ଗଠିତ ହେଲେ, ତାହା ଆଲୋଚନା କରିବା ପ୍ରଥମେ ଆବଶ୍ୟକ । କାରଣ ଦାରୁବିଗ୍ରହ ଗଠନ ପୂର୍ବରୁ ଯେଉଁ ଚତୁର୍ଭୁଜ ବିଶିଷ୍ଟ ଶ୍ରୀପୁରୁଷୋତ୍ତମ ଏବଂ ଶ୍ରୀସଙ୍କର୍ଷଣ ତଥା ଦେବୀ ସୁଭଦ୍ରା (ଏକାନଂଶା)ଙ୍କ ପ୍ରସ୍ତର ବିଗ୍ରହମାନ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ହୋଇ ପୂଜିତ ହେଉଥିଲେ, ତାଙ୍କ ସ୍ଥାନରେ ହସ୍ତପଦ ଶୂନ୍ୟ ଦାରୁବିଗ୍ରହଙ୍କୁ 'ଶ୍ରୀଜଗନ୍ନାଥ' ନାମରେ ସ୍ଥାପନ କରି କେବେ ଓ କେଉଁ ପରିସ୍ଥିତିରେ ପୂଜିତ ହେଲେ, ତାହାହିଁ ଆମର ମୁଖ୍ୟ ବିଚାର୍ଯ୍ୟ ବିଷୟ ।

ହିନ୍ଦୁମାନଙ୍କର 'ପୁରୁଷୋତ୍ତମ' (ବିଷ୍ଣୁ ବା ମାଧବ ବିଗ୍ରହଙ୍କ ଗଠନ) ଯେ ନିଶ୍ଚିତ ଭାବେ ଶାସ୍ତ୍ରସମ୍ମତ ରୂପରେ ପ୍ରଥମେ ଶ୍ରୀମନ୍ଦିରରେ ପ୍ରତିଷ୍ଠା ଲାଭ କରିଥିବେ, ଏଥିରେ ଆଦୌ ସନ୍ଦେହ ନାହିଁ । ଭାରତର ବିଜ୍ଞ ପଣ୍ଡିତଙ୍କ ପରାମର୍ଶ କ୍ରମେ ଶାସ୍ତ୍ରୋକ୍ତ ବିଧିରେ, ବିଷ୍ଣୁଙ୍କ ମୂର୍ତ୍ତି-ତତ୍ତ୍ୱ ଅନୁସାରେ, ମହାରାଜା ଚୋଡ଼ଗଙ୍ଗଙ୍କ ପରି ଜଣେ ଶାସ୍ତ୍ରଜ୍ଞ ପଣ୍ଡିତ ଯେ ସେହି ହସ୍ତପଦଯୁକ୍ତ ପ୍ରସ୍ତର ବିଗ୍ରହମାନ ନିଖୁଣ ଭାବେ ଗଠନ କରାଇଥିବେ, ଏଥିରେ ଆଦୌ ସନ୍ଦେହ ନାହିଁ । ଏଠାରେ ପ୍ରଶ୍ନ ହୋଇପାରେ, କେଉଁ କେଉଁ ପ୍ରାଚୀନ ଗ୍ରନ୍ଥକୁ ଆଧାର କରି ଶ୍ରୀପୁରୁଷୋତ୍ତମ ଓ ଶ୍ରୀସଙ୍କର୍ଷଣ (ବଳରାମ)ଙ୍କ ମୂର୍ତ୍ତି ଗଠିତ ହୋଇଥିଲା ?

ସର୍ବ ପ୍ରଥମେ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀରେ ବରାହମିହିର ତାଙ୍କ 'ବୃହତ୍ସଂହିତା' (+) ଗ୍ରନ୍ଥରେ ବିଷ୍ଣୁଙ୍କ ୨୪ଟି ନାମରେ ଚିହ୍ନିତ ତାଙ୍କର ପ୍ରତ୍ୟେକ ଚତୁର୍ଭୁଜ ବିଶିଷ୍ଟ ମୂର୍ତ୍ତିଙ୍କ ଭୁଜମାନଙ୍କରେ ସେ ଧାରଣ କରିଥିବା ଶଙ୍ଖ, ଚକ୍ର, ଗଦା ଓ ପଦ୍ମ କେଉଁ କେଉଁ ଭୁଜରେ ପ୍ରଦର୍ଶିତ କରାଯିବା ବିଧି, ସେଥିର ବିବରଣୀ ଉଲ୍ଲେଖ କରିଥିଲେ । ଏହାପରେ ସେହି ମୂର୍ତ୍ତି-ତତ୍ତ୍ୱ ଅବଲମ୍ବନରେ ମତ୍ସ୍ୟପୁରାଣ, (*) ଅଗ୍ନିପୁରାଣ (**), ପଦ୍ମପୁରାଣ-ପାତାଳଖଣ୍ଡ (***) ପ୍ରଭୃତି ଗ୍ରନ୍ଥମାନଙ୍କରେ ପର୍ଯ୍ୟାୟ କ୍ରମେ ୨୪ପ୍ରକାର ବିଷ୍ଣୁ ପ୍ରତିମାଙ୍କ ବର୍ଣ୍ଣନା ବିଦ୍ୟମାନ । ସେହି ୨୪ପ୍ରକାର ପ୍ରତିମାଙ୍କ ନାମ ହେଲା—୧-କେଶବ, ୨-ନାରାୟଣ, ୩-ମାଧବ, ୪-ଗୋବିନ୍ଦ ୫-ବିଷ୍ଣୁ, ୬-ମଧୁସୂଦନ, ୭-ତ୍ରିବିକ୍ରମ, ୮-ବାମନ, ୯-ଶ୍ରୀଧର, ୧୦-ହୃଷୀକେଶ, ୧୧-ପଦ୍ମନାଭ, ୧୨-ଦାମୋଦର, ୧୩-ଶଙ୍କର୍ଷଣ, ୧୪-ବାସୁଦେବ, ୧୫-ପ୍ରଦ୍ୟୁମ୍ନ ୧୬-ଅନିରୁଦ୍ଧ, ୧୭-ପୁରୁଷୋତ୍ତମ, ୧୮-ଅଧୋକ୍ଷଜ, ୧୯-ନରସିଂହ, ୨୦-ଅଚ୍ୟୁତ ୨୧-ଜନାର୍ଦ୍ଦନ, ୨୨-ଉପେନ୍ଦ୍ର, ୨୩-ହରି ଏବଂ ୨୪-ଶ୍ରୀକୃଷ୍ଣ ।

ଉପରୋକ୍ତ ୨୪ ନାମ ମଧ୍ୟରୁ ୧୩ ନମ୍ବର ମୂର୍ତ୍ତି ହେଉଛନ୍ତି ଶଙ୍କର୍ଷଣ (ବଳରାମ) ଏବଂ ୧୭ ନମ୍ବର ମୂର୍ତ୍ତି ପୁରୁଷୋତ୍ତମ । କିନ୍ତୁ ଏଥିରେ ଜଗନ୍ନାଥଙ୍କ ନାମ ଉଲ୍ଲେଖ ହୋଇ ନଥିବାରୁ 'ପଦ୍ମପୁରାଣ' ଲେଖା ହେବା ବେଳକୁ ମଧ୍ୟ ବିଷ୍ଣୁ ପ୍ରତିମା ମଧ୍ୟରେ ତାଙ୍କୁ ଗଣାଯାଉ ନଥିଲା ।

୧୩ ନମ୍ବର ହେଉଛି, 'ଶଙ୍କର୍ଷଣ' (ବଳରାମ) ତାଙ୍କ ଚତୁର୍ଭୁଜ ମଧ୍ୟରୁ ଉପର ଦୁଇ ଭୁଜରେ ସେ ଶଙ୍ଖ ଓ ପଦ୍ମ ଧରିଥାନ୍ତି ଏବଂ ତଳ ଦୁଇ ଭୁଜରେ ତାଙ୍କର ଚକ୍ର ଓ ଗଦା ଥାଏ । କିନ୍ତୁ ପରବର୍ତ୍ତୀ କାଳରେ ଲେଖା ହୋଇଥିବା 'ବିରାହସଂହିତା'ରେ ତାଙ୍କର ରୂପ ବଦଳିଥିବା ପରିଲକ୍ଷିତ ହୁଏ । ଯଥା—

"ବଳଦେବୋ ହଳପାଣି ର୍ମଦବିଭ୍ରମ ଲୋଚନସ୍ୟ କର୍ତ୍ତବ୍ୟଃ ।
ବିଭ୍ରତ୍ କୁଣ୍ଡଳମେକଂ ଶଙ୍ଖେନ୍ଦୁ ମୃଣାଳ ଗୌରତନୁଃ ।।"

'ବିଷ୍ଣୁ ଧର୍ମୋତ୍ତର ପୁରାଣ'ରେ ମଧ୍ୟ ଲେଖାଅଛି—

ପଦ୍ମଂ ଚମୁଷଳଂ କାର୍ଯ୍ୟଂଦେବ ଦକ୍ଷିଣ ହସ୍ତୟୋଃ ।
ବାମୟୋଃ ସୀରଶଂଖ ଚ କରେ ତସ୍ୟ ସୁରାମ୍ବୁଧଃ ।।

(+) ବୃହତ୍ସଂହିତା, ୨-୫୭-୩୪-୩୫ ।
(*) ମତ୍ସ୍ୟପୁରାଣ ୨୫୮-୮-୧୦ ।
(**) ଅଗ୍ନିପୁରାଣ ୪୪-୫୩ ।
(***) ପଦ୍ମପୁରାଣ-ପାତାଳଖଣ୍ଡ, ୭୮-୧୬-୧୭ ।

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ଶଙ୍କର୍ଷଣ ବିଗ୍ରହଙ୍କ ପ୍ରାଚୀନ ରୂପ ଏବଂ ତାଙ୍କ ହସ୍ତରେ ଧରିଥିବା ଜିନିଷ ବଦଳି ଥିଲା, ଯେତେବେଳେ ପୁରୀର ଶ୍ରୀଶଙ୍କର୍ଷଣ ଓ ଶ୍ରୀପୁରୁଷୋତ୍ତମଙ୍କୁ ଯଥାକ୍ରମେ ଶ୍ରୀବଳରାମ ଓ ଶ୍ରୀକୃଷ୍ଣ ରୂପରେ ପରିଣତ କରି ବୈଷ୍ଣବ ସଂପ୍ରଦାୟ ଆରାଧନା କରୁଥିଲେ ।

ଆଗରୁ କୁହାଯାଇଛି, ଶ୍ରୀପୁରୁଷୋତ୍ତମଙ୍କ ପ୍ରତିମା ହେଉଛନ୍ତି ଉପର ବର୍ଣ୍ଣିତ ଉପରୋକ୍ତ ୨୪ ବିଷ୍ଣୁ ପ୍ରତିମାଙ୍କ ମଧ୍ୟରେ ୧୭ ନମ୍ବର ମୂର୍ତ୍ତି । 'ପଦ୍ମ ପୁରାଣ-ପାତାଳଖଣ୍ଡ' ଅନୁସାରେ, ତାଙ୍କର ଉପର ଦୁଇ ଭୁଜରେ ପଦ୍ମ ଓ ଶଙ୍ଖ ଏବଂ ତଳ ଦୁଇ ଭୁଜରେ ଗଦା ଓ ଚକ୍ର ଧାରଣ କରିଥିବା ଲେଖାଅଛି । କିନ୍ତୁ ପରବର୍ତ୍ତୀ କାଳରେ, ଅର୍ଥାତ୍ କୃଷ୍ଣ ରୂପରେ ସେ ପୂଜିତ ହେବାରୁ ତାଙ୍କର ସେହି ପ୍ରତିମାରେ କିଛି ପରିବର୍ତ୍ତିନ କରାଗଲା । ତଥାପି ସେ ଚତୁର୍ଭୁଜ ବିଶିଷ୍ଟ କୃଷ୍ଣ ରୂପ ଧାରଣ କରିଥିବା ପ୍ରସଙ୍ଗ 'ଭଗବତ ଗୀତା'ରେ ମଧ୍ୟ ଉଲ୍ଲେଖ ହୋଇଛି । ସହସ୍ର ଭୁଜଯୁକ୍ତ ବିଶ୍ୱରୂପ ଦର୍ଶନ କରି ଅର୍ଜୁନ ତାଙ୍କୁ ନିବେଦନ କରିଥିଲେ—

କିରୀଟିନଂ ଗଦିନଂ ଚକ୍ରହସ୍ତଂ
ଇଚ୍ଛାମି ତ୍ୱାଂଦ୍ରଷ୍ଟୁ ମହଂ ତଥୈବ ।
ତେନୈବ ରୂପେଣ ଚତୁର୍ଭୁଜେନ
ସହସ୍ରବାହୋ ଭବ ବିଶ୍ୱମୂର୍ତ୍ତେ ।।

ସୁତରାଂ ଚତୁର୍ଭୁଜ କୃଷ୍ଣଙ୍କୁ ହିଁ ପୁରୀର ଶ୍ରୀମନ୍ଦିରରେ ପ୍ରତିଷ୍ଠା କରି ତାଙ୍କର ପୂଜା ବିଧି ସମ୍ପନ୍ନ ହେଉଥିଲା । ଓଡ଼ିଶାର ବହୁ ସ୍ଥାନରେ ସେହି ଚତୁର୍ଭୁଜ ବିଶିଷ୍ଟ ଶ୍ରୀକୃଷ୍ଣଙ୍କ ପ୍ରତିମାମାନ ସ୍ଥାପନ କରି ତାଙ୍କୁ 'ମାଧବ' ନାମରେ ଆରାଧନା କରାଯାଉଥିଲା । ସେପରି ଅଧିକାଂଶ ବିଗ୍ରହ ଅଦ୍ୟାପି ପୁରୀ ଓ ତତ୍ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଥିବା ଦେଖାଯାଏ । ଖ୍ରୀ: ୭ମ ଶତାବ୍ଦୀ ଓ ତତ୍ପୂର୍ବ ସମୟରୁ ଚକ୍ରଧର ମାଧବଙ୍କ ଆରାଧନା ପ୍ରସିଦ୍ଧି ଲାଭ କରିଥିଲା । ତେଣୁ ଶୈଳୋଦ୍ଭବ ବଂଶୀୟ ମହାରାଜା ମାଧବବର୍ମାଙ୍କୁ ତାଙ୍କର ଏକ ଦାନଶାସନରେ 'ଚକ୍ରଧର ମାଧବ'ଙ୍କ ସଙ୍ଗେ ତୁଳନା କରି ପ୍ରଶସ୍ତି ଲେଖକ ବର୍ଣ୍ଣନା କରିଛନ୍ତି । (*)

ଓଡ଼ିଶାରେ ଜନପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ବୌଦ୍ଧର ଭଞ୍ଜ ବଂଶୀୟ ରାଜାମାନଙ୍କ କେତେକ ତାମ୍ରଶାସନରୁ ଜଣାଯାଏ ଯେ, ପୂର୍ବେ ନୀଳମାଧବଙ୍କୁ

---

* J. A. S. B. Vol. LXXIII (1904), P.P. 282-286 ff.

ମହାନଦୀ ତଟରେ ଗନ୍ଧରାଡ଼ି ନାମକ ସ୍ଥାନରେ ସ୍ଥାପନ କରି ଆଦିବାସୀ ବସୁ ଶବର କିମ୍ବା ଭଞ୍ଜ ବଂଶୀୟ ରାଜାମାନେ ତାଙ୍କୁ ଆରାଧନା କରୁଥିଲେ । କିନ୍ତୁ କିମ୍ବଦନ୍ତୀ ଅନୁସାରେ ସେ ମୂର୍ତ୍ତି ଅନ୍ତର୍ହିତ ହେବାରୁ ତାଙ୍କ ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ହସ୍ତପଦ ଶୂନ୍ୟ ମୂର୍ତ୍ତିଙ୍କୁ ସ୍ଥାପନ କରି ରାଜା ଇନ୍ଦ୍ରଦ୍ୟୁମ୍ନ ତାଙ୍କର ବିରାଟ ମନ୍ଦିର ଗଠନ କରିଥିଲେ । ଏହି କିମ୍ବଦନ୍ତୀ ଏବେ ଅଭିଲେଖମାନଙ୍କ ଆବିଷ୍କାର ଫଳରେ କଳ୍ପନା ପ୍ରସୂତ ପୌରାଣିକ ଆଖ୍ୟାନରେ ପରିଣତ ହୋଇଯାଇଛି । ତଥାପି ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ ହିଁ ନୂତନ ଦାରୁବିଗ୍ରହ ଶ୍ରୀଜଗନ୍ନାଥଙ୍କୁ ପରବର୍ତ୍ତୀ କାଳରେ ବଡ଼ଦେଉଳରେ ପ୍ରତିଷ୍ଠା କରିଥିବା କିମ୍ବଦନ୍ତୀର ସତ୍ୟତା ଏବେ ପ୍ରମାଣିତ ହୋଇଛି । ତେବେ ହିନ୍ଦୁ ସମାଜରେ ପ୍ରଚଳିତ ବିଷ୍ଣୁ ପ୍ରତିମାଙ୍କର ଏତେ ବଡ ପରିବର୍ତ୍ତନ କାହିଁକି ଓ କେଉଁ କାରଣରୁ କରାଗଲା, ତାହା ସ୍ପଷ୍ଟ ରୂପେ କୌଣସି ଗ୍ରନ୍ଥରେ ଉଲ୍ଲେଖ ହୋଇ ନାହିଁ । ତେଣୁ ଶ୍ରୀଜଗନ୍ନାଥଙ୍କ ଦାରୁବିଗ୍ରହ ସ୍ଥାପନ ଓ ସେଥିର ଆରାଧନା ସମସ୍ତ ଧର୍ମାବଲମ୍ବୀମାନେ ଅକୁଣ୍ଠ ଭାବେ ଗ୍ରହଣ କରିଥିବା ବିଷୟକୁ ଆଧାର କରି ଅତି ସାବଧାନତାର ସହ ଇତିହାସ ଦୃଷ୍ଟିରୁ ସେଥି ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ ।

ପ୍ରଥମେ କୁହାଯାଇଛି ଯେ, ଶ୍ରୀପୁରୁଷୋତ୍ତମଙ୍କ ନାମ ବ୍ୟତୀତ ଶ୍ରୀଜଗନ୍ନାଥଙ୍କ ନାମ ଖ୍ରୀ: ୧୩ଶ. ଶତାବ୍ଦୀ ପୂର୍ବରୁ କୌଣସି ଗ୍ରନ୍ଥରେ ଉଲ୍ଲେଖ ହୋଇ ନାହିଁ । ଏପରିକି 'ବିଷ୍ଣୁ'ଙ୍କ ସହସ୍ର ନାମରେ ମଧ୍ୟ ତାହା ଉଲ୍ଲେଖ ହୋଇ ନାହିଁ । କିନ୍ତୁ ଖ୍ରୀ ୧୪ଶ. ଶତାବ୍ଦୀ ଓ ତତ୍ ପରବର୍ତ୍ତୀ କାଳର ସ୍କନ୍ଦ ପୁରାଣ-ଉତ୍କଳଖଣ୍ଡ ସମେତ ବହୁ ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ଦାରୁ-ବିଗ୍ରହ ସମ୍ପର୍କରେ ଲେଖାମାନ ଦେଖିବାକୁ ମିଳେ । ଏଥିରୁ ଅନୁମିତ ହେଉଛି, ଖ୍ରୀ: ୧୩ଶ. ଶତାବ୍ଦୀ ଶେଷରେ କିମ୍ବା ୧୪ଶ. ଶତାବ୍ଦୀ ଆରମ୍ଭରେ ହିଁ ଶ୍ରୀଜଗନ୍ନାଥଙ୍କ ଦାରୁବିଗ୍ରହ ଶ୍ରୀମନ୍ଦିରରେ ସ୍ଥାପିତ ହୋଇଥିଲେ ଏବଂ ସେହି ସମୟ ଅବଧି ଶ୍ରୀବିଗ୍ରହମାନଙ୍କର 'ନବକଳେବର' ଉତ୍ସବ ପାଳିତ ହେଉଅଛି ।

ବର୍ତ୍ତମାନ ଖ୍ରୀ: ୧୩ଶ. ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଠାରୁ ୧୪ଶ ଶତାବ୍ଦୀର ପ୍ରଥମାର୍ଦ୍ଧ ମଧ୍ୟରେ ଯଦି ଶ୍ରୀଜଗନ୍ନାଥଙ୍କ 'ନବକଳେବର' ମହୋତ୍ସବ ହୋଇ ଶ୍ରୀମନ୍ଦିରରେ ଦାରୁବ୍ରହ୍ମଙ୍କୁ ସ୍ଥାପନ କରାଗଲା ବୋଲି କୁହାଯିବ, ତା' ହେଲେ ସେଥିର କାରଣ ଐତିହାସିକ ପ୍ରମାଣ ଦୃଷ୍ଟିରୁ ବିଚାର କରିବା ନିତାନ୍ତ ଆବଶ୍ୟକ । ତେଣୁ ସେ ସମୟରେ ଉତ୍କଳର ରାଜନୈତିକ ପରିସ୍ଥିତି କଣ ହୋଇଥିବ, ତାହା ବିଶ୍ଳେଷଣ କରିବା ଆବଶ୍ୟକ ।

ଉତ୍କଳର ଗଙ୍ଗାବଂଶୀୟ ମହାରାଜା ଭାନୁଦେବ (୧ମ)ଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ନରସିଂହ ଦେବ (୨ୟ) ୧୨୭୮-୧୩୦୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ । ତାଙ୍କ ରାଜତ୍ୱ କାଳରେ ବଙ୍ଗର ମୁସଲମାନ ସୁଲତାନ ଘନ ଘନ ଓଡ଼ିଶା ଆକ୍ରମଣ କରିବାକୁ ଉଦ୍ୟମ କରି ପୂର୍ବ ଭାଗରେ ଥିବା କେତେକ ସୀମାନ୍ତଅଂଚଳ ଅଧିକାର କରିନେବାରୁ ମହାରାଜା ନରସିଂହ ଦେବ ତାଙ୍କ ରାଜତ୍ୱର ୧୯ ଅଙ୍କରେ, ଅର୍ଥାତ୍ ୧୨୯୪ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସ ପୂର୍ବରୁ ସୈନ୍ୟସାମନ୍ତଗୁଡ଼ିକ ଓଡ଼ିଶା ରାଜଧାନୀ ବାରଣାସୀ-କଟକରୁ ବାଲେଶ୍ୱରସ୍ଥିତ ରେମୁଣା-କଟକକୁ ଯାତ୍ରା କଲେ । ସେତେବେଳେ ତାଙ୍କ ପୁତ୍ର ଭାନୁଦେବଙ୍କ ଅଧୀନରେ କିଛି ସୈନ୍ୟଙ୍କୁ ରାଜଧାନୀର ସୁରକ୍ଷାପାଇଁ ରଖାଇ ଯାଇଥିବା ସମ୍ଭବ । କାରଣ ରାଜଧାନୀରେ ତାଙ୍କ ଅନୁପସ୍ଥିତିର ସୁବିଧା ପାଇ ଶତ୍ରୁ ସୈନ୍ୟ ଦକ୍ଷିଣ ଦିଗରୁ ଉତ୍କଳ ଆକ୍ରମଣ କରିବା ଯେପରି ନ ହେବ, ସେଥିର ମଧ୍ୟ ବ୍ୟବସ୍ଥା କରାଯାଇଥିଲା । ଉତ୍କଳର ଦକ୍ଷିଣରେ କଳିଙ୍ଗ ଅବସ୍ଥିତ ହୋଇଥିବାରୁ ଶ୍ରୀକୂର୍ମ ଓ ସିଂହାଚଳସ୍ଥିତ ବିଷ୍ଣୁ ମନ୍ଦିରଗୁଡ଼ିକ ଯେପରି ସୁରକ୍ଷିତ ହେବ, ସେଥି ସକାଶେ ମଧ୍ୟ ତାଙ୍କ ଗୁରୁ ନରହରି ତୀର୍ଥଙ୍କ ଅଧୀନରେ କେତେକ ସୈନ୍ୟ ଓ ସେନାଧ୍ୟକ୍ଷଙ୍କୁ ନିଯୁକ୍ତ କରାଯାଇଥିଲା । ଏ ସମ୍ପର୍କରେ ବିଶଦ୍ ବିବରଣୀ ସିଂହାଚଳ ମନ୍ଦିରସ୍ଥ ଶିଳାଲେଖମାନଙ୍କରୁ ଜଣାଯାଇଛି ।

ମହାରାଜା ନରସିଂହ ଦେବ ରେମୁଣା-କଟକସ୍ଥ ରାଜପ୍ରାସାଦରେ ଦୀର୍ଘକାଳ ଅବସ୍ଥାନ କରିଥିଲେ । ସେହି କାଳ ମଧ୍ୟରେ ରେମୁଣା କଟକ ନିକଟରେ 'ରାୟବଣିଆ' ନାମରେ ଗୋଟିଏ ଦୁର୍ଗ ନିର୍ମିତ ହୋଇଥିଲା । ସେଠାରୁ ଉତ୍ତର ଦିଗରେ ଆଧୁନିକ ମୟୂରଭଞ୍ଜର ବାରିପଦା ନିକଟରେ ଭୈରବ-କଟକ ନାମକ ଅନ୍ୟ ଏକ ରାଜଧାନୀ ଥିଲା । ସେଥିର ସୁରକ୍ଷା ପାଇଁ ସେ ତାଙ୍କ ଅନ୍ୟ ଜଣେ ପୁତ୍ର ଗଙ୍ଗରାଜଙ୍କୁ ବୋଧହୁଏ ଭାର ଦେଇଥିଲେ । ସୁବର୍ଣ୍ଣରେଖା ନଦୀଠାରୁ ଗଙ୍ଗାନଦୀ ପର୍ଯ୍ୟନ୍ତ ଯେଉଁ ଅଞ୍ଚଳମାନ ଉତ୍କଳର ଅଂଶ ହୋଇ ରହିଥିଲା, ତାହା ବଙ୍ଗର ମୁସଲମାନମାନେ ଅଧିକାର କରିଥିବାରୁ ତାଙ୍କଠାରୁ ଛଡ଼ାଇ ଆଣିବା ପାଇଁ ନରସିଂହ ଦେବ ରେମୁଣାରୁ ସୈନ୍ୟ ପ୍ରେରଣ କରିଥିଲେ । ବୋଧହୁଏ ତାଙ୍କର ଜଣେ ବିଶିଷ୍ଟ ସେନାଧ୍ୟକ୍ଷ ରୂପେ ଅଲ୍ଲଲନାଥ ନାମକ ସେନାପତି କୃତିତ୍ୱର ସହ ୧୨୯୪ ଖ୍ରୀଷ୍ଟାବ୍ଦ ପୂର୍ବରୁ ମୁସଲମାନଙ୍କୁ ଉତ୍କଳ ସୀମାରୁ ତଡ଼ି ଦେଇ ଥିବାରୁ ତାଙ୍କୁ କଟକ ଜିଲ୍ଲା ଅଲ୍ଲଲପୁରଠାରେ ପ୍ରଚୁର ପରିମାଣରେ ଭୂମି ଦାନ କରିଥିବା ପ୍ରସଙ୍ଗ ନରସିଂହ ଦେବଙ୍କ ତାମ୍ର ଶାସନରେ

ଖୋଦିତ ହୋଇଅଛି । (*) ମହାରାଜା ନରସିଂହ ଦେବଙ୍କ ଅପର କାଲି-ତାମ୍ର ଶାସନରେ (**) ଲେଖା ଅଛି ଯେ, ସେ ତାଙ୍କର ୩୧ ଅଙ୍କରେ, ଶକାବ୍ଦ ୧୨୨୫ (ଖ୍ରୀ: ୧୩୦୩)ରେ ଭୈରବ-କଟକଠାରେ ଅବସ୍ଥାନ କରୁଥିବା ବେଳେ ସ୍ୱୀୟ ରାଣୀ ସାରଦେବୀଙ୍କ ପୁତ୍ର ଗଙ୍ଗରାଜ ଦେବଙ୍କ ଅକାଳ ମୃତ୍ୟୁ ହେବାରୁ ତାଙ୍କର ସ୍ୱର୍ଗଲାଭ ନିମନ୍ତେ ମୃତ ପୁତ୍ରଙ୍କ ନାମରେ ଦେବତା-ମାନଙ୍କୁ ଓ ବ୍ରାହ୍ମଣମାନଙ୍କୁ ଶାସନ ଦାନ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ନରସିଂହ ଦେବ ୧୩୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉତ୍କଳର ପୂର୍ବାଞ୍ଚଳରେ ସୀମା ସୁରକ୍ଷା ପାଇଁ ରହିଥିଲେ । ସେତେବେଳେ ତାଙ୍କ ଜ୍ୟେଷ୍ଠପୁତ୍ର ଭାନୁଦେବ (୨ୟ) ଉତ୍କଳର ଶାସନ ଭାର ଗ୍ରହଣ କରିଥିଲେ । ସିଂହାଚଳ ମନ୍ଦିରର ଏକ ଶିଳାଲେଖରୁ (***) ଜଣାଯାଇଛି ଯେ, ଭାନୁଦେବଙ୍କ ତୃତୀୟ ଅଙ୍କ ୧୩୦୭ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ପଡ଼ିଥିଲା । ତେଣୁ ତାଙ୍କର ରାଜ୍ୟାଭିଷେକ ଯେ ନିଶ୍ଚିତ ଭାବେ ୧୩୦୫ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ଶ୍ରୀକୂର୍ମରୁ ପ୍ରାପ୍ତ ଅନ୍ୟ ଏକ ଅଭିଲେଖରେ ବୀର ନରସିଂହ ଦେବଙ୍କ ୩୩ ଅଙ୍କ ୧୩୦୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ (୧୨୨୭ ଶକାବ୍ଦରେ) ସମ୍ପନ୍ନ ହୋଇଥିବା ଉଲ୍ଲେଖ ଅଛି । (×) ସେହି ମନ୍ଦିରର ଅନ୍ୟ ଏକ ଅଭିଲେଖରେ ଲେଖାଅଛି ଯେ, ନରସିଂହ ଦେବ (୨ୟ) ତାଙ୍କ ୩୪ ଅଙ୍କରେ, ଅର୍ଥାତ୍ ୧୩୦୫ ଖ୍ରୀଷ୍ଟାବ୍ଦ (ଶକାବ୍ଦ ୧୨୨୮)ରେ କୂର୍ମେଶ୍ୱରଙ୍କ ସେବାପାଇଁ ଦୁଇଟି ଗ୍ରାମର ଦାନ କରିଥିଲେ । (+)ଏଥିରୁ ପ୍ରମାଣିତ ହେଉଛି ଯେ, ଭୈରବ-କଟକରୁ ୧୩୦୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ପରେ ବିଳମ୍ବ ନକରି ଶ୍ରୀକୂର୍ମଠାରେ ତାଙ୍କ ଗୁରୁ ନରହରି ତୀର୍ଥଙ୍କ ସଙ୍ଗେ କିଛି ଗୁରୁତର ବିଷୟରେ ପରାମର୍ଶ କରିବାକୁ ସେ ଆସିଥିଲେ ଏବଂ ଶ୍ରୀ କୂର୍ମେଶ୍ୱରଙ୍କୁ ଭୂମି ଓ ଗ୍ରାମର ଦାନ କରିଥିଲେ । ବୋଧହୁଏ, ପୁରୁଷୋତ୍ତମ କ୍ଷେତ୍ରରେ ବିଧର୍ମୀ ମୁସଲମାନଙ୍କ ଆକ୍ରମଣ ହେତୁ ମନ୍ଦିରର ଦେବବିଗ୍ରହମାନ ଅପବିତ୍ର ହୋଇଥିବାରୁ ସେଥିର କିଛି ବିକଳ୍ପ ବ୍ୟବସ୍ଥା କରିବା ପାଇଁ ତାଙ୍କର ଶ୍ରୀକୂର୍ମ ଯାତ୍ରା ସମ୍ପନ୍ନ ହୋଇଥିଲା । ସେଠାରେ ଗୁରୁ ଓ ପଣ୍ଡିତମାନଙ୍କ ପରାମର୍ଶ କ୍ରମେ ସେ ତାଙ୍କ ପୁତ୍ର ଭାନୁଦେବଙ୍କ

---

(*) Ep. Ins. Vol. XXXI. PP. 21-24 ff.

(** Ibid. PP. 109-128 ff.

(***) S.I.I. Vol. VI No 1170, Ins or, Vol V. Pt.II,P 359.

(×) S.I.I. Vol. V, No 1157; Ins. or. Vol. V. Pt I. P. 351.

(+) S.I.I Vol, V, No. 1173; Ins or. Vol. V, pt. i, P. 355.

ରାଜ୍ୟାଭିଷେକ ୧୩୦୫ ଖ୍ରୀଷ୍ଟାବ୍ଦରେ ସମ୍ପନ୍ନ କରି ପୁରୀଠାରେ ଥିବା ରାଜପ୍ରାସାଦରେ ତାଙ୍କୁ ରଖାଇ ସୈନ୍ୟ ସାମନ୍ତମାନଙ୍କ ସହ ଶ୍ରୀମନ୍ଦିରକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବାପାଇଁ ସୁବନ୍ଦୋବସ୍ତ କରିଥିଲେ । ଏହାପରେ, ଭାନୁଦେବଙ୍କ ୩ୟ ଅଙ୍କ, ୧୩୦୫ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହେଲା । ସେଥିର ପରବର୍ଷ ସିଂହାଚଳଠାରେ ଭାନୁଦେବଙ୍କ ୩ୟ ଅଙ୍କ (୧୩୦୭)ରେ ସେଠା ମନ୍ଦିରର ସୁରକ୍ଷା ପାଇଁ ନୂତନ ବ୍ୟବସ୍ଥା ଖଞ୍ଜାଯାଇ ଥିବା ପ୍ରସଙ୍ଗ ସେହି ମନ୍ଦିରର ଅନ୍ୟ ଏକ ଶିଳାଲେଖରେ ବିବୃତ ହୋଇଅଛି ।(*)

ଏ ସମୟରେ ଭାରତର ଉତ୍ତର ପଶ୍ଚିମାଞ୍ଚଳରେ ଗିୟାସୁଦ୍ଦୀନ ତୋଗଲକ ତଥା ଆଲ୍ଲାଉଦ୍ଦୀନଙ୍କ ପ୍ରତିପତ୍ତି ବଢ଼ିବା ହେତୁ ରାଜପୁତାନା (ମାଳବ)ର ରାଣା ହମ୍ମୀରଙ୍କ ପରି ଜଣେ ବୀର ମଧ୍ୟ ପରାଜିତ ହୋଇଥିଲେ । ତେଣୁ ରଥାମ୍ବୋର ସମେତ ରାଜପୁତାନା ଦିଲ୍ଲୀର ଅଧୀନସ୍ଥ ହେଲା । ବାସ୍ତବରେ କବିରାଜ ବିଶ୍ୱନାଥ ତାଙ୍କ 'ସାହିତ୍ୟ ଦର୍ପଣ' ଗ୍ରନ୍ଥରେ ଉଦାହରଣ ଦେଇ ଲେଖିଛନ୍ତି—

"ସନ୍ଧୌ ସର୍ବସ୍ୱହରଣଂ ବିଗ୍ରହେ ପ୍ରାଣନିଗ୍ରହଃ ।
ଆଲ୍ଲାଉଦ୍ଦୀନ ନୃପତୌ ନ ସନ୍ଧିର୍ନ ଚ ବିଗ୍ରହଃ ।

୧୩୦୩ ଖ୍ରୀଷ୍ଟାବ୍ଦରେ ଆଲ୍ଲାଉଦ୍ଦିନ ମିବାର ଅଧିକାର କଲେ । କୂଟନୀତି ବଳରେ ରାଣା ହମ୍ମୀରଙ୍କ ମନ୍ତ୍ରୀଙ୍କୁ ସେ ହସ୍ତଗତ କରି ଚିତୋର ଜୟ କରିଥିଲେ । ପଶ୍ଚିମ ଭାରତରେ ଦେବଗିରି ଏବଂ କାକତୀୟ ବଂଶର ରାଜା ପ୍ରତାପରୁଦ୍ରଙ୍କୁ ୧୩୦୨ ଖ୍ରୀଷ୍ଟାବ୍ଦରେ ଜୟ କରିବା ଫଳରେ ଦକ୍ଷିଣ ଭାରତ ମୁସଲମାନମାନଙ୍କର ଅଧିକାରଭୁକ୍ତ ହେଲା । ଏହା ଫଳରେ ସମଗ୍ର ଭାରତରେ ହିନ୍ଦୁ ସମାଜ ଅତ୍ୟନ୍ତ ଆକୁଳ ହୋଇ ପଡ଼ିଲା । ଜୁନା ଖାଁ (ଗିୟାସୁଦ୍ଦିନଙ୍କ ପୁତ୍ର) କାକତୀୟ ପ୍ରତାପରୁଦ୍ରଙ୍କୁ ବନ୍ଦୀ କରି ସେଠାରେ ଏକ ହିନ୍ଦୁ ମନ୍ଦିର ଭାଙ୍ଗି ଦେଇଥିଲେ । ପରେ ସେ ତେଲଙ୍ଗନା ତଥା ରାଜମହେନ୍ଦ୍ରୀ ଅଧିକାର କରି ସେଠାରେ ଏକ ହିନ୍ଦୁ ମନ୍ଦିରକୁ ଭାଙ୍ଗି ତାହା ଏକ ମସଜିଦ୍‌ରେ ପରିଣତ କରିଥିଲେ । ଗୋଦାବରୀ ତଟବର୍ତ୍ତୀ ରାଜମହେନ୍ଦ୍ରୀ ପର୍ଯ୍ୟନ୍ତ ଆସି ଜୁନା ଖାଁ ତତ୍କାଳୀନ କଳିଙ୍ଗର ବିଷ୍ଣୁ ମନ୍ଦିରମାନ ଧ୍ୱଂସକରି ଉତ୍କଳ ଅଧିକାର କରିବା ସକାଶେ କୂଟନୈତିକ ମସୃଧାରେ ସେ ଅଞ୍ଚଳର କେତେକ ଖଣ୍ଡପାଳ ଓ ଆଦିବାସୀ କନ୍ଧଙ୍କୁ ଲାଞ୍ଚ ଦେଇ

---

* S.I I. Vol VI, No. 1179. Ins or Vol V, pt.ii, PP 379-380 f.

ସେଠାରେ ପ୍ରଥମେ ବିଦ୍ରୋହ ସୃଷ୍ଟି କଲେ । କିନ୍ତୁ କଳିଙ୍ଗରେ ବହୁ ବିଚକ୍ଷଣ ପଣ୍ଡିତ ଓ ବଳିଷ୍ଠ ସେନାପତିମାନେ ଥିବାରୁ ତାଙ୍କର ସେହି କୁଟନୀତି କାର୍ଯ୍ୟକାରୀ ହୋଇ ନାହିଁ । କଳିଙ୍ଗରେ ଜାଗ୍ରତ ଥିବା ଶ୍ରୀରାମ ସେନାପତି ନାମକ ଜଣେ ବଳିଷ୍ଠ ଓ ସୁଚତୁର ସେନାଧ୍ୟକ୍ଷଙ୍କ ସମୟୋଚିତ ପ୍ରତିରୋଧ ହେତୁ ଲୁନା ଖାଁଙ୍କ କୁଟନୀତି ସଫଳ ହୋଇ ନାହିଁ । ସେହି ବିଦ୍ରୋହ ଦମନ କରି ଥିବାରୁ ମହାରାଜା ଭାନୁଦେବ ଶ୍ରୀରାମ ସେନାପତିଙ୍କୁ ନିମ୍ନୋକ୍ତ ଉପାଧିରେ ଭୂଷିତ କରିଥିବା ପ୍ରସଙ୍ଗ ଶ୍ରୀକୂର୍ମ ମନ୍ଦିରରେ ୧୩୨୧ ଖ୍ରୀଷ୍ଟାବ୍ଦରେ ଖୋଦିତ ହୋଇଥିବା ଏକ ଶିଳା-ଲେଖରେ ବ୍ୟକ୍ତ କରାଯାଇଛି ।

"କଳିକ ରକ୍ଷାପାଳନ-ମ୍ଲେଛଭଞ୍ଜନ-ଝଣ୍ଡପାଳ-ଶିରଚ୍ଛେଦନ-କୋନ୍ଦ ମର୍ଦ୍ଦନ ଗଣ୍ଡକୋଦମ ସିଂହ···ଶ୍ରୀରାମ ସେନାପତି"······ (*)

ଭାନୁଦେବଙ୍କ ଅଧୀନରେ ପରିଚାଳିତ ସୈନ୍ୟମାନଙ୍କ ବଳିଷ୍ଠ ପ୍ରତିରୋଧ ହେତୁ ବିଭିନ୍ନ କୌଶଳ ଅବଲମ୍ବନ କରି ମଧ୍ୟ ମୁସଲମାନ ସୈନ୍ୟମାନେ ବାରମ୍ବାର ପରାଜିତ ହୋଇଥିଲେ ।

ପ୍ରଥମେ କୁହାଯାଇଛି ଯେ, ମହାରାଜା ନରସିଂହଦେବ ୧୩୦୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ ମଧ୍ୟ ୧୩୦୫ ଖ୍ରୀଷ୍ଟାବ୍ଦରେ ତାଙ୍କ ପୁତ୍ର ଭାନୁଦେବଙ୍କୁ ରାଜ୍ୟଭାର ସମର୍ପଣ କରି ନିଜେ ଅବସର ନେଇଥିଲେ । କିନ୍ତୁ ଦେଥିର ଅଳ୍ପକାଳ ପୂର୍ବରୁ ସମ୍ଭବତଃ ଶ୍ରୀମନ୍ଦିରରେ ଶ୍ରୀପୁରୁଷୋତ୍ତମଙ୍କ ପ୍ରସ୍ତର ବିଗ୍ରହମାନ ମୁସଲମାନ ଆକ୍ରମଣକାରୀମାନଙ୍କ ହସ୍ତରେ ନଷ୍ଟ ହୋଇଥିଲେ । ସେତେବେଳେ ବୋଧହୁଏ ନରସିଂହଦେବ ସୁଦୂର ଭୈରବ-କଟକରେ ଏବଂ ତାଙ୍କ ପୁତ୍ର ଭାନୁଦେବ ବାରାଣସୀ କଟକରେ ରହିଥିଲେ । ତେଣୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ କେହି ରକ୍ଷକ ନଥିବା ଅବସ୍ଥାରେ ଶ୍ରୀମନ୍ଦିର ଶତ୍ରୁ କବଳରେ ପଡ଼ି ନାରଖାର ହୋଇଗଲା । ଶତ୍ରୁ ଭୟରେ ସେଠାର ସେବକ ଓ ନଗରବାସୀମାନେ ଆତ୍ମରକ୍ଷା ପାଇଁ ଯେ ଯୁଆଡ଼େ ପଳାଇ ଯାଇଥିଲେ । ଏହି ଦୁଃସମ୍ବାଦ ପାଇବାରୁ ଭୈରବ-କଟକ ଛାଡ଼ି ନରସିଂହ ଦେବ ବିଳମ୍ବ ନକରି ସିଧା ଶ୍ରୀକୂର୍ମ ମନ୍ଦିରକୁ ଯାଇ ସେଠାରେ ରହିଥିବା ନରହରି ତୀର୍ଥଙ୍କ ସଙ୍ଗେ ପରାମର୍ଶ କରିଥିବା ସମ୍ଭବ । ଏ ବିଷୟ ଆଗରୁ କୁହାଯାଇଛି । ଗୁରୁଙ୍କ ଉପଦେଶ କ୍ରମେ ଭାନୁଦେବଙ୍କ ରାଜ୍ୟାଭିଷେକ କାର୍ଯ୍ୟ ସମାପନ କରି ଶ୍ରୀମନ୍ଦିରରେ ପ୍ରସ୍ତର ପରିବର୍ତ୍ତେ ଦାରୁ ବିଗ୍ରହ ସ୍ଥାପନ

(*) S.I.I, Vol V No. 1188. Ins. or, Vol. V. Pi. ii, P.393.

କରାଗଲା । ଦୂର ଦୂରାନ୍ତର ବନରୁ ଉପଯୁକ୍ତ ନିମ୍ବକାଷ୍ଠର ଗଣ୍ଡିମାନ ଶବରମାନଙ୍କ ଦ୍ୱାରା ଜନପଥରେ ଅଣାଇ ସେହି ଶ୍ରମଜୀବୀ ଶବରମାନଙ୍କ ସନ୍ତୋଷ ପାଇଁ ବ୍ୟବସ୍ଥା କରାଗଲା । ସେମାନଙ୍କ ଦେବତାଙ୍କ ଅନୁରୂପରେ ପ୍ରତିମାମାନ ଗଠିତ ହେଲା । ଶବର ସୈନ୍ୟଙ୍କୁ ସନ୍ତୁଷ୍ଟ କରି ଦେବବିଗ୍ରହଙ୍କୁ ଶ୍ରୀମନ୍ଦିରରେ ସୁରକ୍ଷିତ କରିବା ନିମନ୍ତେ ଏପରି ବ୍ୟବସ୍ଥାର ମୁଖ୍ୟ ଉଦ୍ଦେଶ୍ୟ ବୋଲି ମନେହୁଏ । ତଥାପି ହିନ୍ଦୁ ବ୍ରାହ୍ମଣ ତଥା ଭକ୍ତମାନଙ୍କୁ ସନ୍ତୁଷ୍ଟ କରିବା ଲକ୍ଷ୍ୟରେ ସେହି ଦାରୁବିଗ୍ରହଙ୍କ ନାଭିରେ ବ୍ରହ୍ମଙ୍କ ଅବସ୍ଥିତି ନିରୂପିତ ହେଲା । ଏଣୁ ତାଙ୍କୁ 'ଦାରୁବ୍ରହ୍ମ' ବୋଲି କୁହାଯାଏ । ସମ୍ଭବତଃ ଶ୍ରୀଜଗନ୍ନାଥଙ୍କ ନାଭିମଣ୍ଡଳରେ ଶାଳଗ୍ରାମ ଶିଳା ସଂରକ୍ଷିତ ହୋଇଥିଲା । 'ନାରଦୀୟ-ସ୍ମୃତି'ର 'ଆହ୍ନିକ ପ୍ରକରଣ'ରେ ଲେଖାଅଛି—

"ଶାଳଗ୍ରାମଶିଳା ଯତ୍ର ଯତ୍ର ଦ୍ୱାରବତୀ ଶିଳା ।
ଉଭୟୋଃ ସଂଗମୋ ଯତ୍ର ଯତ୍ର ମୁକ୍ତିର୍ନ ସଂଶୟଃ ।।"

ଆଦିଶଙ୍କରାଚାର୍ଯ୍ୟ ମଧ୍ୟ ଏହି ସମର୍ଥନ କରି ତାଙ୍କୁ 'ବେଦାନ୍ତସୂତ୍ର'ରେ ଉଲ୍ଲେଖ କରିଛନ୍ତି ବୋଲି ପି. ଭି. କାନେ ମତବ୍ୟକ୍ତ କରିଛନ୍ତି । (+) ଏ ଦୃଷ୍ଟିରୁ ଆମେ ଅନୁମାନ କରିପାରୁ ଯେ, ପ୍ରଭୁଙ୍କର 'ନବକଳେବର' ବିନିର୍ମାଣ କାଳରେ ଯେଉଁ 'ବ୍ରହ୍ମ' ବସ୍ତୁ (ଶାଳଗ୍ରାମ ଶିଳା) ଦାରୁ ବିଗ୍ରହଙ୍କ ନାଭି ଗହ୍ୱରରେ ଗୁପ୍ତରେ ଅତି ସାବଧାନତାର ସହ ସ୍ଥାପିତ ହୁଅନ୍ତି, ତାହା ଶ୍ରୀମଦ୍‌ଭଗବତ୍‌ ଗୀତାର ନିମ୍ନୋକ୍ତ ଶ୍ଳୋକକୁ ଅନୁକରଣ କରିଥିବା ଅନୁମେୟ ।

"ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ।।"

ଅର୍ଥାତ୍‌ ପୁରୁଷଙ୍କ କଳେବର ଦୁଇଭାଗରେ ବିଭକ୍ତ । ସେଥିରୁ ଗୋଟିଏ ହେଉଛି, ଅଙ୍ଗର 'କ୍ଷର' ବା କ୍ଷୟ ହେବା ଅଂଶ, ଅନ୍ୟଟି ଅଙ୍ଗର 'କୂଟ'ସ୍ଥ 'ଅକ୍ଷର' ବା କ୍ଷୟ ନହେବା ଅଂଶ । ବାସ୍ତବରେ ଦାରୁବ୍ରହ୍ମଙ୍କ ଦାରୁ ଅଂଶଟି କ୍ଷୟ ପ୍ରାପ୍ତ ହେଲେ ସୁଦ୍ଧା ପ୍ରତିମାଙ୍କ ନାଭିର 'କୂଟ' ମଧ୍ୟରେ ଯେଉଁ ବ୍ରହ୍ମ-ସ୍ୱରୂପ ଶାଳଗ୍ରାମ ଶିଳା (?) ସଂରକ୍ଷିତ, ତାହା ଅକ୍ଷୟ ହୋଇ ରହନ୍ତି । ଏ ସମ୍ପର୍କରେ ଗୋଟିଏ ଐତିହାସିକ ଉଦାହରଣ ଏଠାରେ ଦିଆଯାଇପାରେ ।

୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁପରେ ବଙ୍ଗର ସୁଲତାନ ପକ୍ଷରୁ କଳାପାହାଡ଼ ଅଧୀନରେ ଏକ

(+) P. V. Kane 'History of Dharmasastra' Vol II, Pl. iii p. 726 ff.

ସୈନ୍ୟଗୋଷ୍ଠୀ ଓଡ଼ିଶା ଅଧିକାର କଲେ । କଳାପାହାଡ଼ର ନେତୃତ୍ୱରେ ବହୁ ହିନ୍ଦୁ ମନ୍ଦିର ଓ ଦେବଦେବୀ ଧ୍ୱଂସପ୍ରାପ୍ତ ହେଲେ । ପୁରୀର ଶ୍ରୀମନ୍ଦିରରୁ ତିନି ଦାରୁ ଦେବତାଙ୍କୁ ଶକଟରେ ନେଇ ଗଙ୍ଗାନଦୀ ତଟରେ ଦହନ କରାଗଲା ।(୪) ସେତେବେଳେ ବିଶର ମାହାନ୍ତି ନାମକ ଜଣେ ଭକ୍ତ ଲୁଚି ଲୁଚି ଶ୍ରୀବିଗ୍ରହଙ୍କ ମୂର୍ତ୍ତି-ମାନଙ୍କ ପଛରେ ସେଠାକୁ ଯାଇ ଦହନ ପରେ କଳାପାହାଡ଼ଙ୍କ ଲୋକେ ଫେରିଗଲା ପରେ ପାଉଁଶ ଭିତରୁ ପ୍ରଭୁଙ୍କର ଅକ୍ଷୟ ବ୍ରହ୍ମଙ୍କୁ ଖୋଜି ବାହାର କଲେ । ତାହା ସେ କୁଜଙ୍ଗଠାରେ, ନିଜ ଗୃହରେ ସଞ୍ଚିତ କରି ଆରାଧନା କରୁଥିଲେ । ଏ ସମ୍ବାଦ ପାଇ, ଓଡ଼ିଶାର ଭୋଇ ବଂଶୀୟ ପ୍ରଥମ ରାଜା ରାମଚନ୍ଦ୍ର ଦେବ ସେହି ବ୍ରହ୍ମଙ୍କୁ ମାହାନ୍ତିଙ୍କ ଗୃହରୁ (କୁଜଙ୍ଗରୁ) ଅଣାଇ 'ନବକଳେବର' ଉତ୍ସବ ସମାପନ କରିଥିବା ପ୍ରସଙ୍ଗ 'ମାଦଳାପାଞ୍ଜି'ରେ ଉଲ୍ଲେଖ ହୋଇଛି, (ଖୁରୁଧା ଇତିହାସ, ୧୯୬୯, ପୃ ୧୬) । ସୁତରାଂ ଅଗ୍ନିରେ ପୋଡ଼ି ଧ୍ୱଂସ ହୋଇ ନଥିବା 'ବ୍ରହ୍ମ' ଯେ ଶାଳଗ୍ରାମ ଶିଳା ହୋଇଥିଲେ, ତାହା ଏହି କିମ୍ବଦନ୍ତୀରୁ ପ୍ରମାଣିତ ହୋଇପାରେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, କେବେ ଓ କେଉଁ ପରିସ୍ଥିତିରେ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହମାନ ଶ୍ରୀମନ୍ଦିରରେ ପ୍ରତିଷ୍ଠା କରାଗଲେ ? ଆଗରୁ କୁହାଯାଇଛି ଯେ, ଶତ୍ରୁମାନଙ୍କ ଉପଦ୍ରବ ହେତୁ ଶ୍ରୀମନ୍ଦିରରୁ ପ୍ରାଚୀନ ପ୍ରସ୍ତର ବିଗ୍ରହମାନ ଧ୍ୱଂସ ହୋଇଥିଲେ । ସେତେବେଳେ ମହାରାଜା ନରସିଂହ ଦେବ (୨ୟ) ସୁଦୂର ରେମୁଣା-କଟକ (ବାଲେଶ୍ୱର) ଓ ଭୈରବ-କଟକ (ମୟୂରଭଞ୍ଜ)ରେ ରହିଥାନ୍ତି । ତାଙ୍କ ଅନୁପସ୍ଥିତି କାଳରେ ଭାନୁଦେବ ହିଁ ରାଜଧାନୀ ବାରାଣସୀ କଟକରେ ରହି ରାଜ୍ୟର ଭଲମନ୍ଦ ବୁଝୁଥାନ୍ତି । ଏଣୁ ପୁରୁଷୋତ୍ତମ କ୍ଷେତ୍ର ତଥା ଶ୍ରୀମନ୍ଦିରର ସୁରକ୍ଷାପାଇଁ କେହି ନଥିବାର ସୁବିଧା ପାଇ ମୁସଲମାନ ସୈନ୍ୟ ପୁରୀକୁ ଆସି ଘୋର ଉପଦ୍ରବ କରିଥିବା ସମ୍ଭବ । ଏହା ଫଳରେ ଶ୍ରୀମନ୍ଦିର ଓ ଦେବଦେବୀଙ୍କ ବିଗ୍ରହମାନ କେବଳ ଯେ ଧ୍ୱଂସ ହୋଇଥିଲେ ତା' ନୁହେଁ, ବରଂ ଶ୍ରୀକ୍ଷେତ୍ର ମଧ୍ୟ ଜନଶୂନ୍ୟ ହୋଇଥିଲା । ଶ୍ରୀମନ୍ଦିର ସେବକମାନେ ପ୍ରାଣ ବିକଳରେ ଯେ ଯୁଆଡ଼େ ପଳାୟନ କରିଥିଲେ । ଏପରି ଏକ ଦୂର-ପନେୟ ଦୁର୍ଘଟଣାର ଖବର ପାଇ, ବାରାଣସୀ-କଟକରୁ ଭାନୁଦେବ କେତେକ ସୈନ୍ୟ ସହ ଳଶ୍ବସ୍ୱରେ ପୁରୀକୁ ଯାଇଥିବା ସମ୍ଭବ । ସେହି ଖବର ମଧ୍ୟ ସୁଦୂର ଭୈରବ-କଟକରେ ପହଞ୍ଚିବାରୁ ମହାରାଜା ନରସିଂହ ଦେବ ସେଠାରୁ

(୪) Ain-I-Akbari, Vol. II, P. 128 f.

ପ୍ରତ୍ୟାଗମନ କରି ସର୍ବପ୍ରଥମେ ତାଙ୍କ ଧର୍ମ-ଗୁରୁ ନରହରି ତୀର୍ଥଙ୍କ ସଙ୍ଗେ ପରାମର୍ଶ କରିବାକୁ ଶ୍ରୀକୂର୍ମ କ୍ଷେତ୍ରକୁ ଯାତ୍ରା କଲେ । ଗୁରୁଙ୍କ ଉପଦେଶ କ୍ରମେ ଶ୍ରୀମନ୍ଦିରରେ 'ଦାରୁବ୍ରହ୍ମ' ସ୍ୱରୂପୀ ଶ୍ରୀଜଗନ୍ନାଥଙ୍କ ଦାରୁବିଗ୍ରହ ଗଠନପାଇଁ ବ୍ୟବସ୍ଥା କରାଗଲା । କେବଳ ସେତିକି ନୁହେଁ, ଶ୍ରୀମନ୍ଦିରକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବାପାଇଁ ବଳିଷ୍ଠ ଆଦିବାସୀ ଶବରମାନଙ୍କୁ ସେଠାରେ ନିଯୁକ୍ତ କରାଗଲା । ଆଉ ମଧ୍ୟ ସେମାନଙ୍କର ମୁଖ୍ୟ ବାସସ୍ଥାନ ମହେନ୍ଦ୍ର ପର୍ବତରୁ ମୂର୍ତ୍ତି ଗଠନପାଇଁ ନିମ୍ବକାଷ୍ଠ ସମୁଦ୍ର ପଥରେ ପୁରୁଷୋତ୍ତମ କ୍ଷେତ୍ରକୁ ଆଣିବାର ବ୍ୟବସ୍ଥା ମଧ୍ୟ ହେଲା । ତେଣୁ ଶବରମାନେ ଅତି ଉତ୍ସାହର ସହ ମହେନ୍ଦ୍ର ପର୍ବତରେ ଅନୁସନ୍ଧାନ କରି କୌଣସି ଏକ ଶଙ୍ଖ-ଚକ୍ର ଚିହ୍ନ ଥିବା ନିମ୍ବବୃକ୍ଷକୁ କାଟି ସେଥିରୁ ପବିତ୍ର ଦାରୁ ଗଣ୍ଡିମାନ ପର୍ବତ ଶିଖରରୁ ଗଡ଼ାଇ ଯେଉଁ ପଥରେ ତଳକୁ ଓହ୍ଲାଇ ଥିଲେ, ସେହି ପାର୍ବତୀୟ ପଥ ଅଦ୍ୟାପି 'ଦାରୁବ୍ରହ୍ମ' ନାମରେ ଅଭିହିତ ହେଉଛି । ମହେନ୍ଦ୍ର-ଶିଖରରେ ପର୍ଶୁରାମଙ୍କ ଆଶ୍ରମଥିବା ବିଷୟ ପୌରାଣିକ ଆଖ୍ୟାନରୁ ଜଣାଯାଏ । ସେଠାରେ ପର୍ଶୁରାମ-କୁଣ୍ଡ ଥିବା ଦେଖାଯାଏ । ପ୍ରାଚୀନ କାଳରେ ତାହା ପୁଣ୍ୟ ବସ୍ତୁ କ୍ଷେତ୍ର ରୂପେ ମାଠର ବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ପ୍ରତିଷ୍ଠା କରାଯାଇଥିଲା । ପରେ କଳିଙ୍ଗର ଗଙ୍ଗବଂଶୀୟ ରାଜାମାନେ ସେଠାରେ କେତେକ ଶୈବମନ୍ଦିର ନିର୍ମାଣ କରି ଗୋକର୍ଣ୍ଣେଶ୍ୱର (ଶିବ)ଙ୍କୁ ତାଙ୍କ ଇଷ୍ଟଦେବତା ରୂପେ ଆରାଧନା କଲେ । ସୁତରାଂ ସେହି ପବିତ୍ର-କ୍ଷେତ୍ରରୁ 'ଦାରୁ-ବ୍ରହ୍ମ'ଙ୍କୁ ଆଣିବା ସକାଶେ ଗୁରୁ ନରହରି ତୀର୍ଥଙ୍କ ଉପଦେଶ କ୍ରମେ ଶବରମାନେ ସିନ୍ଧୁ-ପଥରେ ନୀଳାଚଳକୁ ଦାରୁ ଗଣ୍ଡିମାନ ଭସାଇ ଆଣିଥିଲେ । ଅତ୍ୟନ୍ତ କୋଳାହଳ ଏବଂ ଉତ୍ସାହରେ ମହେନ୍ଦ୍ର ତନୟା ନଦୀରେ ହେହି ପର୍ବତର ପାଦ ଦେଶରୁ ନଦୀରେ ଭସାଇ ଦାରୁବ୍ରହ୍ମଙ୍କୁ ବାଲୁଣାବନ୍ଦରଠାକୁ ଆଣି ସେଠାରୁ ସିନ୍ଧୁ ଗର୍ଭରେ ନେବା ଦୃଶ୍ୟ ବୋଧହୁଏ ଋଗ୍‌ବେଦର ଭାଷ୍ୟ ଲେଖିବାକୁ ଯାଇ ଖ୍ରୀ: ୧୪ଶ. ଶତାବ୍ଦୀରେ ସାୟଣାଚାର୍ଯ୍ୟ ତାଙ୍କ ଗ୍ରନ୍ଥରେ ଲେଖିଛନ୍ତି । କେତେକ ପଣ୍ଡିତଙ୍କ ମତରେ ସାୟଣାଚାର୍ଯ୍ୟ ପ୍ରାୟ ୧୩୬୦ ଖ୍ରୀଷ୍ଟାବ୍ଦରେ ଋଗ୍‌ବେଦ ଭାଷ୍ୟ ଲେଖିଥିଲେ । (*) 'ଋଗ୍‌ବେଦ-ସୂକ୍ତ'ରେ ଥିବା 'ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷଂ ତଦାରଭସ୍ୱ ଦୁର୍ହଣୋତେନ ଗଚ୍ଛ ପର ସ୍ତରମ୍' । (**) ଭାଳରେ ଏହି ସୂକ୍ତି

(*) The Cult of Jagannath and the Regional Tradition of Orissa, P. 163.

(**) ଋଗ୍‌ବେଦ-୧୦-୧୫୫-୩ ।

ଶ୍ରୀଜଗନ୍ନାଥଙ୍କ ଦାରୁବ୍ରହ୍ମ ପ୍ରତି ପ୍ରଯୁଜ୍ୟ କରି ନିଜେ ମଧ୍ୟ ତାହା ସନ୍ଦେହ କରିଥିବା ତାଙ୍କ ଉକ୍ତିରୁ ଜଣାଯାଏ । କାରଣ ଶଂସିତ ବୈଦିକ ସୂକ୍ତଟି ଅନ୍ୟ ପଦଙ୍କର ଅର୍ଥ ବୋଧ କରୁଛି । ୧୪ଶ: ଶତାବ୍ଦୀ ପ୍ରଥମାର୍ଦ୍ଧରେ ଶାସ୍ତ୍ରାଗ୍ରହୀ ଦାରୁବ୍ରହ୍ମଙ୍କ ସମ୍ବନ୍ଧରେ ଉଠାଇ ନେବା ହୁଏତ ସେ ଦେଖିଥିବା ସୁନିଶ୍ଚିତ ।

'ମାଦଳାପାଞ୍ଜି'ରେ ଗୋଟିଏ କିମ୍ବଦନ୍ତୀ ଅଛି । ତା ହେଉଛି 'ଦାରୁ ବ୍ରହ୍ମ' ବାଙ୍କି-ମୁହାଣଠାରେ ପହଞ୍ଚିଲା ପରେ ସେଠାରୁ ତାଙ୍କୁ ଉଠାଇ କୂଳକୁ ଆଣିବାପାଇଁ କେହି ସମର୍ଥ ହେଲେ ନାହିଁ । ତେଣୁ ରାଜାଙ୍କୁ ସ୍ୱପ୍ନରେ ମହାପ୍ରଭୁଙ୍କ ଆଜ୍ଞା ହେବାରୁ ବସୁ ଶବରର ବଂଶଧରଙ୍କୁ ଲଗାଇ ଦାରୁବ୍ରହ୍ମ କୂଳକୁ ଅଣାଗଲା ଏବଂ ତାଙ୍କର ବିଗ୍ରହମାନ ଗଠିତ ହେଲେ । ଶ୍ରୀବିଗ୍ରହଙ୍କ ନାଭି ସ୍ଥଳରେ ବୋଧହୁଏ ଶ୍ରୀକୂର୍ମରୁ ନରସିଂହ ଆଣିଥିବା ଶାଳଗ୍ରାମ-ଶିଳା ସ୍ଥାପନ କରି ମୂର୍ତ୍ତିମାନଙ୍କ 'ନବକଳେବର' ବିଧି ସମ୍ପନ୍ନ ହେଲା । (×) ଯଥା ବିହିତ ଭାବେ ବ୍ରାହ୍ମଣ ଓ ପଣ୍ଡିତମାନଙ୍କ ଉପସ୍ଥିତିରେ ମୂର୍ତ୍ତିମାନଙ୍କର ପ୍ରତିଷ୍ଠା କର୍ମ ସମାପନ ହୋଇଥିବା ସମ୍ଭବ । ଏ ସମସ୍ତ କାର୍ଯ୍ୟ ପୂର୍ଣ୍ଣ କରିବାକୁ ପ୍ରାୟ ଦୁଇ ବା ତିନି ବର୍ଷ ଲାଗିଥିବ ବୋଲି ଜଣାଯାଏ ।

ଆଗରୁ କୁହାଯାଇଛି ଯେ, ନରସିଂହ ଦେବଙ୍କ ଜୀବିତ କାଳରେ, ୧୩୦୫ ଖ୍ରୀଷ୍ଟାବ୍ଦରେ ତାଙ୍କ ପୁତ୍ର ଭାନୁଦେବ (୨ୟ)ଙ୍କର ରାଜ୍ୟାଭିଷେକ ସମ୍ପନ୍ନ ହୋଇଥିଲା । ତାଙ୍କ ରାଜତ୍ୱର ୩ୟ ଅଙ୍କ ସିଂହାଚଳ ମନ୍ଦିରର ଏକ ୧୩୦୬ ଖ୍ରୀଷ୍ଟାବ୍ଦର ଶିଳା-ଲେଖରେ ଖୋଦିତ ହୋଇଛି । (*) କିନ୍ତୁ ୧୩୦୮ ଖ୍ରୀଷ୍ଟାବ୍ଦ ଠାରୁ ଏକାଧିକ ଥର ଶ୍ରୀଜଗନ୍ନାଥ ଓ ଶ୍ରୀପୁରୁଷୋତ୍ତମଙ୍କ ଅଙ୍କ ଭାନୁଦେବଙ୍କ ରାଜତ୍ୱ କାଳରେ ବ୍ୟବହୃତ ହେଉଥିଲା । ଏହାର ପ୍ରମାଣ ସ୍ୱରୂପ ଶ୍ରୀକୂର୍ମ ମନ୍ଦିରର ଏକ ଅଭିଲେଖରେ "ଶ୍ରୀଜଗନ୍ନାଥ ଦେବ"ଙ୍କ ବିଜୟରାଜ ଖ୍ରୀ: ୧୩୧୦ର ସମ୍ବତ୍ସର ୩ ଶ୍ରାଙ୍କ (ଅଙ୍କ) ବୋଲି ଖୋଦିତ ହୋଇଛି । (**) ସେହିପରି ସିଂହାଚଳ ମନ୍ଦିରର ଏକ ଶିଳାଲେଖରେ ଖୋଦିତ ହୋଇଛି, "ଶକ ବରୁଷଂ କୁଲୁ ୧୨୪୧

---

(×) ଶ୍ରୀକୂର୍ମ ମନ୍ଦିରରେ ବହୁ ସଂଖ୍ୟାରେ ଶାଳଗ୍ରାମ ସଂଗୃହୀତ ହୋଇ ରହିଛି ।

(*) S.I.I. Vol VI No. 1179. Ins or Vol, Pt. i, P. 359f.

(**) Ibid Vol V. No. 1214. Ibid p. 368-369,

୧୩୧୦) × × ଶ୍ରୀଦେବଦେବ ଶ୍ରୀଜଗନ୍ନାଥଦେବ"ଙ୍କର ବିଜୟରାଜ ସମ୍ବତ୍ସର ୧୩"ବୋଲି ଖୋଦିତ ହୋଇଥିବା ଦେଖିବାକୁ ମିଳେ । (*)

ମହାପ୍ରଭୁ ଶ୍ରୀପୁରୁଷୋତ୍ତମଙ୍କ ସର୍ବପ୍ରଥମ 'ଶ୍ରୀଜଗନ୍ନାଥ' ନାମ ଦୁଇଟି ଶିଳାଲେଖରୁ ପ୍ରକଟିତ ହୋଇଛି । କଳିଙ୍ଗରେ ଯେଉଁ ସମୟରେ ଏହି ନାମ ପ୍ରଚଳିତ ଥିଲା, ଉତ୍କଳରେ ସେତେବେଳେ ଶ୍ରୀପୁରୁଷୋତ୍ତମଙ୍କ ନାମରେ ହିଁ ଅଙ୍କ ଗଣିତ ହେଉଥିଲା । ଏଥିର ସ୍ପଷ୍ଟ ନିଦର୍ଶନ ପଣ୍ଡାଖି ମଠରୁ ପ୍ରାପ୍ତ ଭାନୁଦେବଙ୍କର ଗୋଟିଏ ତାମ୍ର ଶାସନରୁ ପ୍ରମାଣିତ ହୁଏ । ସେହି ତାମ୍ର ଶାସନଟି ୧୩୧୨ ଖ୍ରୀଷ୍ଟାବ୍ଦ (୧୨୩୪ ଶକାବ୍ଦ)ରେ ଲେଖାଅଛି 'ଶ୍ରୀପୁରୁଷୋତ୍ତମଦେବସ୍ୟ ପ୍ରବର୍ଦ୍ଧମାନ ବିଜୟରାଜ୍ୟେ ସପ୍ତମଅଙ୍କେ ଅଭିଲିଖ୍ୟମାନେ ଧନୁ-କୃଷ୍ଣନବମ୍ୟାଂ ଶୌରିବାରେ ଶ୍ରୀପୁରୁଷୋତ୍ତମ-କଟକେ ଦକ୍ଷିଣମହୋଦଧିତୀରେ ବୀରଶ୍ରୀ ଭାନୁଦେବରାଉତ୍ତବର୍ମଣସ୍ୟାସୁରାରୋଣୌଂଶ୍ୱର୍ଯ୍ୟାଭିବୃଦ୍ଧୟେ... ।'

ଏହି ତାମ୍ରଶାସନର ଅନୁପାତିକ କାଳ ହେଉଛି ୨୩ ଡିସେମ୍ବର, ୧୩୧୨ ଖ୍ରୀଷ୍ଟାବ୍ଦ । ଏଥିରୁ ଆଉ ମଧ୍ୟ ପ୍ରମାଣିତ ହେଉଛି ଯେ, ଶ୍ରୀପୁରୁଷୋତ୍ତମଙ୍କର ଦ୍ୱିତୀୟ ନାମ 'ଶ୍ରୀଜଗନ୍ନାଥ' ରୂପେ ଘୋଷିତ ହେଲା ବୋଧହୁଏ ଭିନ୍ନ ରୂପ ବହନ କରି ଯେତେବେଳେ 'ଦାରୁବ୍ରହ୍ମ' ସ୍ୱରୂପରେ ସେ ପ୍ରତିଷ୍ଠା ଲାଭ କଲେ । (+) ସେତେବେଳେ ଶ୍ରୀମନ୍ଦିରରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ପାଦପଦ୍ମରେ ମହାରାଜା ଭାନୁଦେବ ତାଙ୍କର ସମସ୍ତ ସାମ୍ରାଜ୍ୟ ସମର୍ପଣ କରି ନିଜେ ମହାପ୍ରଭୁଙ୍କ ସେବକ 'ରାଉତ' ଉପାଧି ଗ୍ରହଣ କରିଥିବା ବିଷୟ ସେହି ତାମ୍ର ଶାସନରେ ସ୍ପଷ୍ଟ ଉଲ୍ଲେଖ ହୋଇଛି ।

ସିଂହାଚଳ ମନ୍ଦିରର ଅନ୍ୟ ଏକ ଶିଳାଲେଖରେ ଖୋଦିତ ହୋଇଛି ଯେ ୧୨୩୬ ଶକାବ୍ଦ (=୧୩୧୫ ଖ୍ରୀଷ୍ଟାବ୍ଦ)ରେ 'ଦେବାଧିଦେବ ଶ୍ରୀପୁରୁଷୋତ୍ତମ ଦେବସ୍ୟ ପ୍ରବର୍ଦ୍ଧମାନ ବିଜୟ ରାଜ୍ୟ ସମ୍ବତ୍ସର ଶ୍ରାହି' (ଅଙ୍କ)ରେ ଏହି ମହା ସେନାପତିଙ୍କ ମହିଷୀ ଉମାଦେବୀ ନୃସିଂହନାଥଙ୍କ ଉଦ୍ଦେଶ୍ୟରେ ଦାନ

(*) Ibid Vol, VI No. 714, Ibid pp. 390-391 ff,

(+) D.C. Sircar. I.A.S.B, Vol XVII, (1951),
No. I P.P-19-26 ff.
S. N. Rajaguru, O. H. R. J. Vol. -IV Nos, i & xi, PP. 19-27 f.

କରିଥିଲେ । (×) ଅଭିଲେଖର ସଠିକ କାଳ ହେଉଛି ୧୩୧୫ ଖ୍ରୀଷ୍ଟାବ୍ଦ ଜାନୁଆରୀ, ୧୦ ତାରିଖ । ନମ୍ନରେ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କ 'ଅଙ୍କ' ବା 'ଶ୍ରାବ୍ଦ' କେଉଁ କେଉଁ ବର୍ଷମାନଙ୍କରେ ଅଭିଲେଖଗୁଡ଼ିକରୁ ମିଳିଛି, ସେଥିର ତାଲିକା ନମ୍ନରେ ଦିଆଗଲା—

୧- ଶ୍ରୀଜଗନ୍ନାଥ ଦେବ—
(ଶ୍ରୀ କୂର୍ମ ମନ୍ଦିର ଅଭିଲେଖ)—୩ଅଙ୍କ (କନ୍ୟା ମାସ)—ଶକାବ୍ଦ ୧୨୩୧ ଖ୍ରୀଷ୍ଟାବ୍ଦ ୧୩୦୯ ।

୨- ଶ୍ରୀପୁରୁଷୋତ୍ତମ ଦେବ—(*)
(ପଞ୍ଚାଙ୍ଗ-ମଠ ତାମ୍ରଶାସନ)—୭ଅଙ୍କ (ଧନୁ ମାସ)—ଶକାବ୍ଦ ୧୨୩୪ ଖ୍ରୀଷ୍ଟାବ୍ଦ ୧୩୧୨ ।

୩- ଦେବାଧିଦେବ ଶ୍ରୀପୁରୁଷୋତ୍ତମ ଦେବ—
(ସିଂହାଚଳ ମନ୍ଦିର ଅଭିଲେଖ)—୯ଶ୍ରାବ୍ଦ (ଅଙ୍କ) (ମକର ମାସ ଶୁକ୍ଳ ୧୦ମୀ) ଶକାବ୍ଦ୧୨୩୬, ଖ୍ରୀଷ୍ଟାବ୍ଦ ୧୩୧୫ (ଜାନୁଏରୀ)

୪- ଦେବାଧିଦେବ ଶ୍ରୀଜଗନ୍ନାଥ ଦେବ—
(ସିଂହାଚଳ ମନ୍ଦିର ଲିପି—୧୩ ଶ୍ରାବ୍ଦ (ଅଙ୍କ) (ବୃଷଭ ମାସ)—
ଶକାବ୍ଦ ୧୨୪୧, ଖ୍ରୀଷ୍ଟାବ୍ଦ ୧୩୧୯ ।

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ୧୩୦୫ ଖ୍ରୀଷ୍ଟାବ୍ଦରେ ଭାନୁଦେବ (୨ୟ)ଙ୍କ ରାଜ୍ୟାଭିଷେକର ପ୍ରାୟ ୩ବର୍ଷ ପରେ ଦେବାଧିଦେବ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ହେବାରୁ ଭାନୁଦେବ ମହାପ୍ରଭୁଙ୍କଠାରେ ରାଜ୍ୟ ସମ୍ପଦ ଉତ୍ସର୍ଗ କରି ତାଙ୍କର ଦାସ (ରାଉତ) ହୋଇ ରାଜ୍ୟ ପରିଚାଳନା କରିଥିଲେ । ଏଣୁ ସେହି କାଳ ମଧ୍ୟରେ ମହାପ୍ରଭୁ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ନାମରେ ଉତ୍କଳ ଏବଂ କଳିଙ୍ଗରେ 'ଅଙ୍କ' (ଶ୍ରାବ୍ଦ) ପ୍ରବର୍ତ୍ତିତ ହେଲା । ସେଥିର ଆରମ୍ଭ କାଳ ୧୩୦୮ ଖ୍ରୀଷ୍ଟାବ୍ଦ ହୋଇଥିବାରୁ ସେହି ବର୍ଷ ହିଁ ଶ୍ରୀମନ୍ଦିରରେ ଦାରୁ ବିଗ୍ରହଙ୍କ ସର୍ବପ୍ରଥମ 'ନବକଳେବର' ତଥା ମୂର୍ତ୍ତିମାନଙ୍କର ପ୍ରତିଷ୍ଠାବର୍ଷ ବୋଲି

---

(×) S.I.I. Vol. VI, No. 038, Ins, or. Vol. V, pt-ii, P-385.

(*) ଡଃ. ମହତାବଙ୍କ "ଓଡ଼ିଶା ଇତିହାସ' (ପୃ-୧୯୨)ରେ ଭୁଲରେ 'ଭାନୁଦେବଙ୍କ ୭ ଅଙ୍କ' ବୋଲି ଲେଖାଅଛି ।

ଆମ୍ଭେ ସ୍ଥିର କରିପାରୁ । ଏ ଦୃଷ୍ଟିରୁ ବିଗ୍ଭର କଲେ ଜଣା ଯାଉଛୁ ଯେ, ଆଜକୁ ୬୮୮ ବର୍ଷ ପୂର୍ବେ ନବକଳେବର ହୋଇଥିଲା ।

ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ନାମରେ ଅଙ୍କ କାଟିବା ପ୍ରଥା ଭାନୁଦେବଙ୍କ ଜୀବିତକାଳ ୧୩୧୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରଚଳିତ ହୋଇଥିଲା । କିନ୍ତୁ ତାଙ୍କ ପୁତ୍ର ନରସିଂହଦେବ (୩ୟ) ୧୩୧୭ ବା ୧୩୧୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କଲାପରେ ରାଜାଙ୍କ ନାମରେହିଁ 'ଶ୍ରାବ' ପ୍ରଚଳିତ ହେଲା । ଶ୍ରୀକୂର୍ମ ମନ୍ଦିରସ୍ଥ ଗୋଟିଏ ଶିଳାଲେଖରେ 'ପ୍ରତାପ ବୀର ଶ୍ରୀ ନରସିଂହ ଦେବସ୍ୟ ପ୍ରବର୍ଦ୍ଧମାନ ବିଜୟରାଜ୍ୟ ସଂବତ୍ସର ୨ଶ୍ରାବ ବୃଷଭ ଶୁକ୍ଳ ପୌର୍ଣ୍ଣମୀ ସୋମବାର' ଅର୍ଥାତ୍ ୧୩୨୮, ୨ମ ମାସ, ୨୩ ତାରିଖ ସୋମବାରଦିନ ଖୋଦିତ ହୋଇଥିଲା । (+) ସୁତରାଂ ୧୩୦୮-୧୩୨୮ ଖ୍ରୀଷ୍ଟାବ୍ଦର ମଧ୍ୟବର୍ତ୍ତୀ ୨୦ବର୍ଷ ପର୍ଯ୍ୟନ୍ତ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ଅଙ୍କ ବ୍ୟବହୃତ ହୋଇ ପରବର୍ତ୍ତୀ କାଳରେ ତାହା ପରିହାର କରାଗଲା । ତେଣୁ ମହାପ୍ରଭୁଙ୍କର ପ୍ରଥମ 'ନବକଳେବର' ହେବା ପରେ ପ୍ରାୟ ୨୦ ବର୍ଷ ଯାଏ 'ଦାରୁବ୍ରହ୍ମ' ପ୍ରତିମା ନିର୍ଣ୍ଣିତ ଭାବେ ଶ୍ରୀମନ୍ଦିରରେ ଅକ୍ଷୁଣ୍ଣ ହୋଇ ପୂଜିତ ହେଉଥିଲେ ଏବଂ ଶ୍ରୀମନ୍ଦିରରେ ପୁନଃଆ ଦିନ ପ୍ରଭୁଙ୍କ ନାମରେ 'ଅଙ୍କ' କାଟ ହେଉଥିଲା । ଏବେ ମଧ୍ୟ ସେହି 'ଅଙ୍କ' ହିସାବ ଶ୍ରୀମନ୍ଦିରରେ ଆଂଶିକ ପାଳିତ ହେଉଛି । ଦେବଦେବ ଶ୍ରୀଜଗନ୍ନାଥଙ୍କ ଅଙ୍କ ଗଣାହେବାର ହେତୁ ୨୦ ବର୍ଷ ମଧ୍ୟରେ ଭାନୁଦେବ (୨ୟ) ବହୁ ଦୁଃସାଧ୍ୟ ସାମରିକ ବ୍ୟାପାରରେ ଲିପ୍ତ ହୋଇ ତାଙ୍କ ରାଜ୍ୟର ସ୍ୱାଧୀନତା ସୁରକ୍ଷିତ କରିଥିଲେ । ଆଗରୁ କୁହାଯାଇଛି ଯେ, ଗିୟାସୁଦ୍ଦିନ ତୋଗଲକ୍ ୧୩୨୦ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ସିଂହାସନ ଅଧିକାର କରିବା ପୂର୍ବରୁ ଗିୟାସୁଦ୍ଦିନଙ୍କ ପୁତ୍ର ଜୁନା ଖାଁ ଓରଫ ଉଲୁଘ୍‌ଖାନ୍ ରାଜମହେନ୍ଦ୍ରୀରେ ଗୋଟିଏ ହିନ୍ଦୁ ମନ୍ଦିର ଭାଙ୍ଗିଦେଇ ସେଠାରେ ଏକ ମସ୍‌ଜିଦ ଗଢ଼ିଥିଲେ । ଗୋଦାବରୀ ତଟବର୍ତ୍ତୀ ରାଜମହେନ୍ଦ୍ରୀ ସେତେବେଳେ ଓଡ଼ିଶାର ଦକ୍ଷିଣ-ସୀମାକୁ ସୂଚିତ କରୁଥିଲା । ସେଠାରୁ ପ୍ରବଳ ପ୍ରତାପୀ ଗଜପତି ସାମ୍ରାଜ୍ୟ ଅଧିକାର କରିବା ସକାଶେ ଉଲୁଘ୍‌ଖାଁଙ୍କ ସାହସ ନଥିଲା । ତେଣୁ ନିଜେ ଗିୟାସୁଦ୍ଦିନ୍ ଦିଲ୍ଲୀରୁ ବିରାଟ ସୈନ୍ୟ ସହ ଉତ୍କଳ ସାମ୍ରାଜ୍ୟ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ । ଓଡ଼ିଶାର ଦକ୍ଷିଣରେ

---

(+) S. I. I Vol. V, No. 1195, I. O. Vol. V, pt.II, P. 401 f.

ପ୍ରବଳ ଯୁଦ୍ଧ ଅନୁଷ୍ଠିତ ହେଲା । ଉତ୍କଳ ଓ କଳିଙ୍ଗର ସୈନ୍ୟମାନେ ସେହି ଯୁଦ୍ଧରେ ଭାନୁଦେବଙ୍କ ଅଧକ୍ଷତାରେ ଯେଉଁ ବିଜୟ ଲାଭ କରିଥିଲେ, ତାହା ଉତ୍କଳର ଜଣେ କେହି ବିଶିଷ୍ଟ କବି ନିମ୍ନୋକ୍ତ ଶ୍ଳୋକଟି ଲେଖି ପରାକ୍ରମଶାଳୀ ଭାନୁଦେବଙ୍କ ପ୍ରଶସ୍ତି ଘୋଷଣା କରିଛନ୍ତି । ସଂଶିତ ଶ୍ଳୋକଟି ଚତୁର୍ଥ ନରସିଂହ ଦେବଙ୍କ କେନ୍ଦୂଲି ତାମ୍ର-ଶାସନରୁ ନିମ୍ନରେ ଉଦ୍ଧୃତ ହେଲା :—

ରାଜ୍ଞଃ ଯସ୍ୟ ଗସ୍ୟାଦ୍ଦୀନ ସମର ପ୍ରାରବ୍ଧଶୌର୍ଯ୍ୟଂ ଷତଃ
ପ୍ରୌଢ଼ାନେକ ନରେନ୍ଦ୍ର କନ୍ଧରଗଳତ୍ କୀଲାଲ ପୂର୍ଣ୍ଣାବନୀ ।
ତତ୍କାଳକ୍ଷତ ବକ୍ଷ ସାଂ କରିକୁଳାସ୍ତାଲୋତ୍ଥିତଃ ଶୋଣିତା
ଭାସ୍ୱଦ୍ୟାପି ଦିଗନ୍ତରେପି ଜଳସତ୍ ସନ୍ଧ୍ୟାନୁରାଗଚ୍ଛଳାତ୍ । (×)

ଏହି ଶ୍ଳୋକଟି ଭାନୁଦେବଙ୍କ ୧୩୧୨ ଖ୍ରୀଷ୍ଟାବ୍ଦରେ ଖୋଦିତ ପଞ୍ଜାବୀ-ମଠ-ତାମ୍ର ଶାସନରେ ଉଲ୍ଲେଖ ହୋଇ ନାହିଁ । ତେଣୁ ଗିୟାସୁଦ୍ଦିନ୍‌ଙ୍କ ସଙ୍ଗେ ତାଙ୍କ ଯୁଦ୍ଧ ସେହି ବର୍ଷ ପରେ ହୋଇଥିବାରୁ ଉକ୍ତ ଶ୍ଳୋକଟି ପରବର୍ତ୍ତୀ କାଳରେ ତାଙ୍କ ପ୍ରଶସ୍ତିରେ ଯୋଗ କରାଯାଇଥିଲା । ତଥାପି ପଞ୍ଜାବୀ-ମଠ ତାମ୍ର ଶାସନର କେତେକ ଶ୍ଳୋକରୁ ଅନୁମିତ ହେଉଛି ଯେ, ୧୩୧୨ ଖ୍ରୀଷ୍ଟାବ୍ଦ ପୂର୍ବରୁ ସ୍ଥଳଯୁଦ୍ଧ ଓ ଜଳଯୁଦ୍ଧ ସକାଶେ ଭାନୁଦେବ ପ୍ରସ୍ତୁତ ହେଉଥିଲେ । ସେଥିର ନିଦର୍ଶନ ନିମ୍ନୋକ୍ତ ଗୋଟିଏ ପ୍ରଶସ୍ତି ଶ୍ଳୋକରୁ ଜଣାଯାଉଛି ;—

କ୍ଷୀରୋଦଃ କେଳିକୂଲ୍ୟା ସ୍ମରହର ଶିଖରୀମଣ୍ଡପଃ ପ୍ରାନ୍ତକୃତ୍ୟ-
ସଂଖେଦାଲେଖାତ୍ ରଜାସ୍ୱାଃ କୁରୁକପରିହରଃ ସଂସଦଙ୍କାସନସ୍ୟ ।
ଇନ୍ଦୋର୍ମିଲ୍ଲବନ୍ଧଃ କୁସୁମସୁଷମିତଶ୍ଚନ୍ଦନୀ ପନ୍ନଭର୍ଙ୍ଗିଃ
ସ୍ୱର୍ଗଙ୍ଗାଯସ୍ୟ ସେ୍ତ୍ରାଜାକଲନସ୍ତନଜତା କୀର୍ତ୍ତି ବାମେକ୍ଷଣାୟାଃ ॥

ଏ ଶ୍ଳୋକଟି ବୋଧହୁଏ ଦ୍ୱିଅର୍ଥବାଚକ । ଗୋଟିଏ ଶିବଙ୍କ ସ୍ତୁତି, ଅନ୍ୟଟି ରାଜା ଭାନୁଦେବଙ୍କ ପ୍ରଶସ୍ତି ହୋଇପାରେ । ତଥାପି, ଠିକ ଅର୍ଥ ଜଣା ଯାଉନାହିଁ । ତେଣୁ ଏହି ଅଶୁଦ୍ଧ ଶ୍ଳୋକ ସହିତ ତାମ୍ରଶାସନରେ ଖୋଦିତ ହୋଇଥିଲେ ସୁଦ୍ଧା, ତାହା ଡଃ ଦିନେଶଚନ୍ଦ୍ର ସରକାର ପାଠ କରି ୧୯୫୧ ମସିହାରେ (J. A. S. B., Vol., XVII) ପ୍ରକାଶ କରିବାକୁ ଯାଇ ଏପରି

(×) O. H. R. J., Vol. V, No. I, (1656) p. 35 ff.

କେତେକ ଅଶୁଦ୍ଧ ଶ୍ଲୋକର ଅର୍ଥ ନକରି ଗ୍ରୁଡ଼ି ଦେଇଥିଲେ । ଏ ଲେଖକ ଓଡ଼ିଶାର ଐତିହାସିକ ଗବେଷଣା ପତ୍ରିକା (O. H. R. J., Vol XVII PP. 19-26)ରେ ସେହି ଶ୍ଲୋକଗୁଡ଼ିକର ପାଠ ପ୍ରକାଶ କରିଥିଲେ ।

ଯେ ଯାହା ହେଉ, ଏହି ଶ୍ଲୋକରେ ଭାନୁଦେବଙ୍କ କାର୍ଯ୍ୟକଳାପ ଯଦି ବର୍ଣ୍ଣିତ ହୋଇଥିବ, ତାହେଲେ ସେଥିରୁ ସୂଚିତ ହେଉଛି ଯେ, ମହେନ୍ଦ୍ରାଚଳ ଶିଖରରେ ଶୈବମନ୍ଦିର ଥିବା ସ୍ଥାନକୁ ଭାନୁଦେବ ତାଙ୍କ ମନ୍ତ୍ରଣା-ମଣ୍ଡପ ରୂପେ ବ୍ୟବହାର କରି ସେଠାରେ ଯୁଦ୍ଧହସ୍ତୀମାନଙ୍କ ସମାବେଶ ପରୀକ୍ଷା କରିଥିଲେ । (*) ଆଉ ମଧ ମହୋଦଧି (କ୍ଷୀରୋଦ)କୁ ତାଙ୍କର 'କେଳିକୁଲ୍ୟା', ଅର୍ଥାତ୍ ଯୁଦ୍ଧ କ୍ରୀଡ଼ାର ଏକ ସାଧାରଣ ପୁଷ୍କରିଣୀ ରୂପେ ବ୍ୟବହାର କରିଥିଲେ । ଏଣୁ ୧୩୧୨ ଖ୍ରୀଷ୍ଟାବ୍ଦରେ ଓ ତତ୍ପୂର୍ବରୁ ଯୁଦ୍ଧପାଇଁ ସେ ପ୍ରସ୍ତୁତ ହେଉଥିବା ପ୍ରସଙ୍ଗ ଏହି ଶ୍ଲୋକରୁ ଉପଲବ୍ଧ ହେଉଛି ।

ଗିୟାସୁଦ୍ଦିନ ତୋଗଲକ ନିଜେ ସୈନ୍ୟ ଚାଳନା କରି ବଙ୍ଗରେ ନାସିରୁଦ୍ଦିନଙ୍କୁ ସାହାଯ୍ୟ କରିଥିବା ପ୍ରସଙ୍ଗ ମୁସଲମାନ ଐତିହାସିକମାନେ ଲେଖିଛନ୍ତି । ବୋଧହୁଏ ବଙ୍ଗରୁ ଫେରି ସେ ଦିଲ୍ଲୀ ଯିବା ପୂର୍ବରୁ ଭାନୁଦେବଙ୍କ ସଙ୍ଗେ ତାଙ୍କର ଯୁଦ୍ଧ ସଂଘର୍ଷ ହୋଇଥିଲା । ସେ ପରାଜିତ ହୋଇଥିବା ପ୍ରସଙ୍ଗ ୧୩୧୨ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ଘଟଣା । ଏପରି ଏକ ମହାସମରର ଆଶଙ୍କା ହେତୁ ଭାନୁଦେବଙ୍କ ବିରାଟ ଯୁଦ୍ଧ ପ୍ରସ୍ତୁତି ଆଗରୁ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ମହାସମର କ୍ଷେତ୍ରରେ ଗିୟାସୁଦ୍ଦିନଙ୍କ ବହୁ ଯୋଦ୍ଧା ଓ ହସ୍ତୀ ରଣକ୍ଷେତ୍ରରେ ନିହତ ହୋଇଥିଲେ । ତେଣୁ ସେହି ରଣଭୂମିଟି ରକ୍ତରେ ଏପରି କର୍ଦ୍ଦମାକ୍ତ ହୋଇଥିଲା, ଯାହାକି କବିଙ୍କ ଭାଷାରେ ସନ୍ଧ୍ୟାକାଳର ମେଘରେ ପ୍ରତିଫଳିତ ସୂର୍ଯ୍ୟକିରଣ ଆଭା ଦେଖିଲେ ତାହା ସ୍ମରଣ ହୁଏ ।

ସେହି ଯୁଦ୍ଧ ପରେ, ଦୀର୍ଘ ୨୦୦ ବର୍ଷ ପର୍ଯ୍ୟନ୍ତ, ଅର୍ଥାତ୍ ୧୫୬୮ ଖ୍ରୀଷ୍ଟାବ୍ଦରେ ଉତ୍କଳର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ, ଶ୍ରୀଜଗନ୍ନାଥ ମନ୍ଦିର ଶତ୍ରୁ କବଳରୁ ସଂପୂର୍ଣ୍ଣ ମୁକ୍ତ ହୋଇ ମହାପ୍ରଭୁଙ୍କ ଯଥା-ବିହିତ ଭାବେ ଆରାଧନା ସମେତ ପର୍ବପର୍ବାଣି ଅନୁଷ୍ଠିତ ହେଉଥିଲା । ସେହି

(*) ମହେନ୍ଦ୍ରାଚଳ ଶିଖର ଦେଶରେ ଗଙ୍ଗବଂଶୀୟ ରାଜାମାନଙ୍କର ଗୋଟିଏ ଗିରିଦୁର୍ଗ ଥିବା ପ୍ରସଙ୍ଗ 'କଳିଙ୍ଗତ୍ତୁପାରଣି' ନାମକ ଗୋଟିଏ ପ୍ରାଚୀନ ତାମିଲ୍ କାବ୍ୟରେ ବର୍ଣ୍ଣିତ ହୋଇଛି ।

ଉତ୍ସବମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ 'ନବକଳେବର' ସର୍ବପ୍ରଧାନ କହିଲେ ଚଳେ । କାରଣ ସେଥିରେ ପ୍ରାଚୀନ 'ଦାରୁବ୍ରହ୍ମ'ଙ୍କ ବୈକୁଣ୍ଠ ଗମନ ଏବଂ ନୂତନ ବିଗ୍ରହଙ୍କ ଉପସ୍ଥାପନ ସମ୍ପନ୍ନ ହୋଇଥାଏ ।

ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଚତୁର୍ଦ୍ଧା ଦାରୁବିଗ୍ରହ ହେଉଛନ୍ତି : ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ । ସେହି ବିଗ୍ରହମାନ ଦାରୁରେ ପ୍ରସ୍ତୁତ ହୋଇଥିବାରୁ କିଛିକାଳ ପରେ ଧୀରେ ଧୀରେ କ୍ଷୟପ୍ରାପ୍ତ ହେବା ସ୍ୱାଭାବିକ । ତେଣୁ ପ୍ରାୟ ୧୨ ବା ୧୯ ବର୍ଷ ପରେ ସେହି ବିଗ୍ରହମାନଙ୍କୁ ବୈକୁଣ୍ଠସ୍ଥ କରି ନୂତନ ଦାରୁ ମୂର୍ତ୍ତି ଗଠନ କରିବା ଆବଶ୍ୟକ ହୁଏ । ସାଧାରଣତଃ ଅଧିକ ଆଷାଢ଼ ମାସ ଯେଉଁ ବର୍ଷ ହୁଏ, ସେବର୍ଷ 'ନବକଳେବର ଉତ୍ସବ' ଅନୁଷ୍ଠିତ ହେବା ବିଧି ରହିଛି । ଜ୍ୟେଷ୍ଠମାସ ପୌର୍ଣ୍ଣମୀ ତିଥିରେ ମହାପ୍ରଭୁଙ୍କ 'ସ୍ନାନ-ଯାତ୍ରା' ପରେ ଯଦି ଯୋଡ଼ା-ଆଷାଢ଼ ପଡ଼େ, ତେବେ ପ୍ରଭୁଙ୍କର ସ୍ନାନଯାତ୍ରା ପରେ ଯଥାବିହିତ ଭାବେ ବିଗ୍ରହମାନଙ୍କୁ 'ଅନବସର-ଗୃହ'ରେ ଆବଦ୍ଧ କରି ତିନିପକ୍ଷ, ଅର୍ଥାତ୍ ୪୫ ଦିନ ରଖା ଯାଇଥାଏ । ସେହି ଦୀର୍ଘସମୟ ମଧ୍ୟରେ 'ଦାରୁବ୍ରହ୍ମ' ପ୍ରତୀକ ନିମ୍ବ ବୃକ୍ଷକୁ ଶବର (ଦୟିତା) ମାନଙ୍କ ଦ୍ୱାରା ଅଣାଯିବା ପରେ ମୂର୍ତ୍ତିମାନଙ୍କ ଗଠନ କାମ ସମ୍ପୂର୍ଣ୍ଣ ହୋଇଥାଏ । ମୂର୍ତ୍ତି ଗଠନ ହେଉଥିବା ସେ ମାସର ନାମ ହୋଇଛି, 'ପୁରୁଷୋତ୍ତମମାସ' । ମୂର୍ତ୍ତିମାନଙ୍କ ଗଠନ ପରେ ତାହା ସାତପ୍ରସ୍ତ ପଟ୍ଟବସ୍ତ୍ରରେ ଆଚ୍ଛାଦିତ ହୋଇ ଚନ୍ଦନ ଓ ଅନ୍ୟ କେତେକ ପ୍ରଲେପରେ ମଣ୍ଡିତ ହୁଅନ୍ତି । ଶେଷରେ ମୂର୍ତ୍ତିମାନଙ୍କ ଚିତ୍ର କାମ ସଂପୂର୍ଣ୍ଣ ହୁଏ । ଏହାପରେ ରାଜଗୁରୁଙ୍କ ଦ୍ୱାରା 'ବନଯାଗ' (ହୋମ) ଓ ଚିତ୍ର-ଶ୍ରୀମୂର୍ତ୍ତି ପ୍ରତିଷ୍ଠା ବିଧି ସମାପନ ହୁଏ । (*) ଦ୍ୱିତୀୟୋକ୍ତ ବିଧି ଗୋପାଳ ଭଟ୍ଟଙ୍କ 'ହରିଭକ୍ତି ବିଳାସ' ଗ୍ରନ୍ଥରୁ ଉଦ୍ଧୃତ ବୋଲି କହିବା ଠିକ୍ ନୁହେଁ ବୋଲି ଡଃ ଗଙ୍ଗାଚରଣ ତ୍ରିପାଠୀ ଲେଖିଛନ୍ତି । ସେ ଯାହା ହେଉ, ସେ ଦୁଇଟି ବିଧି ନିଶ୍ଚିତ ଭାବେ ଖ୍ରୀ. ୧୪ଶ ଶତାବ୍ଦୀ ଆରମ୍ଭରେ ହିଁ ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିଲା । କାରଣ ଆମ୍ଭେ ଆଗରୁ କହିଥିବା ଐତିହାସିକ ତଥ୍ୟକୁ ଆଶ୍ରୟ କରି, ଶ୍ରୀମନ୍ଦିରରେ 'ଦାରୁବ୍ରହ୍ମ'ଙ୍କ ପ୍ରତିଷ୍ଠା ୧୩୦୮ ଖ୍ରୀଷ୍ଟାବ୍ଦରେ ହୋଇଥିବା ସ୍ଥିର କରାଯାଇଛି । 'ପ୍ରତିଷ୍ଠାପ୍ରଦୀପ'ର ଗ୍ରନ୍ଥକର୍ତ୍ତା ନରସିଂହ ବାଜପେୟୀଙ୍କ ଜୀବତକାଳ ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବୋଲି ଜଣାଯାଏ । ସେପରି

(*) ଏହି ବିଧି 'ପ୍ରତିଷ୍ଠା ପ୍ରଦୀପ'ର ନରସିଂହ ବାଜପେୟୀ ବୋଲି କୁହାଯାଏ । କିନ୍ତୁ ଡଃ ଗଙ୍ଗାଚରଣ ତ୍ରିପାଠୀ କହନ୍ତି ଯେ 'ବନଯାଗବିଧି' ଏକ ସ୍ୱତନ୍ତ୍ର ରଚନା । ତାହା 'ବନଯାଗ ବିଧି'ର ଅଂଶ ନୁହେଁ । (C. J. P. 226)

'ଦ୍ୱାରଭଣ୍ଡ ବଳାପ' ଗ୍ରନ୍ଥର ସମୟ ଖ୍ରୀ: ୧୭୦୦ର ପୂର୍ବବର୍ତ୍ତୀ ନୁହେଁ । ସୁତରାଂ ଏହି ବାଧ୍ୟଗୂଢ଼କ ବୋଧହୁଏ ଭୋଇ ବଂଶୀୟ ରାଜା ରାମଚନ୍ଦ୍ର ଦେବ (୧ମ)ଙ୍କ ରାଜତ୍ୱ କାଳରେ ଶ୍ରୀମନ୍ଦିରରେ ନୂତନ ଦେବ ବିଗ୍ରହମାନଙ୍କ ଗଠନ କରି ତାଙ୍କର ପ୍ରତିଷ୍ଠା ସଙ୍ଗେ 'ବନଯାଗ' କରିବା ବିଧି ପ୍ରବର୍ତ୍ତିତ ହୋଇଥିଲା । ଓଡ଼ିଶାର ସ୍ମୃତିକାର ଶମ୍ଭୁକର ବାଜପେୟୀଙ୍କ ପୁତ୍ର ବିଦ୍ୟାଧର ବାଜପେୟୀ ଲେଖିଥିବା 'ନିତ୍ୟାଗ୍ନିର-ପଦ୍ଧତି' ଅନୁସାରେ ଯଦି 'ବନଯାଗ'ବିଧି ଆଗରୁ ପ୍ରଚଳିତ ହୋଇଥିବ, ତା'ହେଲେ ମହାପ୍ରଭୁଙ୍କର ପ୍ରଥମ 'ନବକଳେବର' ବେଳେ ଦେବପ୍ରତିଷ୍ଠା ପାଇଁ 'ବନଯାଗ' ପଦ୍ଧତି ଖ୍ରୀ: ୧୪ଶ ଶତାବ୍ଦୀରେ ଅନୁସୃତ ହୋଇଥିବା ସମ୍ଭବ । କାରଣ, ବିଦ୍ୟାଧର ବାଜପେୟୀଙ୍କ ଜୀବତ କାଳ ଆଲୋଚନା କରିବାକୁ ଯାଇ ସ୍ୱର୍ଗତ କେଦାରନାଥ ମହାପାତ୍ର ଲେଖିଛନ୍ତି ଯେ, ତାହା ଖ୍ରୀ. ୧୩ଶ ଶତାବ୍ଦୀର ଶେଷ କିମ୍ବା ୧୪ଶ ଶତାବ୍ଦୀର ଆରମ୍ଭ କାଳ ହୋଇଥିବ । (×)

ଏଠାରେ କହିବା ଆବଶ୍ୟକ ଯେ, ଖ୍ରୀ. ୧୩ଶ ବା ୧୪ଶ ଶତାବ୍ଦୀରେ ଲେଖା ହୋଇଥିବା 'ସ୍କନ୍ଦ ପୁରାଣ-ଉତ୍କଳ ଖଣ୍ଡ'ରେ କିମ୍ବା ସେଥିର ଅଳ୍ପକାଳ ପରେ ଲେଖାଥିବା 'ନୀଳାଦ୍ରି-ମହୋଦୟ' ଏବଂ 'ଶ୍ରୀପୁରୁଷୋତ୍ତମ-ମାହାତ୍ମ୍ୟ' ଗ୍ରନ୍ଥମାନଙ୍କରେ ମହାପ୍ରଭୁଙ୍କର 'ନବକଳେବର-ଉତ୍ସବ' ବର୍ଣ୍ଣିତ ହୋଇନାହିଁ ।

ତଥାପି ଶାସ୍ତ୍ରଣାଗ୍ରହୀଙ୍କ ଜୀବତ କାଳରେ, ଅର୍ଥାତ୍ ଖ୍ରୀ: ୧୪ଶ ଶତାବ୍ଦୀରେ ସିନ୍ଧୁ ଗର୍ଭରେ 'ଦାରୁବ୍ରହ୍ମ'ଙ୍କୁ ଭସାଇ ଶ୍ରୀକ୍ଷେତ୍ରକୁ ଆଣିବା ପ୍ରସଙ୍ଗ ଆଗରୁ କୁହାଯାଇଛି । ତେଣୁ ସର୍ବପ୍ରଥମ 'ନବକଳେବର' ଅର୍ଥାତ୍ ଦାରୁବିଗ୍ରହମାନ ଶ୍ରୀମନ୍ଦିରରେ ଭାନୁଦେବ (୨ୟ)ଙ୍କ ରାଜତ୍ୱ କାଳରେ ପ୍ରତିଷ୍ଠିତ ହୋଇଥିଲେ ବୋଲି ଜଣାଯାଇଛି । ତେଣୁ ତାଙ୍କ ପ୍ରତିଷ୍ଠା ସକାଶେ ନିଶ୍ଚିତ ଭାବେ ଓଡ଼ିଶାର ସୁପ୍ରସିଦ୍ଧ ସ୍ମୃତିକାର ଶମ୍ଭୁକର ବାଜପେୟୀଙ୍କ ସ୍ମୃତି କିମ୍ବା ତାଙ୍କ ପୁତ୍ର ବିଦ୍ୟାଧର ବାଜପେୟୀଙ୍କ 'ନିତ୍ୟାଗ୍ନିର-ପଦ୍ଧତି' ଅନୁସାରେ ବ୍ରାହ୍ମଣ ପୁରୋହିତ (ରାଜଗୁରୁ)ଙ୍କ ଦ୍ୱାରା 'ବନଯାଗ' ସମ୍ପନ୍ନ କରି ଦେବବିଗ୍ରହମାନଙ୍କୁ ରତ୍ନସିଂହାସନରେ ସ୍ଥାପନ କରାଯାଇଥିବା ସମ୍ଭବ । ତଥାପି ଏ ସମ୍ବନ୍ଧରେ ଅଧିକ ଗବେଷଣା ଆବଶ୍ୟକ ବୋଲି ଆମ୍ଭେ ମନେକରୁ । କାରଣ 'ମାଦଳାପାଞ୍ଜି'ରୁ ଉଦ୍ଧୃତ 'ରାଜଭୋଗ' ପ୍ରସଙ୍ଗରେ 'ନବକଳେବର' ସମ୍ପର୍କରେ କେତେକ ବିଷୟ ଖ୍ରୀ. ୧୬ଶ ଶତାବ୍ଦୀରେ ବର୍ଣ୍ଣିତ ହୋଇଅଛି ।

'ନବକଳେବର'ର ଏକ ମୁଖ୍ୟ ପର୍ଯ୍ୟାୟ ଆରମ୍ଭ ହୋଇଥିଲା ୧୫୯୦ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଖୁର୍ଦ୍ଧାର ପ୍ରଥମ ଭୋଇବଂଶୀୟ ରାଜା ରାମଚନ୍ଦ୍ର ଦେବ

(×) Descriptive Catalogue of Orissa State Museum, Vol. I (Introduction).

ମାନସିଂହଙ୍କ ଦ୍ୱାରା ନବାଚତ ହୋଇ ଶ୍ରୀମନ୍ଦିରରେ ସଂସ୍କାର କାମ ଆରମ୍ଭ କଲେ । ତତ୍ ପୂର୍ବରୁ ବଙ୍ଗର ମୁସଲମାନ ସେନାପତି କଳାପାହାଡ଼ ଓଡ଼ିଶା ଆକ୍ରମଣ କରି ଶ୍ରୀବିଗ୍ରହମାନଙ୍କୁ ମନ୍ଦିରରୁ ନେଇ ଗଙ୍ଗା ତଟରେ ଦାହ କରିଥିଲା । ସେହି ଦିନଠାରୁ ପୂଜ୍ୟର ଶ୍ରୀମନ୍ଦିର ଦେବତା ଶୂନ୍ୟ ହୋଇଥିଲା । ରାଜା ରାମଚନ୍ଦ୍ର ଦେବ ନୂତନ ଦାରୁ ବିଗ୍ରହଙ୍କୁ ମନ୍ଦିରରେ ସ୍ଥାପନ କରିଥିବାରୁ ଓଡ଼ିଶାରେ ତାଙ୍କୁ 'ଦ୍ୱିତୀୟ-ଇନ୍ଦ୍ରଦ୍ୟୁମ୍ନ' ବୋଲି ପ୍ରଶଂସା କରାଗଲା ।

ଭାରତରେ ଅନ୍ୟ କୌଣସି ବିଷ୍ଣୁ ମନ୍ଦିରରେ ଏ ପ୍ରଥା ପ୍ରଚଳିତ ହୁଏ ନାହିଁ । କିନ୍ତୁ ଉତ୍କଳରେ ଶ୍ରୀପୁରୁଷୋତ୍ତମଙ୍କୁ ବହୁକାଳ ପୂର୍ବରୁ ସଜୀବ ଦେବତା ରୂପେ ଆରାଧନା କରାଯାଇଛି । ତେଣୁ ଖ୍ରୀ. ୧୨ଶ ଶତାବ୍ଦୀରେ ମହାରାଜା ଅନଙ୍ଗଭୀମ ଦେବ ପ୍ରସ୍ତର ବିଗ୍ରହଙ୍କୁ ପ୍ରତିଷ୍ଠା କରି ତାଙ୍କ ପାଦପଦ୍ମରେ ନିଜର ସମସ୍ତ ସମ୍ପଦ ସଙ୍ଗେ ସାମ୍ରାଜ୍ୟ ସମର୍ପଣ କରିଦେଇ ନିଜେ ତାଙ୍କର ଦାସତ୍ୱ ବରଣ କରିଥିଲେ । ସେହିପରି ଖ୍ରୀ: ୧୪ଶ. ଶତାବ୍ଦୀ ଆରମ୍ଭରେ ଭାନୁଦେବ (୨ୟ) ଦାରୁବ୍ରହ୍ମଙ୍କୁ ପ୍ରତିଷ୍ଠା କରି ଶ୍ରୀପୁରୁଷୋତ୍ତମଙ୍କ ଦାସ (ରାଉତ) ରୂପେ ରହିଥିଲେ । ଗଙ୍ଗବଂଶୀୟ ରାଜାମାନେ ବ୍ରାହ୍ମଣଙ୍କୁ ଶାସନ ଦାନ କରିବାକୁ ଯାଇ 'ଚତୁର୍ଦ୍ଦଶ ଭୁବନାଧୀଶ୍ୱର'ଙ୍କ ନାମରେ ତାମ୍ରଶାସନମାନ ଲେଖାଇ ଥିଲେ । ସୁତରାଂ ଉତ୍କଳରେ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କୁ ଏକ ସଜୀବ ଶ୍ରେଷ୍ଠ ଦେବତା ରୂପେ ପୂର୍ବରୁ ଉପାସନା କରାଯାଉଥିଲା । ତେଣୁ ମନୁଷ୍ୟମାନଙ୍କ ପରି ସେ ମଧ୍ୟ ଜନ୍ମ ଓ ମୃତ୍ୟୁ ମଧ୍ୟରେ ଆବଦ୍ଧ ଥିବା ସ୍ୱାଭାବିକ । ଗୀତାରେ ସେ ନିଜେ ଅର୍ଜୁନଙ୍କୁ କହିଥିଲେ—

"ଜାତସ୍ୟହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟ ଚ ।"

ଶ୍ରୀପୁରୁଷୋତ୍ତମଙ୍କ କଳେବର ଅବସାନ ଏବଂ 'ନବକଳେବର' (ଜନ୍ମ) ଉଦ୍‌ଭବ ଉତ୍ସବ ଶ୍ରୀମନ୍ଦିରରେ ଉତ୍କଳୀୟମାନେ ପାଳନ କରୁଛନ୍ତି । ଅଧିକନ୍ତୁ ସାଧାରଣ ମୃତବ୍ୟକ୍ତିଙ୍କ ପରିବାରମାନେ ଯେପରି ମୃତାହ ପାଳନ କରିଥାନ୍ତି, ସେପରି ଶ୍ରୀଜଗନ୍ନାଥଙ୍କ ବନ୍ଧୁସ୍ୱରୂପ ଦୟିତାମାନେ ମଧ୍ୟ ଶୁଦ୍ଧିକ୍ରିୟା ସମ୍ପନ୍ନ କରନ୍ତି । ମହାପ୍ରଭୁଙ୍କ ପୁରୁଣା କଳେବର ଶ୍ରୀମନ୍ଦିରରେ ଥିବା 'କୋଇଲି ବୈକୁଣ୍ଠ'ରେ ସମାଧିସ୍ଥ ହୁଅନ୍ତି । ଏହି ନୀତି ଅତି ଗୋପନରେ ଅଧ ରାତ୍ରିରେ ସମାହିତ ହୁଏ । ପ୍ରାଚୀନ ବିଗ୍ରହରେ ସ୍ଥାପିତ ହୋଇଥିବା ଅସ୍ଥିସ୍ୱରୂପୀ 'ବ୍ରହ୍ମ' (ଶାଳଗ୍ରାମ ?)ଙ୍କୁ ସେହି ଦାରୁ ବିଗ୍ରହରୁ ବାହାର କରି ନୂତନ ଦାରୁ ବିଗ୍ରହରେ ସ୍ଥାପନ କରାଯାଏ । ବୋଧହୁଏ 'ନବକଳେବର' ବିଗ୍ରହଙ୍କ ପ୍ରାଣ ପ୍ରତିଷ୍ଠା ସେଥିରେ ସମ୍ପନ୍ନ ହୋଇଥାଏ ।

□ □

# ଚୋଡ଼ଗଙ୍ଗ ଓ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଏବଂ ନବକଳେବର

ଚୋଡ଼ଗଙ୍ଗଙ୍କ ପିତା ରାଜରାଜ ଦେବ ଆଠ ବର୍ଷ ମାତ୍ର କଳିଙ୍ଗରେ ରାଜତ୍ୱ କରି ଅଳ୍ପ ବୟସରେ ମୃତ୍ୟୁ ବରଣ କରିଥିଲେ । ତାଙ୍କ ରାଜତ୍ୱ କାଳ ଖ୍ରୀ: ୧୦୭୦ରୁ ୧୦୭୭ରେ ସମ୍ପନ୍ନ ହୋଇଥିଲା । ତାଙ୍କ ରାଜତ୍ୱର ପ୍ରାରମ୍ଭ କାଳରେ ଚୋଳର ମହାରାଜା ରାଜେନ୍ଦ୍ର ଚୋଳ—କୁଲୋତ୍ତୁଙ୍ଗ (୧ମ)ଙ୍କ ସଙ୍ଗେ ଯୁଦ୍ଧ ହୋଇଥିଲା । ସେଥିରେ କୁଲୋତ୍ତୁଙ୍ଗ ପରାଜିତ ହୋଇ ରାଜାରାଜ ଦେବଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । ସେହି ସନ୍ଧି ସର୍ତ୍ତ ଅନୁସାରେ ଚୋଳ ସମ୍ରାଟଙ୍କ କନ୍ୟା ରାଜସୁନ୍ଦରୀଙ୍କୁ ରାଜରାଜଙ୍କ ହସ୍ତରେ ସମର୍ପଣ କରାଗଲା । ରାଜସୁନ୍ଦରୀଙ୍କ ଗର୍ଭରୁ ୧୦୭୨ ଖ୍ରୀଷ୍ଟାବ୍ଦଠାରୁ ୧୦୭୭ ସାଲରେ ତାଙ୍କ ପତି କଳିଙ୍ଗର ମହାରାଜା ରାଜରାଜଙ୍କ ମୃତ୍ୟୁ ବେଳକୁ ଦୁଇଟି ପୁତ୍ର ସନ୍ତାନ ଜନ୍ମି ଥିଲେ । ପ୍ରଥମ ଓ ଦ୍ୱିତୀୟ ପୁତ୍ରଙ୍କ ନାମ, ଯଥାକ୍ରମେ ଥିଲା, ଚୋଡ଼ଗଙ୍ଗ ଓ ପେର୍ମାଡ଼ି ଦେବ (ପରମର୍ଦ୍ଦି ଦେବ) । ସେହି ସମୟରେ କଳିଙ୍ଗର ବିଭିନ୍ନ ସ୍ଥଳର ଶତ୍ରୁ ରାଜାମାନେ ସେହି ଅରାଜକ କିନ୍ତୁ ବିଭବଶାଳୀ ସାମ୍ରାଜ୍ୟ ଅଧିକାର କରିବାକୁ ଚେଷ୍ଟିତ ହୋଇଥିଲେ । ତେଣୁ ଅନାଥିନୀ ବିଧବା ରାଣୀ ରାଜସୁନ୍ଦରୀ ଶିଶୁ ପୁତ୍ରଙ୍କ ପ୍ରାଣ ରକ୍ଷା ସକାଶେ ନିଜ ଭ୍ରାତା ବୀରଚୋଡ଼ଙ୍କ ସାହାଯ୍ୟ ଭିକ୍ଷା କରିଥିବା ଜଣାଯାଏ । ଚୋଳ ସାମ୍ରାଜ୍ୟର ବୃଦ୍ଧ ରାଜା କୁଲୋତ୍ତୁଙ୍ଗଙ୍କ ପୁତ୍ରମାନଙ୍କ ମଧ୍ୟରେ ବୀରଚୋଡ଼ ଥିଲେ ଜଣେ ପରାକ୍ରମଶାଳୀ, ପଣ୍ଡିତ ଓ ରାଜନୀତିଜ୍ଞ । ତେଣୁ କୁଲୋତ୍ତୁଙ୍ଗ ତାଙ୍କଠାରେ ବେଙ୍ଗି ରାଜ୍ୟର ଶାସନ ଭାର ସମର୍ପଣ କରିଥିଲେ । ବେଙ୍ଗି ରାଜ୍ୟର ରାଜଧାନୀ କଳିଙ୍ଗ ନଗରର ନିକଟରେ ଥିବାରୁ ଭଗ୍ନୀ ରାଜସୁନ୍ଦରୀଙ୍କ ଅନୁରୋଧ ଅନୁସାରେ ସେ ତାଙ୍କ ଶିଶୁ ଭାଗିନେୟଙ୍କୁ ସୁରକ୍ଷିତ କରି କଳିଙ୍ଗ ସାମ୍ରାଜ୍ୟର ଅରାଜକତା ଦୂର କରିବାକୁ ପ୍ରଥମେ ଚେଷ୍ଟା କଲେ । କଳିଙ୍ଗ ରାଜ୍ୟ 'ଅରାଜକ' ନୁହେଁ, ଏହା ପ୍ରଥମେ ପ୍ରଘୁଷିତ ହେବା ଆବଶ୍ୟକ । ତା'ହେଲେ, କଳିଙ୍ଗର ସାମନ୍ତ ରାଜାମାନେ ବିବ୍ରତ ନହୋଇ ରାଜ୍ୟ ସୁରକ୍ଷାରେ ବ୍ରତୀ ହେବେ । ସୁତରାଂ ଶିଶୁ ଚୋଡ଼ଗଙ୍ଗଙ୍କୁ ରାଜସିଂହାସନରେ ଅଭିଷିକ୍ତ କରାଇବା ଆବଶ୍ୟକ । କିନ୍ତୁ ଧର୍ମଶାସ୍ତ୍ରାନୁସାରେ ରାଜାଙ୍କ ଅଭିଷେକ ପାଇଁ ତାଙ୍କ ପାର୍ଶ୍ୱରେ ରାଣୀ ମଧ୍ୟ ଅଭିଷିକ୍ତ ହେବା ଆବଶ୍ୟକ ।

ତେଣୁ ରାଜନୀତିଜ୍ଞ ପଣ୍ଡିତ ବୀରଶ୍ରେଷ୍ଠ ନିଜର ଶିଶୁ କନ୍ୟା 'ଗୁଣ୍ଡି ଶ୍ରେଷ୍ଠ' (ଝିଅ କନ୍ୟା)ଙ୍କୁ ଚୋଡ଼ଗଙ୍ଗଙ୍କ ରାଣୀ ରୂପେ ସିଂହାସନରେ ବସାଇ ବିରାଟ ଉତ୍ସବ କରି ଅଭିଷେକ ସମ୍ପନ୍ନ କଲେ । ସେହି ଅଭୂତପୂର୍ବ ଉତ୍ସବରେ ଶୈଶବ ରାଜା ଓ ରାଣୀଙ୍କ ଅଭିଷେକରେ ଯୋଗ ଦେବାକୁ କଳିଙ୍ଗର ସାମନ୍ତ ରାଜାମାନେ ଉପଢୌକନମାନ ଆଣି କଳିଙ୍ଗ ନଗରରେ ଉପସ୍ଥିତ ହୋଇଥିଲେ । ତାମ୍ର ଶାସନମାନଙ୍କରେ ସେହି ଅଭିଷେକ ସମ୍ପର୍କରେ ଲେଖାଅଛି :

"ଶାକେଽବ୍ଦେ ନନ୍ଦ-ରନ୍ଧ୍ର-ଗ୍ରହଗଣ ଗଣିତେ କୁମ୍ଭସଂସ୍ଥେ ଦିନେଶେ
ଶୁକ୍ଳେପକ୍ଷେ ତୃତୀୟା-ଯୁଜି ରବିଜଦିନେ ରେବତୀଭେ ନୃଯୁଗ୍ମେ ।
ଲଗ୍ନେ ଗଙ୍ଗାନ୍ୱବାୟାମ୍ବୁଜବନଦିନକୃଦ୍ଵିଶ୍ୱବିଶ୍ୱାମ୍ୱରାସ୍ୱା—
ଶ୍ରାନ୍ତଂ ସଂରକ୍ଷିତୁଂ ସଦ୍‌ଗୁଣନିଧିରଧିପଶ୍ଚୋଡ଼ଗଙ୍ଗୋଽଭିଷିକ୍ତଃ ।।"

ଅର୍ଥାତ୍—ଚୋଡ଼ଗଙ୍ଗଙ୍କ ଅଭିଷେକ କାଳ ହେଉଛି, ଶକାବ୍ଦ ୯୯୯, କୁମ୍ଭ ମାସ ଶୁକ୍ଳ ପକ୍ଷ ତୃତୀୟା ତିଥି ଓ ଶନିବାର, ରେବତୀ ନକ୍ଷତ୍ର ଏବଂ ମିଥୁନ ଲଗ୍ନ । ଏହା ଇଂରାଜୀ ତାରିଖ ୧୭-୨-୧୦୭୮ ସଙ୍ଗେ ସମାନ । ସେତେବେଳକୁ ସମ୍ଭବତଃ ତାଙ୍କ ବୟସ ପାଞ୍ଚବର୍ଷ ହୋଇଥିବ, ଅର୍ଥାତ୍ ସେ ୧୦୭୩ ଖ୍ରୀଷ୍ଟାବ୍ଦରେ ଜନ୍ମ ଲାଭ କରିଥିବେ ।

ଏତେ ଅଳ୍ପ ବୟସରେ ସାମ୍ରାଜ୍ୟ ଭାର ବହନ କରିବା ଆଦୌ ସମ୍ଭବ ନୁହେଁ । ତେଣୁ ତାଙ୍କ ମାମୁଁ ଓ ଶ୍ୱଶୁର ବୀରଶ୍ରେଷ୍ଠ କଳିଙ୍ଗର ଶାସନଭାର ଗ୍ରହଣ କରିଥିବା ସୁନିଶ୍ଚିତ । ସୁତରାଂ ଗଙ୍ଗ ସାମ୍ରାଜ୍ୟରେ ଶ୍ରୀ ୧୦୭୭ ପରେ ତାଙ୍କ ଉପସ୍ଥିତି କୁତ୍ରାପି ଦେଖାଯାଏ ନାହିଁ ।

ପ୍ରଥମେ କୁହାଯାଇଛି ଯେ, ବୀରଶ୍ରେଷ୍ଠ ଜଣେ ମହା ପରାକ୍ରମଶାଳୀ ରାଜନୀତିଜ୍ଞ ଓ ପଣ୍ଡିତ । ସୁତରାଂ ସେ କେତେକ ବିଶିଷ୍ଟ ପଣ୍ଡିତଙ୍କୁ ନିଯୁକ୍ତ କରି ଚୋଡ଼ଗଙ୍ଗଙ୍କର ବିଦ୍ୟା ଶିକ୍ଷାର ବ୍ୟବସ୍ଥା କରିଥିଲେ । ତେଣୁ ବାଲ୍ୟ-କାଳରୁ ସଂସ୍କୃତ ଭାଷା ସଙ୍ଗେ ବିଭିନ୍ନ ଦର୍ଶନ ଶାସ୍ତ୍ର ତଥା ରାଜନୀତି ଓ ଶିଳ୍ପ-କଳାରେ ସେ ଉପଯୁକ୍ତ ଶିକ୍ଷା ଲାଭ କରିପାରିଥିଲେ ।

ଚୋଡ଼ଗଙ୍ଗ ଦେବଙ୍କ ବୟସ ଯେତେବେଳେ ପ୍ରାୟ ୪୦ବର୍ଷ ହୋଇଥିଲା, ସେତେବେଳେ ସେ ତାଙ୍କ ପିତୃଶତ୍ରୁ ବଙ୍ଗ ଦେଶର ରାମପାଳଙ୍କୁ ଓ ତାଙ୍କ ସାମନ୍ତ ଚକ୍ରରେ ଥିବା ଉତ୍କଳର ସୋମବଂଶୀ ମହାରାଜା କର୍ଣ୍ଣ ଦେବଙ୍କୁ ପରାସ୍ତ କରି ସ୍ୱୀୟ ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଖ୍ରୀ. ୧୧୧୨-୧୩ରେ ବିସ୍ତାର

କରପାରଲେ । ସେହି ସୁବଶାଳ ସାମ୍ରାଜ୍ୟର ଶାସନ ଶୃଙ୍ଖଳା ସୁରକ୍ଷା ସକାଶେ ତାଙ୍କ ରାଜବଂଶର ପ୍ରାଚୀନ ରାଜଧାନୀ କଳିଙ୍ଗ ନଗର ବଂଶଧାରା ନଦୀ ତଟରୁ ଉଠାଇ ଆଣି ଉତ୍କଳର ମହାନଦୀ ତଟବର୍ତ୍ତୀ 'ବାରାଣସୀ' ନାମକ ସ୍ଥାନରେ ସ୍ଥାପନ କଲେ । ସେଠାରେ ଗୋଟିଏ ଦୁର୍ଗ ମଧ୍ୟ ସ୍ଥାପିତ ହୋଇଥିଲା ଯାହା 'ବାରବାଟୀ ଦୁର୍ଗ' ନାମରେ ଅଭିହିତ ହେଉଛି ।

ଏଠାରେ କହିବା ଆବଶ୍ୟକ ଯେ, ସେହି ମହାନଦୀ ତଟରେ 'ଯଯାତି ନଗର' ନାମରେ ସୋମବଂଶୀୟ ରାଜାମାନଙ୍କର ଏକ ରାଜଧାନୀ ଥିଲା । ପ୍ରାଚୀନ ପଦ୍ଧତି ଅନୁସାରେ ସୋମବଂଶୀୟ ରାଜାମାନଙ୍କ ସମୟରେ ଉତ୍କଳର ବହୁ ବରିଷ୍ଠ ପଣ୍ଡିତ ରହି ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ସେମାନଙ୍କୁ ତାଙ୍କ ପଦବୀରୁ ହଟାଇ ନଦେଇ ଚୋଡ଼ଗଙ୍ଗ କଳିଙ୍ଗନଗରରେ ଅବସ୍ଥିତ ସ୍ୱୀୟ ରାଜ-ବଂଶର ପ୍ରତିଷ୍ଠିତ ପାରମ୍ପରିକ ପଣ୍ଡିତମାନଙ୍କୁ ଅଣାଇ ତାଙ୍କ ନବ ରାଜଧାନୀ ବାରାଣସୀ କଟକର ସଭାପଣ୍ଡିତ ପଦରେ ନିଯୁକ୍ତ କରି ତାଙ୍କ ରାଜଦରବାର ପରିସର ବିସ୍ତାରିତ କରିଥିଲେ । କିନ୍ତୁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ, ଅର୍ଥାତ୍ କଳିଙ୍ଗୋତ୍କଳ—ସାମ୍ରାଜ୍ୟକୁ ଭାରତରେ ସର୍ବଶ୍ରେଷ୍ଠ ସାମ୍ରାଜ୍ୟରେ ପରିଣତ କରିବା ସମ୍ଭବ ହେଲା ନାହିଁ । କାରଣ ଉତ୍କଳର ପଣ୍ଡିତ ବ୍ରାହ୍ମଣମାନେ ଅଧିକାଂଶ ଶୈବ ଓ ଶାକ୍ତ ଧର୍ମାବଲମ୍ବୀ ତଥା 'ସ୍ମାର୍ତ୍ତ' ଦୀକ୍ଷା ବହନ କରିଥିବାରୁ କଳିଙ୍ଗନଗରରୁ ଉଠି ଆସିଥିବା ବୈଷ୍ଣବ ଧର୍ମାବଲମ୍ବୀ ଶ୍ରୀବୈଷ୍ଣବପନ୍ଥୀ ବ୍ରାହ୍ମଣ-ମାନଙ୍କୁ ଆଦୌ ସହଯୋଗ କଲେ ନାହିଁ । ବେଦାନ୍ତ ଓ ଧର୍ମ ଶାସ୍ତ୍ରର ମୌଳିକ ତତ୍ତ୍ୱ ଆଲୋଚନା କରିବାକୁ ଯାଇ ଉଭୟ ଗୋଷ୍ଠୀଙ୍କ ମଧ୍ୟରେ ପ୍ରବଳ ଦ୍ୱନ୍ଦ୍ୱ ଲାଗି ରହିଲା । ଯେଉଁ ଦକ୍ଷ ପଣ୍ଡିତଙ୍କ ସାହାଯ୍ୟରେ ରାଜ୍ୟର ଅଧିକାଂଶ ନୀତି ନିୟମ ଶୃଙ୍ଖଳିତ ହୁଏ, ସେହି ପଣ୍ଡିତଙ୍କ ମଧ୍ୟରେ ଧର୍ମଭିତ୍ତିକ ବିଦ୍ୱେଷ ଲାଗି ରହିବା ଦେଶ ପକ୍ଷରେ ଘୋର ଅଶୁଭ ଲକ୍ଷଣ । ତେଣୁ ସୁଚତୁର ପଣ୍ଡିତ ଓ ଶାସ୍ତ୍ରଜ୍ଞ ମହାରାଜା ଚୋଡ଼ଗଙ୍ଗ ସେଥିର ଆଶୁ ନିରାକରଣ ସକାଶେ ଉପାୟ ଚିନ୍ତା କଲେ । ବେଦାନ୍ତର 'ବ୍ରହ୍ମସୂତ୍ର'କୁ ଭିତ୍ତି କରି ଖ୍ରୀ: ୮ମ ଶତାବ୍ଦୀ କିମ୍ବା ତତ୍ ପୂର୍ବରୁ ଖ୍ରୀ. ୧୨ଶ ଶତାବ୍ଦୀ ଯାଏ ଯେଉଁ ମତବାଦଗୁଡ଼ିକ ମହାତ୍ମା ଶଙ୍କରାଚାର୍ଯ୍ୟ, ରାମାନୁଜାଚାର୍ଯ୍ୟ, ମଧ୍ୱାଚାର୍ଯ୍ୟ, ନିମ୍ବାର୍କ ପ୍ରଭୃତି ଦାର୍ଶନିକମାନେ ଉପସ୍ଥାପନ କରି ସ୍ୱ ସ୍ୱ ମତ ପ୍ରଚାର କରିଥିଲେ, ସେ ସମସ୍ତର ମୌଳିକ ଆଧାର ବୈଦିକଶାସ୍ତ୍ର ମୀମାଂସା । ତେଣୁ ସେଥିର ଏକ ସମ୍ମିଳିତ ଦର୍ଶନ ଉତ୍କଳରେ ସୁପ୍ରତିଷ୍ଠିତ କରିବା ଏବଂ ବିଭିନ୍ନ ଧର୍ମକୁ ଏକତ୍ରିତ କରି ଆରାଧନାର ଏକ ନୂତନ ବ୍ୟବସ୍ଥା କରିବା ଲକ୍ଷ୍ୟରେ ସେ ନିଜେ ସଭାପଣ୍ଡିତମାନଙ୍କ ସଙ୍ଗେ ଯୁକ୍ତିତର୍କରେ ପ୍ରବୃତ୍ତ ହେଲେ । ତାଙ୍କର

ଅକାଟ୍ୟ ଯୁକ୍ତି ଦେଇ ଝରେ କେହି ତିଷ୍ଠି ପାରୁଲେ ନାହିଁ । ଏଥିର ନିଦର୍ଶନ ପୁରୀ ନୃସିଂହ ମନ୍ଦିରରେ ଖୋଦିତ ତାଙ୍କ ପ୍ରଶସ୍ତି ସମ୍ବଳିତ ଏକ ଶିଳାଲିପିରୁ ଉଦ୍ଧୃତ ନିମ୍ନୋକ୍ତ ଅଂଶରୁ ଆମ୍ଭେ ଜାଣିପାରୁ ।—

"......ପରମ ମାହେଶ୍ୱର......ବିପକ୍ଷ ପ୍ରତିବାଦୀ ବାରଣ-କେଶରୀ, ନିଖିଳମୀମାଂସା—କଳାକଳାପ—ବିବରଣାଭିନବ—ଜଗଦେକପୂର୍ଣ୍ଣାବତାର, ସକଳକାବ୍ୟକଳାମଧୁରାଳାପ (କପୂର୍ଣ୍ଣ) କପଟକାଳିଦାସ, ରାଜନୀତି-ନବ ନିରୁପଣ-କଳକାଳାବତାର, ବର୍ଣ୍ଣାଶ୍ରମୋଦ୍ଧରକୋପାଧ୍ୟବଦତଶ୍ରୌତ-ସ୍ମାର୍ତ୍ତ କର୍ମାନୁଷ୍ଠ ବିକ୍ପାଳତନସ୍ୱାବତାର..."।

(Vide No. 14 insc in IPT&OPJ)

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ସେ ନିଜେ ମୁଖ୍ୟତଃ ଶୈବ ଧର୍ମାବଲମ୍ବୀ ଥିଲେ ମଧ୍ୟ ପରବର୍ତ୍ତୀ କାଳରେ 'ପରମ ବୈଷ୍ଣବ' ଓ 'ପରମ ବ୍ରାହ୍ମଣ୍ୟ' ଉପାଧି ମଧ୍ୟ ଲାଭ କରିଥିଲେ । ତାଙ୍କର ଯୁକ୍ତି ଏପରି ଅକାଟ୍ୟ ଥିଲା ଯେ, ସେ ତାଙ୍କ ପ୍ରତିବାଦୀ ପଣ୍ଡିତମାନଙ୍କୁ ଯେପରି ଆକ୍ରମଣ କରୁଥିଲେ ତାହା ହସ୍ତୀକୁ ସିଂହର ଆକ୍ରମଣ ସଙ୍ଗେ ତୁଳନୀୟ । ସଂସ୍କୃତରେ ତାଙ୍କର ସୁମଧୁର ଆଳାପ ହେତୁ ତାଙ୍କୁ 'ଦ୍ୱିତୀୟ କାଳିଦାସ' ଆଖ୍ୟା ଦିଆଯାଇଥିଲା । ଉତ୍କଳରେ ସେ ନୂତନ 'ରାଜନୀତି' ପ୍ରବର୍ତ୍ତିତ କରିଥିଲେ ।

ଚୋଡ଼ଗଙ୍ଗଙ୍କ ବ୍ୟକ୍ତିତ୍ୱ ଓ ସୁଦୃଢ଼ ଯୁକ୍ତି ହେତୁ ଦଶ ସଦସ୍ୟ ତଥା ବ୍ରାହ୍ମଣ ପଣ୍ଡିତମାନେ ବିଭିନ୍ନ ଧର୍ମର ଆଶ୍ରୟ ଗ୍ରହଣ କରିଥିଲେ ମଧ୍ୟ ତାଙ୍କ ପ୍ରବର୍ତ୍ତିତ ସର୍ବ ସମନ୍ୱୟ ଧର୍ମକୁ ଆଶ୍ରୟ କରି ରାଜସଭାର ଶୃଙ୍ଖଳା ରକ୍ଷା କରିଥିଲେ । ଏଣୁ ମହାରାଜା ଚୋଡ଼ଗଙ୍ଗ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରାଚୀନ ନୃସିଂହ ମନ୍ଦିରରୁ ମାଧବ (ପୁରୁଷୋତ୍ତମ)ଙ୍କ ପ୍ରତିମା ସ୍ଥାନରେ ରୁଦ୍ର (ଶିବ) ରୂପୀ ସଙ୍କର୍ଷଣ, ଶକ୍ତି ରୂପିଣୀ ସୁଭଦ୍ରା ଓ ମାଧବ ରୂପୀ ପୁରୁଷୋତ୍ତମଙ୍କ ତ୍ରିମୂର୍ତ୍ତି ଏକତ୍ର କରି ସିଂହାସନରେ ସ୍ଥାପନ କଲେ । ଅତଏବ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମାବଲମ୍ବୀଙ୍କ ମଧ୍ୟରେ ସଖ୍ୟ ପ୍ରତିଷ୍ଠିତ ହେଲା । ଏହାପରେ ସମ୍ଭବତଃ ଦଶ-ପଣ୍ଡିତମାନଙ୍କ ଅନୁରୋଧକ୍ରମେ ଚୋଡ଼ଗଙ୍ଗ ଦେବ ଦେହି ନୀଳାଚଳ ଧାମରେ ଏକ ସୁମହାନ ମନ୍ଦିର ନିର୍ମାଣ କରିବାକୁ ଗୁରୁଙ୍କ ଉପଦେଶ ଅନୁସାରେ ଏକ ବର୍ଗାଟ ଆକାରରେ ପଞ୍ଚ ରଥ ବଶିଷ୍ଟ ରେଖ-ଦେଉଳ ନିର୍ମାଣ କରିବାକୁ ଲାଗିଲେ ।

ସେହି ମନ୍ଦିରଟି ଗୁରୁଙ୍କ ତତ୍ତ୍ୱାବଧାନରେ ତୋଳିତ ହୋଇଥିଲେ ସୁଦ୍ଧା ନିଜେ ସେଥିର ଶିଳ୍ପ ସ୍ୱରୂପରେ ପାଣ୍ଡିତ୍ୟ ଲାଭ କରିଥିବାରୁ ଶ୍ରୀଧାମରେ ରହି

ତାଙ୍କ ଶେଷ ଜୀବନ କଟାଇବା ଲକ୍ଷ୍ୟରେ ଜ୍ୟେଷ୍ଠ ପୁତ୍ର କାମାର୍ଣ୍ଣବଙ୍କର 'ଯୌବରାଜ୍ୟାଭିଷେକ' ଦେଇ ସେହି ପବିତ୍ର ଧାମରେ ଖ୍ରୀ: ୧୧୪୬ରେ ସମ୍ପନ୍ନ କରି ପୁତ୍ର ହସ୍ତରେ ଶାସନ ଭାର ଅର୍ପଣ ପୂର୍ବକ ନିଜେ ଅବସର ଗ୍ରହଣ କଲେ । ସେତେବେଳେ ତାଙ୍କ ବୟସ ହୋଇଥିଲା ୭୦ ବର୍ଷ । ଶ୍ରୀମନ୍ଦିର ଗଠନ କାର୍ଯ୍ୟରେ ଅର୍ଥାତ୍ ଅନ୍ୟାନ୍ୟ ଶାସ୍ତ୍ରରେ ପଣ୍ଡିତ ସହ ଶିଳ୍ପ ଶାସ୍ତ୍ରରେ ମଧ୍ୟ ସେ ପାଣ୍ଡିତ୍ୟ ଲାଭ କରିଥିବା ପ୍ରସଙ୍ଗ ତାମ୍ର ଶାସନମାନଙ୍କରେ ବର୍ଣ୍ଣିତ ନିମ୍ନୋକ୍ତ ପ୍ରଶସ୍ତି ଶ୍ଳୋକରୁ ପ୍ରମାଣିତ ହୁଏ :

"ଧାତ୍ରୀ ତସ୍ୟ ସରସ୍ୱତୀ ସମଭବନ୍ନୂନଂ ନଚୈତ୍ ପୀତବାନ୍
ଚିତ୍ରାରମ୍ଭିତମାର୍ଯ୍ୟଚୋଳଗଙ୍ଗସ୍ୟ ଶ୍ରୀଚୋଡ଼ଗଙ୍ଗ ସ୍ୟଃ ।
ତାଦୃଶ୍ ବେଦମନ୍ତଃ କଥଂ ନଗୂଢ଼ୋଂ ଶାସ୍ତ୍ରେଷୁ ତାଦୃକ୍ କଥଂ
ତାଦୃକ୍ କାବ୍ୟମନ୍ତଃ କଥଂ ପଣ୍ଡିତଃ ଶିଳ୍ପେଷୁ ତାଦୃକ କଥମ୍ ।।"

(Vide O.H.R.J. Vol. V. No. 1. P.P, 9-10. Verse No.20)

ଚୋଡ଼ଗଙ୍ଗଙ୍କ ଜୀବତ କାଳରେ ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରିନାହିଁ । ତାଙ୍କ ପୁତ୍ରଙ୍କ ରାଜତ୍ୱ କାଳରେ ପଶ୍ଚିମ ଓ ଦକ୍ଷିଣରୁ ଯଥାକ୍ରମେ କଳଚୁରି ବଂଶୀୟ ରାଜାମାନେ ଏବଂ ବେଙ୍ଗିର ଚାଲୁକ୍ୟମାନେ କଳିଙ୍ଗର ଦକ୍ଷିଣ ଭାଗରେ ବିଦ୍ରୋହ ସୃଷ୍ଟି କରିବାରୁ ବୋଧହୁଏ ବହୁ କାଳ ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ ପୂର୍ଣ୍ଣ ହୋଇପାରିନାହିଁ । ଚୋଡ଼ଗଙ୍ଗଙ୍କ ମୃତ୍ୟୁର ପ୍ରାୟ ୮୦ ବର୍ଷ ପରେ ଉତ୍କଳରେ ବିଷ୍ଣୁ ନାମକ ଜଣେ ବଳିଷ୍ଠ ସେନାଧ୍ୟକ୍ଷଙ୍କ ଅଧୀନରେ ଯେତେବେଳେ ଚେଦିମାନଙ୍କ ସଙ୍ଗେ ଯୁଦ୍ଧ ଆରମ୍ଭ ହେଲା, ସେତେବେଳେ ଚେଦିରାଜା ସମ୍ପୂର୍ଣ୍ଣ ରୂପେ ପରାଜିତ ହୋଇଥିଲେ । ଯୁଦ୍ଧରେ ଜୟଲାଭ କରି ବିଷ୍ଣୁ ନାମକ ସେନାପତି ଗୃହେଶ୍ୱରଙ୍କ ଶିବମନ୍ଦିର ଭୁବନେଶ୍ୱରଠାରେ ନିର୍ମାଣ କରି ସେଥିରେ ଏକ ଶିଳାଲିପି ଖୋଦିତ କରାଇ ଚେଦିରାଜଙ୍କ ଶୋଚନୀୟ ପରାଜୟ ଏବଂ ବଙ୍ଗର ମୁସଲମାନ୍‌ଙ୍କୁ ନିକ୍ଷେପିତ କରିଥିବା ପ୍ରସଙ୍ଗ ଉଲ୍ଲେଖ କରିଅଛନ୍ତି । ସେହି ବିଜୟ ଲାଭ ବେଳେ ଉତ୍କଳରେ ମହାରାଜା ଅନଙ୍ଗଭୀମ (୩ୟ) ରାଜତ୍ୱ କରୁଥିଲେ । ସେ ଥିଲେ ପୁରୁଷୋତ୍ତମଙ୍କ ପରମ ଭକ୍ତ । ତେଣୁ ତାଙ୍କ ନାମରେ ସେ ସ୍ୱୀୟ ସାମ୍ରାଜ୍ୟ ଉତ୍ସର୍ଗ କରିଦେଇ ନିଜେ ତାଙ୍କ ଶ୍ରୀଚରଣରେ ଦାସ (ରାଉତ) ରୂପେ ଆଶ୍ରୟ ନେଇଥିବା ପ୍ରସଙ୍ଗ ତାଙ୍କ ଅଭିଲେଖମାନଙ୍କରୁ ପ୍ରମାଣିତ ହୁଏ ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଯେଉଁ ବିରାଟ ଆକାରର ଶ୍ରୀମନ୍ଦିର ପ୍ରସ୍ତୁତ ହୋଇଥିଲା, ସେଥିର ପ୍ରତିଷ୍ଠା ସମ୍ପାଦନ କରି ବହୁ ବ୍ରାହ୍ମଣଙ୍କୁ ଭୂଦାନ ଦେଇଥିବା ପ୍ରସଙ୍ଗ ଅନଙ୍ଗଭୀମଙ୍କ ନଗରୀ ତାମ୍ର ଶାସନରେ ଉଲ୍ଲେଖ ହୋଇଛି । ଖ୍ରୀଃ ୧୨୩୦ରେ ସେ ଶ୍ରୀମନ୍ଦିରରେ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀପୁରୁଷୋତ୍ତମଙ୍କ ହସ୍ତପଦ-ଯୁକ୍ତ ପ୍ରସ୍ତର ବିଗ୍ରହମାନ ପ୍ରତିଷ୍ଠା କରିଥିବା ଜଣାଯାଏ । ଅନଙ୍ଗଭୀମଙ୍କ କନ୍ୟା ଚନ୍ଦ୍ରିକାଦେବୀ ଅକାଳରେ ବିଧବା ହୋଇ ଭୁବନେଶ୍ୱରଠାରେ ବିନ୍ଦୁ ସାରୋବର କୂଳରେ ଗୋଟିଏ ବିଷ୍ଣୁ ମନ୍ଦିର ନିର୍ମାଣ କରାଇ ସେଥିରେ ବଳଭଦ୍ର, ସୁଭଦ୍ରା ଓ କୃଷ୍ଣଙ୍କର ହସ୍ତପଦଯୁକ୍ତ ପ୍ରସ୍ତର ବିଗ୍ରହ ସ୍ଥାପନ କରିଥିବା ସେହି ମନ୍ଦିର ସଂଲଗ୍ନ ଖ୍ରୀ: ୧୨୭୮ରେ ଖୋଦିତ ଏକ ଶିଳାଲେଖରୁ ପ୍ରମାଣିତ ହୁଏ । ଚନ୍ଦ୍ରିକାଦେବୀ ଯେଉଁ ତ୍ରିମୂର୍ତ୍ତି ଅନନ୍ତ ବାସୁଦେବ ମନ୍ଦିରରେ ସ୍ଥାପନ କରିଥିଲେ, ସେହି ଦେବବିଗ୍ରହମାନ ତାଙ୍କ ପିତା ଶ୍ରୀମନ୍ଦିରରେ ପ୍ରତିଷ୍ଠା କରିଥିବା ମୂର୍ତ୍ତିମାନଙ୍କ ପ୍ରତୀକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସୁତରାଂ ହସ୍ତପଦଯୁକ୍ତ ପ୍ରସ୍ତରବିଗ୍ରହ ହିଁ ପୁରୀର ଶ୍ରୀମନ୍ଦିରରେ ଅନଙ୍ଗଭୀମ ଦେବ (୩ୟ) ପ୍ରତିଷ୍ଠା କରିଥିବା ସ୍ପଷ୍ଟ ପ୍ରତିପାଦିତ ହେଉଛି । ତାଙ୍କର ନଗରୀ ତାମ୍ର ଶାସନରେ ଲେଖା ଅଛି :

"ଶ୍ରୀପୁରୁଷୋତ୍ତମ ଦେବସ୍ୟ ପ୍ରତିଷ୍ଠା ସମୟେ କାଶ୍ୟପସଗୋତ୍ରାଗ୍ରଯାଁୟ ଚନ୍ଦ୍ରକରଶର୍ମଣେ ବ୍ରାହ୍ମଣାୟତ ଦ୍ୱିବାଟୀ ପରିମିତାଭୂମି ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ପ୍ରୀତୟେ ଧାରାପୂର୍ବକମାଚନ୍ଦ୍ରାର୍କମୃପଭୋଗାୟାକାରକୃତ୍ୟ ପ୍ରାଦାତ୍......"

ଏଥିରୁ ଜଣାଯାଉଛି ଯେ, ଅନଙ୍ଗଭୀମଦେବ ତାଙ୍କ ବାସସ୍ଥାନ ମହାନଦୀ ତଟସ୍ଥ ବାରାଣସୀ କଟକରେ ଏକ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରି ସେଥିରେ ମଧ୍ୟ ତାଙ୍କ ନିତ୍ୟ ଆରାଧନାପାଇଁ ଶ୍ରୀପୁରୁଷୋତ୍ତମଙ୍କୁ ପ୍ରତିଷ୍ଠିତ କରିଥିଲେ । ଆଉ ମଧ୍ୟ ପୁରୀରେ ଶ୍ରୀମନ୍ଦିର ନିର୍ମିତ ହୋଇ ପ୍ରତିଷ୍ଠା ନହୋଇ ରହିଥିବାରୁ ତାହା ଠାକୁରବିଗ୍ରହଙ୍କ ସହ ବିରାଟ ଆଡ଼ମ୍ବର ସହକାରେ ପ୍ରତିଷ୍ଠା କରିଥିଲେ । ଅନଙ୍ଗଭୀମଙ୍କ ନଗରୀ ତାମ୍ର ଶାସନରେ ଲେଖାଅଛି, ସେ ନିଜକୁ 'ରାଉତ ଦେବ' ସଂଜ୍ଞାରେ ଅଭିହିତ କରି ଅଛନ୍ତି । ତେଣୁ ବଡ଼ଦେଉଳ ପ୍ରତିଷ୍ଠା ସଙ୍ଗେ ଖ୍ରୀ. ୧୨୩୦ରେ ସେ ନିଜର ସାମ୍ରାଜ୍ୟକୁ ଶ୍ରୀପୁରୁଷୋତ୍ତମଙ୍କ ନାମରେ ଉତ୍ସର୍ଗ କରିଥିବା ସମ୍ଭବ । ସେହି ମନ୍ଦିର ପ୍ରତିଷ୍ଠା ୧୧୫୧ ଶକାବ୍ଦ (ଖ୍ରୀ: ୧୨୨୯)ରେ ସମ୍ପନ୍ନ ହୋଇଥିଲା । ଅନଙ୍ଗଭୀମ ବ୍ରାହ୍ମଣମାନଙ୍କୁ ଯେଉଁସବୁ ଦାନ ଦେଇଥିଲେ ତାହା ବାମନ ପୁରାଣ, ଆଦିତ୍ୟ

ପୁରାଣ, ବିଷ୍ଣୁ ଧର୍ମ (ବିଷ୍ଣୁ ଧର୍ମୋତ୍ତର) ପ୍ରଭୃତି ଶାସ୍ତ୍ରାନୁମୋଦିତ ହୋଇଥିବା ପ୍ରସଙ୍ଗ ସେହି ତାମ୍ର-ଶାସନରେ ଉଲ୍ଲେଖ ଅଛି । ତେଣୁ ସେ ଧର୍ମଶାସ୍ତ୍ରାନୁମୋଦିତ ଭାବେ "ସର୍ବସ୍ୱ ଦାନ" କରି ଶ୍ରୀପୁରୁଷୋତ୍ତମଙ୍କ ନାମରେ ଉତ୍ସର୍ଗ କରିଥିବାରୁ ଶ୍ରୀଧାମର ପଞ୍ଚକୋଶ ପରିମିତ ଭୂମିକୁ ସ୍ୱୟଂ ପୁରୁଷୋତ୍ତମଙ୍କ ପବିତ୍ର ବିହାର-ସ୍ଥଳୀ ରୂପେ ପରିକଳ୍ପନା କରାଯାଇଥିବା ସମ୍ଭବ । ଖ୍ରୀ. ୧୨୩୮ରେ ଅନଙ୍ଗଭୀମଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ନରସିଂହ ଦେବ ଖ୍ରୀ: ୧୨୩୮ରୁ ୧୨୬୪ ପର୍ଯ୍ୟନ୍ତ ରାଜ୍ୟଭାର ଗ୍ରହଣ କରିଥିଲେ । ସେତେବେଳେ ବଙ୍ଗର ସୁଲ୍ତାନଙ୍କ ସଙ୍ଗେ ତାଙ୍କର ଭୀଷଣ ଯୁଦ୍ଧ ହୋଇଥିଲା ଏବଂ ସେଥିରେ ନରସିଂହ ଦେବ ବିଜୟଲାଭ କରି ତତସ୍ଥ ରାଢ଼ ଓ ବରେନ୍ଦ୍ରର ବହୁ ସଂଖ୍ୟାରେ ମୁସଲମାନ ସୈନ୍ୟଙ୍କୁ ନିହତ କରିଥିବା ପ୍ରସଙ୍ଗ ନିମ୍ନୋକ୍ତ ପ୍ରଶସ୍ତି ଶ୍ଳୋକରୁ ଜଣାଯାଏ ।

> ରାଢ଼ା-ବରେନ୍ଦ୍ର-ଯବନୀ-ନୟନାଞ୍ଜନାଶ୍ରୁ-
> ପୂରେଣ ଦୂରବିନିବେଶିତକାଳିମଶ୍ରୀଃ ।
> ତଦ୍ ବିପ୍ରଲମ୍ଭକରୁଣାଦ୍ଭୁତନସ୍ତରଙ୍ଗା
> ଗଙ୍ଗାପି ନୂନମମୁନା ଯମୁନାଧୁନାଭୂତ୍ ।।

ଅର୍ଥାତ୍ ରାଢ଼ ଓ ବରେନ୍ଦ୍ରର ଯବନମାନେ ଏତେ ସଂଖ୍ୟାରେ ଯୁଦ୍ଧ କ୍ଷେତ୍ରରେ ନିହତ ହୋଇଥିଲେ ଯେ, ତାଙ୍କ ଶୋକାର୍ତ୍ତ ବିଧବାମାନଙ୍କ ଅଶ୍ରୁପୂରିତ ଚକ୍ଷୁ-ମାନଙ୍କରୁ କଜ୍ଜ୍ୱଳ ଧୌତ ହୋଇ ଧବଳାଙ୍ଗୀ ଗଙ୍ଗା ଶ୍ୟାମାଙ୍ଗୀ ଯମୁନା ପରି ଦେଖାଗଲା ।

ମୁସଲମାନ ଐତିହାସିକମାନେ ମଧ୍ୟ ଉତ୍କଳର ସେହି ବିଜୟ ପ୍ରସଙ୍ଗ ଉଲ୍ଲେଖ କରି ଅଛନ୍ତି । ଏ ଯୁଦ୍ଧ ବଙ୍ଗର ସୁଲ୍ତାନ ମାଲିକ୍ ଇଜୁଦ୍ଦୀନ୍-ତୁଘ୍ରିଲ୍-ତୁଘାନ୍-ଖାଁନ୍ (Malik Izz-ud-din-Tughril-Tughan-Khan)ଙ୍କ ବିରୁଦ୍ଧରେ ହିଜ୍ରା ୬୪୨ ବା ୧୨୪୫ ଖ୍ରୀଷ୍ଟାବ୍ଦରେ ସମ୍ପନ୍ନ ହୋଇଥିଲା । ନରସିଂହ ଦେବଙ୍କ ଭଉଣୀ ହୈହୟ ବଂଶୀୟ ମହାବୀର ପରମର୍ଦ୍ଦି ଦେବ ଅନଙ୍ଗଭୀମଙ୍କ କନ୍ୟା ଚନ୍ଦ୍ରିକା ଦେବୀଙ୍କୁ ବିବାହ କରି ସେତେବେଳେ ଭୁବନେଶ୍ୱରସ୍ଥ ରାଜପ୍ରାସାଦରେ ରହୁଥିବା ଅନୁମିତ ହୁଏ । ଶ୍ରୀଲିଙ୍ଗରାଜଙ୍କ ମନ୍ଦିର ପାର୍ଶ୍ୱରେ ଏକ ରାଜପ୍ରାସାଦ ଥିଲା । ଅନଙ୍ଗଭୀମଙ୍କ ମୃତ୍ୟୁର ପ୍ରାୟ ଅଳ୍ପକାଳ ପରେ ବଙ୍ଗର ସୁଲତାନ ଯାଜନଗର (ଉତ୍କଳ) ଆକ୍ରମଣ କରିବାକୁ ଉଦ୍ୟମ କରିଥିଲେ । ତେଣୁ ମୁସଲ୍ମାନ ସୈନ୍ୟଙ୍କ ସଙ୍ଗେ ଯୁଦ୍ଧ କରିବା ପାଇଁ

ମହାରାଜା ନରସିଂହ ଦେବ ଓ ତାଙ୍କ ଭଣୋଇ ପରମର୍ଦ୍ଦି ଦେବ ଉଭୟେ ମିଶି ଉତ୍କଳର ସୈନ୍ୟମାନଙ୍କ ସଙ୍ଗେ ଆଡବାସୀ ଶବରମାନଙ୍କୁ ମିଶାଇ ଏକ ବିରାଟ ଚତୁରଙ୍ଗ ବାହିନୀ ଗଠନ କରିଥିବା ନେତ୍ରବ । ଯୁଦ୍ଧରେ ମୁସଲମାନ ସୈନ୍ୟଙ୍କୁ ଲକ୍ଷ୍ମଣାବତୀ ଦୁର୍ଗର ଦ୍ୱାରଦେଶ ପର୍ଯ୍ୟନ୍ତ ଉତ୍କଳ ରାଜାଙ୍କ ଜାମାତା ଗୋଡ଼ି ନେଇଥିବା ପ୍ରସଙ୍ଗ 'Tabaqat-Di-Nasin' ନାମକ ପାରସ୍ୟ ଇତିହାସରେ ନିମ୍ନ ପ୍ରକାରେ ଉଲ୍ଲେଖ ଅଛି :

> "The leader of the forces of Jajanagar (Utkal) was a person, by name. 'Sabantar' (Samanta-raja), the son-in-law of the Rai (Aniyaukabhima), who during the time of Malik Izzud-din Tughuril-Tughan Khan had advanced to the bank of river of, Lakhanawati and having shown the greatest audacity, had driven the Musalman forces as far as the gate (of the city) of Lakhanawati."

ସଂଘିତ ଯୁଦ୍ଧରେ ଉତ୍କଳର ବିପୁଳ ଜୟଲାଭ ହୋଇଥିଲେ ସୁଦ୍ଧା ସେହି ଯୁଦ୍ଧରେ କିମ୍ବା ପରବର୍ତ୍ତୀ ଅନ୍ୟ କେଉଁ ଯୁଦ୍ଧରେ ପରମର୍ଦ୍ଦି ଦେବ ପ୍ରାଣ ହରାଇଥିଲେ । ତେଣୁ ତାଙ୍କ ସ୍ତ୍ରୀ ଚନ୍ଦ୍ରିକା ଦେବୀ ବୈଧବ୍ୟ ଦଶା ଅନୁଭବ କରି ଶ୍ରୀପୁରୁଷୋତ୍ତମଙ୍କ ଶ୍ରୀଚରଣ ଅଶ୍ରୟରେ 'ଦେବଦାସୀ'—ବ୍ରତ ଅବଲମ୍ବନ ପୂର୍ବକ ପବିତ୍ର ବିନ୍ଦୁ ସରୋବର ତଟରେ ଅନନ୍ତ ବାସୁଦେବ ନାମରେ ଏକ ମନ୍ଦିର ନିର୍ମାଣ କରି ସେଥିରେ ଜୀବନର ଶେଷକାଳ ପର୍ଯ୍ୟନ୍ତ ଦେବତାଙ୍କ ଆରାଧନା ସଙ୍ଗେ ନୃତ୍ୟ ଗୀତରେ କାଳଯାପନ କରିବାକୁ ଲାଗିଲେ । ଖ୍ରୀ. ୧୨୭୮ରେ ସେ ଗୋଟିଏ ଶିଳାଲେଖ ଖୋଦିତ କରାଇ ସେହି ମନ୍ଦିର-ବେଢ଼ାରେ ସଂଲଗ୍ନ କରିଥିଲେ । ସେଥିର ଶେଷ ଶ୍ଳୋକରେ ଲେଖା ଅଛି :

"ମୁକ୍ତାଦ୍ୟୈରଲଙ୍କାରୈଃ ଶକ୍ତ୍ୟା ଭକ୍ତ୍ୟା ମୁଦାନ୍ୱିତା ।
ବଳ-କୃଷ୍ଣ-ସୁଭଦ୍ରାଣ୍ଟ ଶ୍ରେୟସେଽସାବଭୂଷୟତ୍ ।।

ପିତ୍ରାଦନ୍ତୁ ତାଙ୍କ ସୌନ୍ଦର୍ଯ୍ୟ ଦେଖି ପିତା ନାମ ରଖିଥିଲେ 'ଚନ୍ଦ୍ରିକା' । ସଙ୍ଗୀତରେ ତାଙ୍କୁ ସଥେଷ୍ଟ ଶିକ୍ଷା ଦିଆଯାଇଥିଲା । ତେଣୁ ସେ ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିରରେ 'ଦେବଦାସୀ' ରୂପେ ରହି ନୃତ୍ୟ-ଗୀତ ପ୍ରଭୃତି ସେବାରେ କାଳଯାପନ କରୁଥିଲେ । ଉକ୍ତ ଶିଳାଲେଖରେ ଏ ସମ୍ବନ୍ଧରେ ଲେଖାଅଛି :

"ଗୀତଙ୍କ ଲୟତାଳ ନର୍ତ୍ତନ କଳାକୌଶଳ୍ୟ ଲୀଳାମୟୀ-
ବାଲ୍ୟାଦଚ୍ୟୁତ ଭକ୍ତି ଭାବତମଧଦର୍ଶ୍ରାନ୍ତରପର୍ଶ୍ରିତ୍ୟେ ।
ପିତା ବୈଷ୍ଣବସ୍ୱବଂଶଜାପ୍ତ ଶ୍ରୁତସ୍ୟେ ଚନ୍ଦ୍ରାପଦ୍ମ ଚନ୍ଦ୍ରିକା
ପୁତ୍ରୀସ୍ୱଂ ପରମର୍ଦ୍ଧନାମ ଭଜତେ ଷଷ୍ଠାସ୍ୟ ରତ୍ନାନ୍ୱିତା ।।"

ଚନ୍ଦ୍ରିକା ଦେବୀ ବାଲ୍ୟକାଳରୁ ଅଚ୍ୟୁତ (ଶ୍ରୀପୁରୁଷୋତ୍ତମ)ଙ୍କ ଠାରେ ଭକ୍ତିଭାବରେ ମଜ୍ଜିତ ହୋଇଥିଲେ । ପିତାଙ୍କଠାରୁ ସେ ବୈଷ୍ଣବଧର୍ମରେ ଦୀକ୍ଷା ଲାଭ କରିଥିବାରୁ ବୈଧବ୍ୟଦଶାରେ ମଧ୍ୟ ଗୀତ ଓ ନୃତ୍ୟରେ ଶ୍ରୀପୁରୁଷୋତ୍ତମଙ୍କ ପ୍ରୀତି ବର୍ଦ୍ଧନ କରୁଥିଲେ । ଏଠାରେ କହିବା ଆବଶ୍ୟକ ଯେ, ଯେତେବେଳେ ଜୟଦେବଙ୍କ 'ଗୀତଗୋବିନ୍ଦ' ଉତ୍କଳରେ ଯଥେଷ୍ଟ ପ୍ରଚାର ଲାଭ କରିଥିଲା । ତେଣୁ ଶ୍ରୀମନ୍ଦିରରେ ମଧ୍ୟ ଗୀତ-ନୃତ୍ୟ ନିଶ୍ଚିତ ଭାବେ ପୂର୍ବରୁ ଅନୁଷ୍ଠିତ ହେଉଥିଲା । ଶ୍ରୀକୂର୍ମ ଅଞ୍ଚଳରୁ ଦେବଦାସୀମାନଙ୍କୁ ଆଣି ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଦେବତାଙ୍କ ସମ୍ମୁଖରେ ନୃତ୍ୟ-ଗୀତ ପ୍ରବର୍ତ୍ତିତ ହୋଇଥିଲା ମହାରାଜା ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରୁ ।

ଚନ୍ଦ୍ରିକା ଦେବୀ ଯେଉଁ 'ଅନନ୍ତ ବାସୁଦେବ' ମନ୍ଦିରରେ ବଳଦେବ କୃଷ୍ଣ ଓ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ ତାହା ହସ୍ତ-ପଦଯୁକ୍ତ ଶିଳା ବିଗ୍ରହ, ଯାହାଙ୍କ ଅଦ୍ୟାବଧି ସେହି ମନ୍ଦିରରେ ପୂଜିତ ହେଉଛନ୍ତି । ତେଣୁ ଆମେ ନିଶ୍ଚିତ ଭାବେ କହିପାରୁ ଯେ, ଅନଙ୍ଗଭୀମ ଯେଉଁ ମୂର୍ତ୍ତିଙ୍କୁ ପୁରୀର ବଡ଼ଦେଉଳରେ ସ୍ଥାପନ କରିଥିଲେ ଠିକ୍ ସେପରି ହସ୍ତ-ପଦ-ଯୁକ୍ତ ଶିଳାବିଗ୍ରହ ହିଁ ତାଙ୍କ କନ୍ୟା ସ୍ୱୀୟ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ସୁତରାଂ ଖ୍ରୀ: ୧୨୭୮ ସାଲ ପର୍ଯ୍ୟନ୍ତ ପୁରୀଠାରେ ମଧ୍ୟ ସେପରି ବିଗ୍ରହ ପୂଜିତ ହେଉଥିବେ । କେତେକଙ୍କ ମତରେ ଋଗ୍‌ବେଦର ଦଶମ ମଣ୍ଡଳସ୍ଥ ଏକ ସୂକ୍ତରେ ନିମ୍ନୋକ୍ତ ବାକ୍ୟକୁ ଆଧାର କରି ସିନ୍ଧୁଗର୍ଭରେ ଭାସିଆସିବା ଦାରୁ ସଙ୍ଗେ ଶ୍ରୀଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି ସାୟଣାଚାର୍ଯ୍ୟ ତାଙ୍କ ଟୀକାରେ ଲେଖିଛନ୍ତି :

ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୂରୁଷମ୍ ।
ତଦାଲଭସ୍ୱ ଦୁର୍ହଣୋ ତେନ ଯାହି ପରସ୍ତରମ୍ ।।

ଏଥିର ଭାଷ୍ୟ ଲେଖିବାକୁ ଯାଇ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀରେ ସାୟଣାଚାର୍ଯ୍ୟ ନିଜେ ସନ୍ଦେହଜନକ ଭାବେ ସେହି ସିନ୍ଧୁଗର୍ଭରେ ଭାସମାନ ଅପୌରୁଷେୟ ଦାରୁ

ବ୍ରହ୍ମଙ୍କ ପୁରୁଷୋତ୍ତମ ମୂର୍ତ୍ତି ଗଠନ ପାଇଁ ତାହା ଚର୍ଚ୍ଚିତ କରିଥିଲେ । ତାଙ୍କର ସେହି ଭୁଲ୍ ଅର୍ଥ ସେ ନିଜେ ମଧ୍ୟ ମାର୍ଜନ କରି ଦେଇଥିର ଦ୍ୱିତୀୟ ଅର୍ଥ ପ୍ରକାଶ କରିଥିଲେ । ଋଗ୍‌ବେଦର ଯେଉଁ ସୂକ୍ତରେ ଅନ୍ୟପ୍ରସଙ୍ଗର ଅବତାରଣା କରାଯାଇଛି ସେଥିରେ ଶ୍ରୀପୁରୁଷୋତ୍ତମଙ୍କ ଦାରୁବ୍ରହ୍ମଙ୍କ କଳ୍ପନା ନିତାନ୍ତ ଅପ୍ରାସଙ୍ଗିକ । ଏହା ନିଜେ ସାୟଣାଚାର୍ଯ୍ୟ ଉପଲବ୍‌ଧି କରିଥିବା ସମ୍ଭବ । ତଥାପି ତାଙ୍କ ଜୀବତକାଳ ଖ୍ରୀଷ୍ଟ ୧୪ଶ ଶତାବ୍ଦୀ ହୋଇଥିବାରୁ ସେ ନିଶ୍ଚିତ ରୂପେ ଶ୍ରୀଧାମରେ ଅନୁଷ୍ଠିତ ନବକଳେବର ଉତ୍ସବ ଏବଂ ସମୁଦ୍ର-ପଥରେ ସେତେବେଳେ ଦାରୁବ୍ରହ୍ମଙ୍କ ଅଣାଯାଉଥିବା ବିଷୟ ନିଶ୍ଚିତ ଭାବେ ଦେଖିଥିଲେ । ତେଣୁ ସାୟଣଙ୍କ ଲେଖାରୁ ଆମେ ଏ ସମ୍ବନ୍ଧରେ ଦୁଇଟି ତଥ୍ୟ ଉପଲବ୍‌ଧି କରିପାରୁ, ଯଥା—

(୧) ଖ୍ରୀଃ ୧୪ଶ ଶତାବ୍ଦୀ (ଅର୍ଥାତ୍ ଖ୍ରୀଃ ୧୩୬୦) ବେଳେ ଶ୍ରୀଜଗନ୍ନାଥଙ୍କ 'ନବକଳେବର' ଉତ୍ସବ ହୋଇଥିଲା ଏବଂ

(୨) ଶ୍ରୀଜଗନ୍ନାଥଙ୍କ ସେହି ଉତ୍ସବ ନିମନ୍ତେ ଦାରୁ ସମୁଦ୍ରପଥରେ ପୁରୀକୁ ଅଣାଯାଉଥିଲା ।

ବର୍ତ୍ତମାନ ପ୍ରଶ୍ନ ହେଉଛି, କେଉଁ ଅଞ୍ଚଳରୁ ଦାରୁବ୍ରହ୍ମ ସମୁଦ୍ରରେ ଭସାଇ ଆଣିବା ସମ୍ଭବ ହୋଇପାରେ, ଯେଉଁ ଅଞ୍ଚଳରେ ଆଦିବାସୀ ଶବରମାନେ ଏଥିପାଇଁ ନିଯୁକ୍ତ ହୋଇଥିବେ ? ଆମ୍ଭ ମତରେ ମହେନ୍ଦ୍ରାଞ୍ଚଳ, ଯାହାକି ଅତି ପ୍ରାଚୀନ-ଯୁଗରୁ ଶବରମାନଙ୍କ ମୁଖ୍ୟ ମାତୃଭୂମି ରୂପେ ପରିଚିତ ଥିଲା, ସେହି ପର୍ବତର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ନିବିଡ଼ ଅରଣ୍ୟରେ ପରିପୂର୍ଣ୍ଣ ହୋଇଥିଲା । ସେହି ପର୍ବତର ଶିଖର ଦେଶରେ ଗୋକର୍ଣ୍ଣେଶ୍ୱର ଶିବଙ୍କୁ ପ୍ରତିଷ୍ଠା କରି କଳିଙ୍ଗର ପ୍ରାଚୀନ ଗଙ୍ଗ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ସେତେବେଳେ ଶବର ଆଦିବାସୀମାନେ ବହୁ ଯୁଦ୍ଧରେ ଯୋଗଦେଇ କଳିଙ୍ଗ ସାମ୍ରାଜ୍ୟ ସୁରକ୍ଷିତ କରିଥିଲେ । ତେଣୁ ସେହି ବଳିଷ୍ଠ ଆଦିବାସୀଙ୍କୁ ଲଗାଇ ମହେନ୍ଦ୍ରାଞ୍ଚଳ ଜଙ୍ଗଲରୁ ନିମ୍ବ-ଦ୍ରୁମ କଟାଇ ସେହି ପର୍ବତ ଶିଖରରୁ ତଳ ପର୍ଯ୍ୟନ୍ତ ଲମ୍ବି ଯାଇଥିବା 'ଦାରୁବ୍ରହ୍ମ' ନାମକ ଏକ ସଙ୍କୀର୍ଣ୍ଣ ପଥରେ ସେହି ପବିତ୍ର ଦାରୁ ତଳକୁ ଗଡ଼ାଇ ଆଣି, ସେଠାରୁ ନିକଟବର୍ତ୍ତୀ ବାରୁଣୀ ବନ୍ଦର ବାଟେ ସମୁଦ୍ର ପଥରେ ପୁରୁଷୋତ୍ତମ କ୍ଷେତ୍ରକୁ ନିଆଯାଉଥିଲା । ପ୍ରାଚୀନ ଯୁଗରୁ କଳିଙ୍ଗରେ ବାରୁଣୀ-ବନ୍ଦର ଏକ ବାଣିଜ୍ୟ କେନ୍ଦ୍ର ଥିଲା । ସେହି ବନ୍ଦର ଦେଇ ନୌକାରେ ଦକ୍ଷିଣରୁ ଯାତ୍ରୀମାନେ ପୁରୀକୁ ଯାତ୍ରା କରୁଥିଲେ । ଏ ପ୍ରସଙ୍ଗ ବାସୁଦେବ

ରଥଙ୍କ 'ଗଙ୍ଗାବଂଶାନୁଚରିତମ୍' ନାମକ ଚମ୍ପୂ କାବ୍ୟରେ ବର୍ଣ୍ଣିତ ହୋଇଅଛି । ଅତଏବ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବାରୁଣୀ-ବନ୍ଦର ଜଳଯାତ୍ରା ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ସେହି ବନ୍ଦର ଦେଇ ପୁଣ୍ୟତୀର୍ଥ ଗୋକର୍ଣ୍ଣେଶ୍ୱର-ନିବାସ ସ୍ଥଳୀରୁ ଦାରୁବ୍ରହ୍ମ ସଂଗ୍ରହ କରି ଶ୍ରୀଧାମକୁ ଶବରମାନଙ୍କ ସାହାଯ୍ୟରେ ନିଆଯାଉଥିଲା ।

ଇତିହାସରୁ ଜଣାଯାଉଛି ଯେ, ନରସିଂହ ଦେବ (୧ମ)ଙ୍କ ପରେ ତାଙ୍କ ପୁଅ ଭାନୁଦେବ (୧ମ) ଖ୍ରୀ: ୧୨୬୪ରୁ ୧୨୭୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାଙ୍କ ରାଜତ୍ୱର ପ୍ରାୟ ଶେଷ ବେଳକୁ ଭୁବନେଶ୍ୱରସ୍ଥ ଅନନ୍ତ ବାସୁଦେବ ମନ୍ଦିର ସଂଲଗ୍ନ ଶିଳାଲେଖଟି ୧୨୦୦ ଶକାବ୍ଦ (ଖ୍ରୀ. ୧୨୭୮)ରେ ଖୋଦିତ ହୋଇଥିଲା । ସମ୍ଭବତଃ ସେତେବେଳେ ଐହି ମନ୍ଦିରସ୍ଥିତ ହସ୍ତ-ପଦ ସମ୍ପନ୍ନ ବଳଦେବ, ସୁଭଦ୍ରା, କୃଷ୍ଣଙ୍କ ପ୍ରସ୍ତର ମୂର୍ତ୍ତି ସଦୃଶ ପ୍ରତିମା ପୁରୀ ମନ୍ଦିରରେ ମଧ୍ୟ ପୂଜିତ ହେଉଥିଲେ । ସୁତରାଂ ଦାରୁମୂର୍ତ୍ତିଙ୍କ ନବକଳେବର କ୍ରିୟା ସମ୍ଭବତଃ ନରସିଂହ ଦେବ (୨ୟ)ଙ୍କ ରାଜତ୍ୱ କାଳରେ ସମ୍ପନ୍ନ ହୋଇଥିବ । ଏଠାରେ କହିବା ଆବଶ୍ୟକ ଯେ, ମହାରାଜା ଅନଙ୍ଗଭୀମ (୩ୟ) ଯେଉଁ ସମୟରୁ ତାଙ୍କ ସାମ୍ରାଜ୍ୟ ଶ୍ରୀପୁରୁଷୋତ୍ତମଙ୍କ ନାମରେ ଉତ୍ସର୍ଗ କରିଥିଲେ, ତଦବଧି ଶ୍ରୀମନ୍ଦିରରେ ପ୍ରଚଳିତ ସମସ୍ତ ରୀତି ନୀତି ରାଜ-ଚକ୍ରବର୍ତ୍ତୀଙ୍କ ତାଙ୍କାରେ ପାଳିତ ହୋଇଥିଲା । କିନ୍ତୁ ଶ୍ରୀବିଗ୍ରହମାନେ ପ୍ରସ୍ତରନିର୍ମିତ ହେଲେ ମଧ୍ୟ ରତ୍ନ ସିଂହାସନରେ ପ୍ରତିଷ୍ଠା ଲାଭ କରିଥିବାରୁ କୌଣସି ପର୍ବପର୍ବାଣୀରେ ତାଙ୍କୁ ସେହି ଆସନରୁ ଉଠାଇ ନେବା ଧର୍ମବିରୋଧ କର୍ମରୂପେ ପରିଗଣିତ ହେଉଥିଲା । ତେଣୁ ଉତ୍ସବରେ ବ୍ୟବହୃତ ଦେବତାମାନଙ୍କୁ ବିମାନରେ ବୋହିନେଇ ଯାତ୍ରା ଉତ୍ସବମାନ ସମାପନ କରିବା ବିଧି ପ୍ରଚଳିତ ହୋଇଥିଲା ।

ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ପ୍ରସ୍ତର ପ୍ରତିମାଙ୍କ ସ୍ଥାନରେ ଯେତେବେଳେ ଦାରୁ-ବିଗ୍ରହଙ୍କ 'ନବକଳେବର' ଉତ୍ସବ ଅନୁଷ୍ଠିତ ହେଲା, ସମ୍ଭବତଃ ରାଜକୀୟ ପଦ୍ଧତିରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ 'ଅଙ୍କ'ଉତ୍ସବ (ସୁନିଆ ଅର୍ଥାତ୍ ଭାଦ୍ରପଦ ଶୁକ୍ଳ ଦ୍ୱାଦଶୀ ଦିନ) ଶ୍ରୀମନ୍ଦିରରେ 'ବାମନ ଜନ୍ମ' ସଙ୍ଗେ ଅନୁଷ୍ଠିତ ହୋଇ ଉତ୍କଳର ତତ୍କାଳୀନ ପଞ୍ଜିକାରେ ପରେ ତାହା ବ୍ୟବହୃତ ହେଉଥିଲା ।

ଶ୍ରୀଜଗନ୍ନାଥଙ୍କ ଅଙ୍କ କେତେକ ଅଭିଲେଖରେ ଖୋଦିତ ହୋଇଛି, ଯଥା—

(୧) ଶ୍ରୀକୂର୍ମ ମନ୍ଦିର ଶିଳାଲେଖ (E. I. Vol. V. P.P 35-36. I. O. Vol. V Pt. ii. P.369)—ସ୍ୱସ୍ତି ଶ୍ରୀଶକ ବର୍ଷଂ ବୁଲୁ ୧୨୩୧ ଗୁନେଂଟିଂ ଶ୍ରୀଜଗନ୍ନାଥ ଦେବର ବଜସ୍ଥ ରାଜ୍ୟ ସମ୍ବତ୍ସରଂ ବୁଲୁ (୩) ଗୁଣ୍ଡାହ୍ନ କନ୍ୟା ଶୁକ୍ଳ ୫ମ୍ମୁ ଗୁରୁବାର ମୂନ ବାରଖଣ୍ଡୁ ଦେବ ଜସ୍ଥନ ଗାଭ ବେହ୍ନରଣ ମୂନାଂଦୁ...             (ଏଥିର ଠିକ୍ ସମୟ ଖ୍ରୀଷ୍ଟାବ୍ଦ ୫-୨-୧୩୧୦)

(୨) ପଞ୍ଚାଙ୍ଗ ମଠ ତାମ୍ର-ଶାସନ (O. H. R.J.Vol. IX. No. 142. P.P.19-27. Vol V. Pt. ii. P.P. 375)... ଶକ ନୃପତେଃ ଚତୁସ୍ତ୍ରିଂଶଦଧିକେ ଦ୍ୱାଦଶ ଶତ ପରିମିତେ ବସ୍ତରେ-ଅଢବାହ୍ନତେଷୁ ବର୍ଷଂ-ଭୁବନେଶ୍ୱର-ବର୍ଦ୍ଧନ-ମର୍ଦ୍ଧନ ଚତୁତ୍ୟାଦ ପ୍ରଶସ୍ତି ସ୍ତୋମ ବିରାଜମାନ ଶ୍ରୀପୁରୁଷୋତ୍ତମ ଦେବସ୍ୟ ପ୍ରବର୍ଦ୍ଧମାନ ବିଜୟ ରାଜ୍ୟେ ସପ୍ତମେଙ୍କେ ଅଭିଲିଖ୍ୟମାନେ ଧନୁଃ କୃଷ୍ଣ ନବମ୍ୟାଂ ଶୌରିବାରେ ଶ୍ରୀପୁରୁଷୋତ୍ତମ କଟକେ ଦକ୍ଷିଣ-ମହୋଦଧି ତୀରେ ବୀର ଶ୍ରୀମଦ୍ ଭାନୁଦେବରାଉତ ବର୍ମସ୍ୟାସ୍ମୁରରୋଗ୍ୟ ଐଶ୍ୱର୍ଯ୍ୟସ୍ୟ ବୃଦ୍ଧୟେ...

(ଏଥିର ଠିକ୍ ଖ୍ରୀଷ୍ଟାବ୍ଦ ୨୩-୧୨-୧୩୧୨)

(୩) ସିଂହାଚଳର ନୃସିଂହ ମନ୍ଦିର ଅଭିଲେଖ (S. I. I. Vol. VI. No.714. 10 Vol. V. Pt. ii, P. 390—"ସ୍ୱସ୍ତି ଶ୍ରୀଶକ ବର୍ଷଂ ବୁଲୁ ୧୨୪୧ ଗୁନେଟିଂ ଶ୍ରୀଦେବାଧିଦେବ ଶ୍ରୀଜଗନ୍ନାଥ ଦେବର ବଜସ୍ଥ ରାଜ୍ୟ ସମ୍ବତ୍ସରଂ ବୁଲୁ ୧୩ ଶ୍ରାହ୍ନ ଋଷଭ କୃଷ୍ଣ ୧୧ମ୍ମୁ ପଣ୍ଡିତ ବାର ମୂନାଂରୁ..."

(ଏଥିର ଠିକ କାଳ ଖ୍ରୀ: ୧୬-୫-୧୩୧୯)

ଉପରୋକ୍ତ ଅଭିଲେଖମାନଙ୍କରୁ ସ୍ପଷ୍ଟ ପ୍ରତିପାଦିତ ହେଉଛି ଯେ, ଉତ୍କଳରେ ଗଙ୍ଗବଂଶୀୟ ରାଜାମାନଙ୍କ 'ଅଙ୍କ' ଯେଉଁ ପଦ୍ଧତିରେ ପୂର୍ବେ ଗଣାଯାଉଥିଲା ଠିକ୍ ସେହି ପଦ୍ଧତିରେ ପ୍ରଥମ ଓ ଷଷ୍ଠଅଙ୍କକୁ ବାଦ ଦେଇ ଅନ୍ୟ ସବୁ 'ଅଙ୍କ' ଗଣାଯାଉଥିଲା । ତେଣୁ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ସର୍ବ ପ୍ରଥମେ ଖ୍ରୀ. ୧୩୦୯ରେ ଦ୍ୱିତୀୟ ଅଙ୍କଠାରୁ ଗଣାଯାଇ ଖ୍ରୀ: ୧୩୧୯ରେ ୧୩ ଅଙ୍କ ଗଣାଯାଉଥିଲା । ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ, ଶ୍ରୀପୁରୁଷୋତ୍ତମ—ଜଗନ୍ନାଥଙ୍କ ପ୍ରଥମ ଅଥବା ଦ୍ୱିତୀୟ 'ନବକଳେବର' ନିଶ୍ଚିତ ଭାବେ ୧୩୦୯ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ହୋଇଥିଲା । ସେ ବର୍ଷଟି ହେଉଛି ନରସିଂହ ଦେବ (୨ୟ)ଙ୍କ ରାଜତ୍ୱର ଶେଷ ବର୍ଷ ଏବଂ ତାଙ୍କ ପୁତ୍ର ଭାନୁଦେବଙ୍କ ରାଜତ୍ୱର ଆରମ୍ଭ ।

ଦ୍ୱିତୀୟ ନରସିଂହ ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦ୍ୱିତୀୟ ଭାନୁ-ଦେବଙ୍କ ରାଜତ୍ୱ କାଳ ଘୋର ଅଶାନ୍ତିରେ କଟିଥିଲା । କାରଣ ବଙ୍ଗର ସୁଲତାନ ଘିଆସୁଦ୍ଦିନ୍ ବାରମ୍ବାର ଉତ୍କଳ ଜୟ କରିବାକୁ ଅଭିଯାନ ଚଳାଇଥିଲେ, ତେଣୁ ଭାନୁଦେବଙ୍କ ଶ୍ରାଦ୍ଧ (ଅଙ୍କ) ଉତ୍ସବ ରାଜପ୍ରାସାଦରେ ନହୋଇ ଶ୍ରୀମନ୍ଦିରରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ନାମରେ ସ୍ୱର୍ଣ୍ଣ ମୁଦ୍ରାରେ ଅଙ୍କ ଅଙ୍କିତ ହେଉଥିଲା । ଘିଆସୁଦ୍ଦିନଙ୍କ ସଙ୍ଗେ ତାଙ୍କର ଶେଷ ଯୁଦ୍ଧ ବୋଧହୁଏ ଭାନୁଦେବଙ୍କୁ ବିଜୟଶ୍ରୀ ଆଣି ଦେଇଥିଲା । ତେଣୁ ପରବର୍ତ୍ତୀ କେନ୍ଦୁଲି ତାମ୍ରଶାସନରେ ତାଙ୍କ ପ୍ରଶସ୍ତି ମଧ୍ୟରେ ନିମ୍ନୋକ୍ତ ଶ୍ଳୋକଟି ଯୋଗ କରାଗଲା :

"ରାଜ୍ଞଃ ଯସ୍ୟ ଗୟାସଦ୍ଦୀନ ସମର ପ୍ରାରବ୍ଧ ଶୌର୍ଯ୍ୟ କ୍ଷତ,
ପ୍ରୌଢ଼ାନେକନରେନ୍ଦ୍ରବନ୍ଦିରଗଳତ୍ କୀଲାଳ ପୂର୍ଣ୍ଣାବନୀ ।
ତତ୍କାଳ କ୍ଷତବକ୍ଷସାଂ କରକୁଲା ସ୍ଥାଲୋତ୍ଥିତ ଶୋଣିତା,
ସାରୋଦ୍ୟାପି ଦିଗନ୍ତରେଷୁ ବିଳସତ୍ ଧନ୍ୟାନୁରାଗଚ୍ଛଲାତ୍ ॥"

ଜିଆବାର୍ଣ୍ଣି (Zia Barni) ନାମକ ଜଣେ ପାରସ୍ୟ ଐତିହାସିକଙ୍କ ବିବରଣୀରେ ଲେଖାଅଛି ଯେ, ଭାନୁଦେବଙ୍କ ରାଜତ୍ୱ କାଳରେ, ଅର୍ଥାତ୍ ୧୩୨୧ ଖ୍ରୀଷ୍ଟାବ୍ଦରେ ଘିଆସୁଦ୍ଦିନ ତାଙ୍କ ପୁତ୍ର ଉଲୁଗଖାନ୍ (Ulugh Khan)କୁ ଦାକ୍ଷିଣାତ୍ୟର ଓ୍ୱାରଙ୍ଗଲ୍ ଓ ତେଲେଙ୍ଗାନା ଜୟ କରିବାକୁ ପଠାଇଥିଲେ । ଠିକ୍ ସେହି ବର୍ଷ ତାଙ୍କର କୂଟନୈତିକ ମନ୍ତ୍ରଣା ହେତୁ କଳିଙ୍ଗର ଦକ୍ଷିଣସୀମାରେ କେତେକ କନ୍ଧ ଆଦିବାସୀ ଖଣ୍ଡପାଳ ବିଦ୍ରୋହ ସୃଷ୍ଟି କରିଥିଲେ । ତେଣୁ ଭାନୁ ଦେବ (୨ୟ) ସେ ଅଞ୍ଚଳରେ ଶାନ୍ତି ରକ୍ଷା ପାଇଁ କଳିଙ୍ଗର ରକ୍ଷାପାଳ ରୂପେ ନିଯୁକ୍ତ ହୋଇଥିବା ଶ୍ରୀରାମ ସେନାପତିଙ୍କୁ ପଠାଇ ସେ ଅଞ୍ଚଳର ବିଦ୍ରୋହ ଅବିଳମ୍ବେ ଦମନ କରାଇଥିଲେ । ଭାନୁଦେବଙ୍କ ରାଜତ୍ୱକାଳରେ ତାଙ୍କ ସାମ୍ରାଜ୍ୟରେ ଏପରି ଉପଦ୍ରବମାନ ବିଭିନ୍ନ ଅଞ୍ଚଳରେ ସୃଷ୍ଟି ହୋଇଥିଲା । ତେଣୁ ୧୩୦୮ ଖ୍ରୀଷ୍ଟାବ୍ଦରେ ତାଙ୍କ ପିତା ନରସିଂହ ଦେବ (୨ୟ)ଙ୍କ ମୃତ୍ୟୁ ହେତୁ ସେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ଶ୍ରୀମନ୍ଦିରରେ ଦେବତାଙ୍କ ନାମରେ 'ସୁନିଆ' ପ୍ରଚଳନ କରିଥିବା ଜଣାଯାଏ ।

'ସୁନିଆ' ବିଧି ଅନୁସାରେ ଗଙ୍ଗ ରାଜାମାନଙ୍କର ସେ ବର୍ଷର 'ଅଙ୍କ' ମୁଦ୍ରିତ ହୋଇ ସ୍ୱର୍ଣ୍ଣ ମୁଦ୍ରା ନିର୍ମିତ ହେଉଥିଲା । ଐତିହାସିକମାନେ ସେହି

ମୁଦ୍ରାକୁ 'ଗଙ୍ଗ ଫେନମ୍' (Ganga-Phenam) ନାମକରଣ କରିଛନ୍ତି । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସେହି ମୁଦ୍ରା ମିଳିଛି; କଟକ, ଅନୁଗୁଳ, ବଲାଙ୍ଗୀର ପ୍ରଭୃତି ଜିଲ୍ଲାମାନଙ୍କରୁ ଏ ସମ୍ପର୍କରେ ସବିଶେଷ ବିବରଣୀ ଏ ଲେଖକର **"Inscriptions of Orissa", Vol. III. Pt. ii. P.P. 361-364** ଦ୍ରଷ୍ଟବ୍ୟ । ଏହି ମୁଦ୍ରାମାନଙ୍କ ଏକପାର୍ଶ୍ୱରେ ରାଜାଙ୍କର କିମ୍ବା ଦେବତାଙ୍କ ଅଙ୍କ ଏବଂ ଅନ୍ୟପାର୍ଶ୍ୱରେ ଓଡ଼ିଆ 'ସ' ଅକ୍ଷର ସହ ଏକ ଚନ୍ଦ୍ର କିମ୍ବା ବୃଷଭ ଓ ଖଣ୍ଡ ଚନ୍ଦ୍ର ପ୍ରତୀକ ଲାଞ୍ଛନ ମୁଦ୍ରିତ ହୋଇଥିବା ଦେଖାଯାଏ । ସ୍ଥୂଳରେ କହିବାକୁ ଗଲେ ଭାନୁଦେବ (୨ୟ)ଙ୍କ ରାଜତ୍ୱ କାଳରେ ଖ୍ରୀ: ୧୩୧୦ରୁ ଆରମ୍ଭ କରି ଦେବାଧିଦେବ ଶ୍ରୀଜଗନ୍ନାଥଙ୍କ ୩ ଅଙ୍କଠାରୁ ୧୩ ଅଙ୍କ ପର୍ଯ୍ୟନ୍ତ ଯେଉଁ 'ଅଙ୍କ'-ଉତ୍ସବ ଶ୍ରୀମନ୍ଦିରରେ ହୋଇଥିଲା, ତାହା ସମ୍ଭବତଃ ପ୍ରଥମ ବା ଦ୍ୱିତୀୟ 'ନବକଳେବର' ପରେ ହୋଇଥିବା ସମ୍ଭବ ।



# ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନ-ଅଭିଲେଖ

ପବିତ୍ର ନୀଳାଚଳ ଧାମର ଶ୍ରୀମନ୍ଦିର ଉପରେ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀରେ ସୁଲତାନ ଫିରୋଜ ତୋଗଲକ୍‌ଙ୍କ ଓଡ଼ିଶା ଅଭିଯାନଠାରୁ ଆରମ୍ଭକରି କେତେ ଯେ ଆକ୍ରମଣ ହୋଇଯାଇଛି ସେଥିର ସମ୍ପୂର୍ଣ୍ଣ ବିବରଣୀ ଅଦ୍ୟାପି ଜଣାଯାଇ ନାହିଁ । ତେବେ ପ୍ରତି ଆକ୍ରମଣରେ ଶ୍ରୀମନ୍ଦିରର କିଛି ନା କିଛି ଅଂଶ ଯେ ନିଶ୍ଚୟ ନଷ୍ଟ ଭ୍ରଷ୍ଟ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ସମ୍ଭବତଃ ପରବର୍ତ୍ତୀ କାଳରେ ସେହି ଭଗ୍ନ ଅଂଶଗୁଡ଼ିକର ପୁନଃସଂସ୍କାର କରାଯାଇଥିବା ପ୍ରମାଣ ମିଳେ ।

୧୯୫୫ ମସିହାରେ ଜଗନ୍ନାଥ ମନ୍ଦିରସ୍ଥ ଅଭିଲେଖଗୁଡ଼ିକର ଶୁଦ୍ଧପାଠ ଓ ଗବେଷଣା ପାଇଁ ମୁଁ ଓ ସ୍ୱର୍ଗୀୟ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ସହେଁ ଯାଇଥିଲୁଁ । ସେତେବେଳେ ଠାକୁରମାନଙ୍କର 'ଅଣସର' (ଅନବସର) ହୋଇଥାଏ । ତେଣୁ ରତ୍ନସିଂହାସନ ମୂଳରେ ଥିବା ଦୁଇଟି କ୍ଷୁଦ୍ର ଲେଖା ଓ ପ୍ରତିମା ପରୀକ୍ଷା କରିବା ସମ୍ଭବ ହୋଇଥିଲା । ଓଡ଼ିଶାର ଗଜପତି ମହାରାଜା ଶ୍ରୀବୀରକେଶରୀ ଦେବ ଓ ତାଙ୍କ ଠାକୁରମାନଙ୍କର ପ୍ରତିମା ସେଥିରେ ନିଖୁଣ ଓ ସୁନ୍ଦର ଭାବେ ଖୋଦିତ ହୋଇରହିଛି । ଆଉ ମଧ୍ୟ ଓଡ଼ିଆରେ ଲେଖାଅଛି "ଏ ବୀରକେଶରୀଦେବ" ଓ 'ଏ ତାଙ୍କ ଠାକୁର ମା' । ଏଥିରୁ ସ୍ପଷ୍ଟ ଜଣାଗଲା ଯେ ରତ୍ନସିଂହାସନର ନିର୍ମାତା ନିଜେ ବୀରକେଶରୀଦେବ କିମ୍ବା ତାଙ୍କର ଠାକୁରମା ଅର୍ଥାତ୍ ଗଜପତି ଗୋପୀନାଥ ଦେବଙ୍କର ବିଧବାରାଣୀ ।

ଇତିହାସରୁ ପ୍ରମାଣିତ ହୁଏ ଯେ, ବୀରକେଶରୀଦେବ ଖ୍ରୀଷ୍ଟାବ୍ଦ ୧୭୩୬ରୁ ୧୭୯୩ ପର୍ଯ୍ୟନ୍ତ ଅର୍ଥାତ୍ ୫୭ ବର୍ଷ ଖୋର୍ଦ୍ଧାରେ ରାଜତ୍ୱ କରିଥିଲେ । ସେତେବେଳେ ଓଡ଼ିଶା ମୁସଲମାନମାନଙ୍କର ଶାସନାଧୀନ ଥିଲା । ତେଣୁ ଶ୍ରୀମନ୍ଦିରର ସଂସ୍କାର ନିମନ୍ତେ ଅର୍ଥବ୍ୟୟ କରିବାକୁ ତତ୍କାଳୀନ ଖୋର୍ଦ୍ଧାର ଭୋଇବଂଶୀୟ ରାଜାମାନେ ସାହସ କରୁ ନଥିଲେ । କିନ୍ତୁ ଉପଯୁକ୍ତ ଅନୁକୂଳ ସମୟ ଆସିଲେ ମନ୍ଦିରର କେତେକ ଭଗ୍ନାଂଶ ଗଠନ କରିବାପାଇଁ ସମ୍ଭବତଃ ସେହି ବଂଶର ରାଜାମାନେ ଅର୍ଥ ସଞ୍ଚୟ କରୁଥିଲେ । ଶ୍ରୀବୀରକେଶରୀ ଦେବଙ୍କ ସମୟରେ ସେହିପରି ଏକ ଅନୁକୂଳ ସମୟ ଉପସ୍ଥିତ ହେଲା । କାରଣ ୧୭୫୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରୁ ମୁସଲମାନ ରାଜତ୍ୱ ଯାଇ ସେଠାରେ ମରହଟ୍ଟା

ଶାସନ ପ୍ରତିଷ୍ଠା ଲାଭକଲା । ମରହଟ୍ଟାମାନେ ଶ୍ରୀଜଗନ୍ନାଥଙ୍କ ଅତ୍ୟନ୍ତ ଭକ୍ତ କରୁଥିଲେ । ଏ ସୁଯୋଗରେ ଶ୍ରୀମନ୍ଦିରର ସଂସ୍କାର ନିମନ୍ତେ ଉଦ୍ଦିଷ୍ଟ ଧନରେ ସାର କେଶରୀ ଦେବ ତାଙ୍କ ଠାକୁରମାନଙ୍କର ନିର୍ଦ୍ଦେଶ ମତେ ରତ୍ନସିଂହାସନ ସଙ୍ଗେ ଭୋଗମଣ୍ଡପ, ଦୋଳବେଦୀ ପ୍ରଭୃତି ନିର୍ମାଣ କରିଥିଲେ ।

ଏଠାରେ ଗୋଟିଏ ପ୍ରଶ୍ନ ହେଉଛି, ଖ୍ରୀଷ୍ଟୀୟ ୧୮ଶ ଶତାବ୍ଦୀ ପୂର୍ବରୁ ଯେଉଁ ରତ୍ନବେଦୀ କିମ୍ବା ଠାକୁରମାନଙ୍କର ବିଜେ 'ଚକା' (ପୀଠ) ଥିଲା, ତାହା କ'ଣ ବିଧର୍ମୀମାନେ ଭାଙ୍ଗି ନଷ୍ଟକରି ଦେଇଥିଲେ ? ସାଧାରଣତଃ ହିନ୍ଦୁ ମନ୍ଦିରରେ ବିଗ୍ରହ ପ୍ରତିଷ୍ଠା କଲାବେଳେ ଅଧିକାଂଶ ମନ୍ଦିରର ପୀଠତଳେ ମୂଲ୍ୟବାନ ଧାତୁ (ସୁନା, ରୂପା ପ୍ରଭୃତି) ଓ ରତ୍ନ ସମୂହ ପ୍ରୋଥିତ କରି ତଦୁପରି ବେଦୀକା ସ୍ଥାପିତ ହୁଏ । ତେଣୁ ତାହା "ରତ୍ନସିଂହାସନ" ନାମରେ ଆଖ୍ୟାତ ହେବା ପ୍ରଥା ରହିଛି । ତେଣୁ ଶ୍ରୀଠାକୁରଙ୍କର 'ଚକା' ତଳେ ପ୍ରୋଥିତ ଧନରତ୍ନ ଲୁଣ୍ଠନ ଉଦ୍ଦେଶ୍ୟରେ ବିଧର୍ମୀ ମୁସଲମାନମାନେ ଖୋଳି ତାଡ଼ି ନଷ୍ଟ କରିଦେବା କିଛି ବିଚିତ୍ର ନୁହେଁ । ତେବେ, ଶ୍ରୀଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କର ବିଶାଳ ଆକୃତି ଓ ଗୁରୁତା ଦୃଷ୍ଟିରୁ ତାଙ୍କ ପୀଠ ଅତି ଶକ୍ତ ପ୍ରସ୍ତରରେ ନିର୍ମିତ ହୋଇଥିଲା । ବିଧର୍ମୀ ଲୁଣ୍ଠନକାରୀମାନେ ସେହି ପୀଠ ପ୍ରସ୍ତରଗୁଡ଼ିକ ସ୍ଥାନଚ୍ୟୁତ କରିଥିବା ସମ୍ଭବ । ଏ ଦୃଷ୍ଟିରୁ ୧୯୫୫ ମସିହାରେ ଠାକୁରମାନଙ୍କର ସେହି ସ୍ଥାନଚ୍ୟୁତ 'ଚକା' ପ୍ରସ୍ତରର ଅନୁସନ୍ଧାନରେ ମୁଁ ଓ ସ୍ୱର୍ଗୀୟ ପରମାନନ୍ଦବାବୁ ବ୍ୟସ୍ତ ହେଲୁ, କିନ୍ତୁ କେଉଁଠାରେ ହେଲେ ସେଥିର ସନ୍ଧାନ ପାଇଲୁନାହିଁ । ପୁରୀର କେହି ହେଲେ ଆମକୁ ସେଥିର ସନ୍ଧାନ ଦେଇ ପାରି ନଥିଲେ । ପାଖ ୧୪ ବର୍ଷ ପରେ ମୋ ମନରେ ସେହି ସନ୍ଦେହ ତୁଟିଗଲା, ଯେତେବେଳେ ତା ୪-୭-୧୯୬୯ରେ କଟକ ଜିଲ୍ଲା କେନ୍ଦ୍ରାପଡ଼ା ନିକଟସ୍ଥ ଇନ୍ଦୁପୁର ଗ୍ରାମର ଶ୍ରୀନଟବର ଜଗଦେବ ମୋତେ ସମ୍ବାଦ ଦେଲେ ଯେ, ତାଙ୍କ ଗ୍ରାମରେ ଯେଉଁ ଜଗନ୍ନାଥ ମନ୍ଦିର ଅଛି ସେଥିରେ ଠାକୁରମାନେ ବିଜେ ହୋଇଥିବା "ରତ୍ନସିଂହାସନ" (ଚକା) ଉପରେ କେତେକ ଅଭିଲେଖ ରହିଛି । ଏହା ଶୁଣି ମୁଁ ସଙ୍ଗେ ସଙ୍ଗେ ସାଂସ୍କୃତିକ ବିଭାଗର ଅଧିକ୍ଷଙ୍କୁ ଅନୁରୋଧ କରି ସେଥିରେ ଗୋଟିଏ ପ୍ଲାଷ୍ଟର କାଷ୍ଟ (ପ୍ଲାଷ୍ଟରରେ ତିଆରି ଛାଞ୍ଚ) ତିଆରି କରିବାକୁ ଯୋଗାଡ଼ କଲି । ଓଡ଼ିଶା ସଂଗ୍ରହାଳୟ ପକ୍ଷରୁ ପ୍ଲାଷ୍ଟର-କାଷ୍ଟ (**Plaster-Cast**) ନିର୍ମିତ ହୋଇ ମ୍ୟୁଜିୟମକୁ ଆସିଲା ।

ଏଠାରେ କହି ରଖିବା ଆବଶ୍ୟକ ଯେ, ୧୯୫୪ ମସିହାରେ ଓଡ଼ିଶା ସଂଗ୍ରହାଳୟର ଭୂତପୂର୍ବ ଅଧିକ୍ଷ ସ୍ୱର୍ଗୀୟ ବିପିନ ବିହାରୀ ନାଥ ଏହି ଅଭିଲେଖର

କେତେକ ଅଂଶ ପାଠକରି ତାହା ଓଡ଼ିଶାର ଐତିହାସିକ ଗବେଷଣା ପତ୍ରିକା (Orissa Historical Research Journal, Vol. III) ରେ ପ୍ରକାଶ କରିଥିଲେ । କିନ୍ତୁ ତାଙ୍କ ଲେଖାରେ ଅଭିଲେଖର ଗୋଟିଏ ଶୁଦ୍ଧପାଠ ପ୍ରକାଶ କରିବା ସମ୍ଭବ ହୋଇନାହିଁ । କାରଣ, ଯେଉଁ ବିଶାଳ ପ୍ରସ୍ତରରେ ପୀଠ (ଚକା) ନିର୍ମିତ ହୋଇଥିଲା, ସେଥିର କେତେକ ଅଂଶ କାନ୍ଥରେ ଲାଗି ରହିଥିବାରୁ ସମଗ୍ର ଅଭିଲେଖଟି ପରୀକ୍ଷା କରିବା ସମ୍ଭବ ହୋଇ ନଥିଲା ।

ବର୍ତ୍ତମାନ ଯେଉଁ ଅବସ୍ଥାରେ ସେହି ପ୍ରସ୍ତର ଖଣ୍ଡୋଟି ସ୍ଥାନଚ୍ୟୁତ କରି ସେଥିରୁ 'କାଷ୍ଟିଂ' କରାଯାଇ ପାରିଲା, ସେଥିରେ ମ୍ୟୁଜିୟମର କେତେକ କର୍ମଚାରୀଙ୍କ ପ୍ରଶଂସନୀୟ କୃତିତ୍ୱ ରହିଛି । ଏହି ମୂଲ୍ୟବାନ ରତ୍ନସିଂହାସନ ଅଭିଲେଖ ଖଣ୍ଡୋଟି ଯଥାଯଥ ଭାବେ ଓଡ଼ିଶାର ସଂଗ୍ରହାଳୟରୁ ଦର୍ଶକ ମଞ୍ଚରେ ସ୍ଥାପିତ ହେବା ଆବଶ୍ୟକ । କାରଣ ଶ୍ରୀନୀଳାଚଳଧାମର ପୂଣ୍ୟପୀଠର ପ୍ରାଚୀନ ସ୍ମାରକ ବହନକରି ଯେତେ ସେହି 'ଚକା'ଗୁଡ଼ିକ ମୁସଲମାନଙ୍କ ଦ୍ୱାରା ସ୍ଥାନଚ୍ୟୁତ ହେଲାପରେ କେହି ଭକ୍ତଙ୍କ ଚେଷ୍ଟାରେ ପୁରୀରୁ ଆଣି ଇନ୍ଦ୍ରପୁରରେ ସ୍ଥାପନ କରାଯାଇଥିଲା । ସ୍ଥାନୀୟ କିମ୍ବଦନ୍ତୀରୁ ଜଣାଯାଏ ଯେ, ଶ୍ରୀମନ୍ଦିରସ୍ଥ ରତ୍ନସିଂହାସନର ପବିତ୍ରତା ରକ୍ଷା କରିବା ଉଦ୍ଦେଶ୍ୟରେ ଏଠାରେ (ଇନ୍ଦ୍ରପୁରରେ) ଗୋଟିଏ ସ୍ୱତନ୍ତ୍ର ମନ୍ଦିର ଗଠିତ ହୋଇ ସେହି ତିନି 'ଚକା' (ପୀଠ) ପ୍ରସ୍ତରଙ୍କୁ ପୂଜା କରାଯାଉଥିଲା । ପରେ ତଦୁପରି ତିନିମୂର୍ତ୍ତି ସ୍ଥାପିତ ହେଲେ ।

ବର୍ତ୍ତମାନ ଦେଖାଯାଉ, ସେହି ଚକାପଥରର ଅଭିଲେଖ ଆମକୁ କି ସମ୍ବାଦ ଦେଉଛି । ଯେଉଁ ପ୍ରାଚୀନ-ଓଡ଼ିଆ-ଲିପି ସେଥିରେ ବ୍ୟବହୃତ ହୋଇଛି, ତାହା ଆମ ଦେଶରେ ଖ୍ରୀଷ୍ଟୀୟ ୧୫ଶ ବା ୧୬ଶ ଶତାବ୍ଦୀରେ ବ୍ୟବହୃତ ହେଉଥିଲା । ପୁଣି ସେଥିରେ ବ୍ୟବହୃତ ଭାଷା ମଧ୍ୟ ଅତି ଗାଁଉଲି ଏବଂ ପ୍ରାଚୀନ ଓଡ଼ିଆ ଭାଷା ବୋଲି ସ୍ପଷ୍ଟ ପ୍ରତିପାଦିତ ହୁଏ । ପ୍ରତ୍ନ-ଓଡ଼ିଆ ଲିପିରେ ନିତାନ୍ତ ଗାଁଉଲି ଭାଷା ବ୍ୟବହୃତ ହୋଇଥିବାରୁ ପୁଣି ଚକାଗୁଡ଼ିକରେ ଖୋଦିତ ପଂକ୍ତିଗୁଡ଼ିକ ଓଲଟ-ପାଲଟ ହେବାରୁ ଲିଖିତ ବିଷୟ ସ୍ପଷ୍ଟ ଜଣାଯାଉନାହିଁ । ତେବେ, ଏକଥା ସ୍ପଷ୍ଟ ହେଉଛି ଯେ, ଏହି ମନ୍ଦିରରେ ଭୋଗରାଗ ଚଳାଇବାକୁ ଶ୍ରୀପ୍ରତାପ ଗଜପତିଙ୍କ ରାଜତ୍ୱର ୬୮ଶ୍ରାଙ୍କ ବା ଅଙ୍କରେ କିଛି ଦାନ କରାଯାଉଥିଲା । ବର୍ତ୍ତମାନ ନିମ୍ନରେ ସେହି ଲିପିର ଛିନ୍ନ ପଂକ୍ତିଗୁଡ଼ିକ ଦିଆଗଲା:—

(୧—ଶ୍ରୀଜଗନ୍ନାଥଙ୍କ 'ଚକା')

୧ମ ଧାଡ଼ି—......ପଣ ଥାଉ ଏ ୪୦ କାହ୍ନାଣ । କୁଧ ପ୍ରମେଶ୍ୱରଙ୍କୁ ଲଗି ହୋଇ ପଣ ହୋଇବ । ଖାତକ ଅ.ଢ (ମହାସ୍ନବ)......

୨ୟ ଧାଡ଼ି—......୪୦ କରନ୍ତ ୨୧ ଭରଣ ଶ୍ରୀହ୍ନତ ଧାନ ଘ୍ନର ୪ଭରଣ କଉଡ଼ି ୨୫ କାହ୍ନାଣ ଏ ଧାନ କଉଡ଼ି କଳ ( ତ )......

୩ୟ ଧାଡ଼ି—......କୋଲ୍‌ରେ ଆଠ କୋରକୁ କେଲ୍‌ରେ ତିନ ଫଏସଲୁ ତଟରେ ଆଏ କରବ ଏ ଭତବେଳା ଉଠା......

୪ର୍ଥ ଧାଡ଼ି—......କ (ଳ) ନ୍ତ୍ର ଦେବେ ଘ୍ରଛଣ ପଣ ଆଠଙ୍କୁ କୁରଙ୍କ ଲଗୀ ହୋଇଭେକ ହୋଇବ ସୀର୍ନ ହୋଇ ଏକ ଥାଇ......

( ୨—ଶ୍ରୀବଳଭଦ୍ରଙ୍କ 'ଚକା' )

୧ମ ଧାଡ଼ି—......ଲେଙ୍କା ୧ ॥ ୧ ଘ୍ନଉଳ ଦେବେ ତେଜ ଆପ(ଣ) ଦେବେ ଏ ଇସ୍ଥ (ଶ୍ରୂ)ବର ଦୋରେହ୍ନା

୨ୟ ଧାଡ଼ି—କର (ଳ)ନ୍ତର (-) ଗ ୩୧ ଲେ ଗ ୧୪ ଛୋଲ ୫ ଏହ୍ନା ତାବତ ଗନ୍ତାପଣ ଦେବେ ( । ) ପେଲ୍ ନ ପାରଇ ଏଥକୁ ଘ୍ନମ୍ଭଘ୍ନ ପ୍ରବଦାନର

୩ୟ ଧାଡ଼ି—ଚକେରଣ ଜେ ଥାଇ ଏହ୍ନା ଯେନଇ ପ୍ରବ(ର୍ତ୍ତି)ନ କଘଇ

୪ର୍ଥ ଧାଡ଼ି—ସେଇ ନଗପୁସ୍ତ୍ର ଦେବଙ୍କର (ହେ୍‌ାହେ)

( ୩—ସୁଭଦ୍ରାଙ୍କ 'ଚକା' )

୧ମ ଧାଡ଼ି—......ଶ୍ରୀପ୍ରତାପଗଜପତ୍ତି, ଏ ୨୮ ଶ୍ରାଘ୍ନ ଏ

ବର୍ତ୍ତମାନ ପ୍ରଶ୍ନ ହେଉଛି, କଏ ସେ ରାଜା ଶ୍ରୀ ପ୍ରତାପ ଗଜପତି, ଯାହାଙ୍କର ୨୮ ଅଙ୍କରେ ଏ ଲିପିଟି ଖୋଦିତ ହୋଇଥିଲା ? ଓଡ଼ିଶାରେ ଏ ନାମରେ ଦୁଇଜଣ ମାତ୍ର ରାଜା ଇତିହାସରୁ ପ୍ରତିପାଦିତ ହୁଅନ୍ତି । ଜଣେ ସୂର୍ଯ୍ୟବଂଶୀୟ ରାଜା ପ୍ରତାପରୁଦ୍ର ଗଜପତି ଏବଂ ଭୋଇ ବଂଶୀୟ ଅନ୍ୟ ଜଣେ ଗୋବିନ୍ଦ ବିଦ୍ୟାଧରଙ୍କ ପୁତ୍ର, ପ୍ରତାପ ଦେବ ବା ପ୍ରତାପ ଚଜପତି । ପୁରୀର ଶ୍ରୀମନ୍ଦିର ଜୟ ବିଜୟ ଦ୍ୱାରରେ ଏ ଦୁଇଜଣ ରାଜାଙ୍କର ଅଭିଲେଖ ରହିଛି । ଗଜପତି ପ୍ରତାପରୁଦ୍ର ଦେବ ତାଙ୍କ ରାଜତ୍ୱର ଚୌଥଅଙ୍କରେ ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କ ସମ୍ମୁଖରେ ଦଣ୍ଡଧୂପ ପରେ ବଡ଼ସିଂହାର ମଧ୍ୟରେ 'ଗୀତଗୋବିନ୍ଦ'

ବୈଷ୍ଣବମାନେ ଗାନ କରିବା ବ୍ୟବସ୍ଥା ହୋଇଅଛି । ଗୀତଗୋବିନ୍ଦ ବ୍ୟତୀତ ଅନ୍ୟଗାନ ବା ସଙ୍ଗୀତ ବୋଲି ନ ଶିଖିବାକୁ ଆଦେଶ ଦିଆଯାଇଛି । ଶୁଣାଯାଏ ୧୯୪୦ ମସିହାରେ ଭୁବନେଶ୍ୱର ସନ୍ନିକଟ ପ୍ରତାପପୁର ଗ୍ରାମରୁ କେତୋଟି ଦୀର୍ଘ ସ୍ୱର୍ଣ୍ଣ ଫଳକ ଲିପିରେ ପ୍ରତାପରୁଦ୍ରଙ୍କର କେତେକ ଦାନ ସମ୍ବଳିତ ତଥ୍ୟ ଉଲ୍ଲେଖ ଅଛି । ଏହି ସ୍ୱର୍ଣ୍ଣ ଫଳକ ଦାନଶାସନଗୁଡ଼ିକ ବର୍ତ୍ତମାନ ପୁରୀର ଏମାର ମଠରେ ରକ୍ଷିତ ଅଛି । ବହୁ ଚେଷ୍ଟା ସତ୍ତ୍ୱେ ଅଦ୍ୟାପି ଏହି ସ୍ୱର୍ଣ୍ଣ ଲିପିର ରହସ୍ୟ ଏବଂ ସେଥିର ଐତିହାସିକ ତଥ୍ୟ ପ୍ରକାଶ ପାଇନାହିଁ । ଦୁଃଖର ବିଷୟ ଏପରି ଅତି ମୂଲ୍ୟବାନ ଅନୁଶାସନ (ଯାହାକି ଭାରତବର୍ଷର ଅନ୍ୟ କୌଣସି ରାଜ୍ୟରେ ନଥିଲି) ଉଦ୍ଧାର କରିବାକୁ କେହିହେଲେ ଆଜଯାଏ ସମର୍ଥ ହେଲେ ନାହିଁ । ସେ ଯାହାହେଉ, ପ୍ରତାପରୁଦ୍ର ଦେବ ଖ୍ରୀଷ୍ଟୀୟ ୧୪୯୭-୯୮ ସାଲଠାରୁ ୧୫୩୩-୩୪ ପର୍ଯ୍ୟନ୍ତ ୩୭ବର୍ଷ ଶାସନ କରିଥିଲେ । ତାଙ୍କ ପରେ ଓଡ଼ିଶାରେ ଘୋର ଅରାଜକତା ଦେଖାଦେଲି । ମାଦଳାପାଞ୍ଜିରୁ ବର୍ଣ୍ଣିତ ଅଛି, ତାଙ୍କ ପୁତ୍ର କାଳୁଆ-ଦେବ ଓ କଖାରୁଆ ଦେବ ଅଳ୍ପ ସମୟ ରାଜତ୍ୱ କରି ଅକାଳ ମୃତ୍ୟୁ କବଳିତ ହୋଇଥିଲେ । ତା'ପରେ ଭୋଇବଂଶୀୟ ରାଜା ଗୋବିନ୍ଦ ବିଦ୍ୟାଧର ଓଡ଼ିଶା ସିଂହାସନ ଆରୋହଣ କରି ୧୫୪୮-୪୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜ୍ୟଭାର ଗ୍ରହଣ କଲେ । ତାଙ୍କ ପରେ ତାଙ୍କ ପୁତ୍ର ଚନ୍ଦ୍ରପ୍ରତାପ ଦେବ ସିଂହାସନ ଆରୋହଣ କରି ପ୍ରାୟ ୧୦ବର୍ଷ ମାତ୍ର ରାଜତ୍ୱ କରିଥିଲେ । ଏହାପରେ ଚାଳୁକ୍ୟ ବଂଶୀୟ ରାଜା ମୁକୁନ୍ଦଦେବ ୧୫୫୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକାର କରିଥିବା ଇତିହାସରୁ ପ୍ରମାଣିତ ହୁଏ ।

ଉପରୋକ୍ତ ବିବରଣୀରୁ ଜଣାପଡ଼ୁଛି ଯେ, ସୂର୍ଯ୍ୟବଂଶୀୟ ରାଜା ପ୍ରତାପ-ରୁଦ୍ର ଦେବଙ୍କ ରାଜତ୍ୱକାଳ ପ୍ରାୟ ୩୭ବର୍ଷ ଏବଂ ଭୋଇବଂଶୀୟ ରାଜା ଚନ୍ଦ୍ରପ୍ରତାପଙ୍କ ରାଜତ୍ୱକାଳ ୧୦ ବର୍ଷରେ ଶେଷ ହୋଇଥିଲି । ଓଡ଼ିଶାରେ ପୂର୍ବେ ଗଜପତି ରାଜାମାନେ ଯେଉଁ ଶ୍ରାଙ୍କ ବା ଅଙ୍କ ବ୍ୟବହାର କରୁଥିଲେ ସେଥିରେ ଗୋଟିଏ ସ୍ୱତନ୍ତ୍ର ନିୟମ ଥିଲି ଯେ, ରାଜତ୍ୱର ୧ମ, ୬ଷ୍ଠ, ୧୦ମ, ୧୬ଶ, ୨୦ଶ, ୨୬ଶ, ୩୦ଶ ପ୍ରଭୃତି ବର୍ଷ ଗଣାଯିବ ନାହିଁ । ଏ ଦୃଷ୍ଟିରୁ ବିଗ୍ଭର କଲେ ଉପରୋକ୍ତ ଇନ୍ଦ୍ର ପୁରସ୍ଥ ସୁଭଦ୍ରାଙ୍କ 'ତକ୍ତା'ରେ ଖୋଦିତ ଲିପିରେ ଥିବା ଶ୍ରୀପ୍ରତାପ ଗଜପତିଙ୍କ ୨୮ ଶ୍ରାଙ୍କ (ଅଙ୍କ) ତାଙ୍କ ରାଜତ୍ୱର ଦ୍ୱାବିଂଶ ବର୍ଷକୁ ସୂଚୀତ କରୁଛି । ଭୋଇ ବଂଶୀୟ ରାଜା ଚନ୍ଦ୍ର ପ୍ରତାପ ଦେବ ୧୦ବର୍ଷ ମାତ୍ର ରାଜତ୍ୱ କରିଥିବା ଦୃଷ୍ଟିରୁ ତାଙ୍କୁ ଶ୍ରୀ ପ୍ରତାପ ଗଜପତି ବୋଲି ନିର୍ଣ୍ଣୟ କରିବା ସମୀଚୀନ ନୁହେଁ । ଏଣୁ ଆମ୍ଭେ ଏହି ଲିପିକୁ

ସୂର୍ଯ୍ୟବଂଶୀୟ ମହାରାଜା ପ୍ରତାପରୁଦ୍ରଙ୍କ ସମୟର ବୋଲି ସ୍ଥିର କରିପାରୁ । ତା'ହେଲେ ଏଥିର ଠିକ ସମୟ ଖ୍ରୀଷ୍ଟାବ୍ଦ (୧୪୯୭+୨୨) ୧୫୧୯ ବୋଲି ନିର୍ଣ୍ଣୟ କରିବା ଯୁକ୍ତିଯୁକ୍ତ ।

ମୁସଲମାନ ଇତିହାସରୁ ଜଣାଯାଏ, ୧୩୬୦ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀର ସୁଲତାନ ଫିରୋଜ ତୋଗଲକ ଗଙ୍ଗବଂଶୀୟ ରାଜା ଭାନୁଦେବଙ୍କ ରାଜତ୍ୱ କାଳରେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଲୁଣ୍ଠନ କରିଥିଲେ । ସମ୍ଭବତଃ ସେତେବେଳେ ଶ୍ରୀମନ୍ଦିରର ରତ୍ନସିଂହାସନ ବିଧ୍ୱସ୍ତ ହୋଇ ତନୋଟିଯାକ 'ଚକା' ସ୍ଥାନଚ୍ୟୁତ ହୋଇ ମନ୍ଦିରର କୌଣସି ପାର୍ଶ୍ୱରେ ପକା ଯାଇଥିଲା । ଯବନସ୍ପୃଶ୍ୟ ହୋଇଥିବାରୁ ତାହା ପରବର୍ତ୍ତୀ କାଳରେ ଠାକୁରଙ୍କ ବ୍ୟବହାରରେ ନଲାଗି ଅନ୍ୟ ପ୍ରସ୍ତର (ଚକା) ନିର୍ମିତ ହେଲା । ଏ ଘଟଣାର ସାର୍ଦ୍ଧଶତାବ୍ଦୀ କାଳ ପରେ ଖୋର୍ଦ୍ଧା-ରାଜା ଶ୍ରୀବୀର କେଶରୀ ଦେବଙ୍କ ସମୟରେ ଯେଉଁ ରତ୍ନସିଂହାସନ ତିଆରି ହେଲା, ତାହାହିଁ ବର୍ତ୍ତମାନ ଶ୍ରୀଠାକୁରମାନଙ୍କର ପୂଣ୍ୟପୀଠ ହୋଇ ରହିଛି, ଯେଉଁ ସିଂହାସନ ତଳେ ପ୍ରତ୍ୟହ ହଜାର ହଜାର ଯାତ୍ରୀ ସମବେତ ହୁଅନ୍ତି ।



# ଆଠଗଡ଼ରେ ଶ୍ରୀଜଗନ୍ନାଥ ମହାପ୍ରଭୁ

ପୁରୀର ଶ୍ରୀମନ୍ଦିର ପ୍ରତି ବାରମ୍ବାର ବିଧର୍ମୀଙ୍କ ଅତ୍ୟାଚାର ମୁସଲମାନ ରାଜତ୍ୱରେ ଲାଗି ରହିଥିଲା । କଳାପାହାଡ଼ର ସୋମେଶ୍ୱରର ମନ୍ଦିର ଧ୍ୱଂସ ଘଟଣା ଉତ୍କଳର ଜନସାଧାରଣ ଆଦୌ ଭୁଲି ନଥିଲେ । କେବଳ ଧର୍ମ ବିରୋଧରେ ଯେ ସେ ସମସ୍ତ ଅତ୍ୟାଚାର ହୋଇଥିଲା, ତାହା ନୁହେଁ; ଶ୍ରୀମନ୍ଦିରର ରତ୍ନଭଣ୍ଡାର ଲୁଟି ନେବା ଓ ଅନ୍ୟ ମନ୍ଦିରଗୁଡ଼ିକର ଶିଖର ଦେଶରେ ପ୍ରତିଷ୍ଠାବେଳେ ଯେଉଁ ନବ-ରତ୍ନ ସ୍ଥାପିତ ହୋଇଥାଏ, ତାହା ଆତ୍ମସାତ୍ କରିବା ପ୍ରୟାସ ମଧ୍ୟ ଆକ୍ରମଣକାରୀଙ୍କ ଲକ୍ଷ୍ୟ ହୋଇଥିଲା । ଏଣୁ ବହୁ ମନ୍ଦିରର ଅଁଳାଶ୍ରୀ ଭାଙ୍ଗି ଦେଉଥିବା ହେତୁ ତାହା ସଂପୂର୍ଣ୍ଣ ଧ୍ୱଂସ ହୋଇଗଲା ।

ଶ୍ରୀମନ୍ଦିରର ଉଚ୍ଚତା ଓ ଦୃଢ଼ତା ହେତୁ ତାହା ଭାଙ୍ଗିବା ସମ୍ଭବ ହୋଇ ନାହିଁ । ତେଣୁ ରତ୍ନସିଂହାସନ ଭାଙ୍ଗି ସେଥିରୁ କିଛି ରତ୍ନ ମୁସଲମାନ୍ ଆକ୍ରମଣକାରୀମାନେ ନେଇଯାଇଥିଲେ । କେବଳ ମୁସଲମାନ୍ ନୁହନ୍ତି, ହିନ୍ଦୁମାନେ ମଧ୍ୟ ଲୋଭ ପରବଶ ହୋଇ ଶ୍ରୀମନ୍ଦିର ଲୁଟ୍‌ପାଟ କରିଥିବା ଇତିହାସରୁ ଜଣାଯାଏ । ମୋଗଲ ସମ୍ରାଟ୍ ଜାହାଙ୍ଗିରଙ୍କ ରାଜତ୍ୱ କାଳରେ ଅତ୍ୟାଚାରୀ କେଶୋଦାସ ମାରୁ ଓ କଲ୍ୟାଣ ମଲ୍ଲ ବହୁ ଧନରତ୍ନ ଲୁଟି ନେଇଥିଲେ ।

ଖ୍ରୀ. ୧୭ଶ. ଓ ୧୮ଶ. ଶତାବ୍ଦୀରେ ଯେଉଁ ବିପଦ ଓ ଦୁର୍ଘଟଣାମାନ ଶ୍ରୀମନ୍ଦିରକୁ ଗ୍ରାସ କରିଥିଲା, ସେଥିର ଗୋଟିଏ ଘଟଣା ଗଞ୍ଜାମର ଆଠଗଡ଼ ଇତିବୃତ୍ତରୁ ଜଣାଯାଏ ।

ଏକଦା ବାଦଶାହାଙ୍କଠାରୁ କଠୋର ଆଦେଶ ପାଇ ଦଳେ ମୋଗଲ ସେନା ଭୁବନେଶ୍ୱର ଓ ପୁରୀର ଦୁଇଟିଯାକ ମନ୍ଦିର (ଶ୍ରୀଲିଙ୍ଗରାଜ ଓ ଶ୍ରୀଜଗନ୍ନାଥ ମନ୍ଦିର) ଭାଙ୍ଗି ଦେବାକୁ ଅସିଥାନ୍ତି । କିନ୍ତୁ ତାହା ଏତେ ଦୃଢ଼ ଓ ବିଶାଳ ଯେ, ତାହା ଭାଙ୍ଗିବା ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ । ତେଣୁ ସେମାନେ କଟକ ବାରବାଟୀ ନିକଟସ୍ଥ ଶ୍ରୀଜଗନ୍ନାଥ ମନ୍ଦିରଟି ଭାଙ୍ଗି ଦେଇ ବାଦଶାହାଙ୍କୁ ସନ୍ତୁଷ୍ଟ କରିବାପାଇଁ ଶ୍ରୀଜଗନ୍ନାଥଙ୍କ ଦାରୁପ୍ରତିମା କଟକରୁ ବୋହି ନେଇ ବାଦଶାହାଙ୍କ ଦରବାର ତଳ ପାହାଚରେ ପକାଇ ଦେଲେ ।

ଖ୍ରୀ. ୧୭୦୦ରେ ଓଡ଼ିଶାରେ ଏକ ଭୟଙ୍କର ତୋଫାନ ହୋଇଥିଲା । ସେତେବେଳେ ଶ୍ରୀମନ୍ଦିରର ନୀଳଚକ୍ରଟି ଉପୁଡ଼ିଯାଇ ଭାଙ୍ଗି ପଡ଼ିଥିଲା । ଆମ୍ଭେ ମନେକରୁଁ ବାଦଶାହା ଆଉରଙ୍ଗଜେବ୍‌ଙ୍କ ପ୍ରେରିତ ସୈନ୍ୟମାନେ ପ୍ରଥମେ ଶ୍ରୀମନ୍ଦିରର ଶିଖର ଦେଶ ଭାଙ୍ଗିବାକୁ ଚେଷ୍ଟା କରି ବିଫଳ ହୋଇଥିଲେ । କିନ୍ତୁ ନୀଳଚକ୍ର ଖୋଲିବାକୁ ଉଦ୍ୟମ କରିଥିବାରୁ ସେଥିରୁ ସେଥିର କିଛି ଅଂଶ ଭାଙ୍ଗି ଯାଇଥିଲା । ତେଣୁ ବାତ୍ୟାର ପ୍ରାବଲ୍ୟ ଯୋଗୁଁ ତାହା ତଳେ ଛିଣ୍ଡି ପଡ଼ିବା ସମ୍ଭବ ହେଲା । ଏ ଘଟଣାର ପ୍ରାୟ ୨୭ ବର୍ଷ ପରେ ଖୁର୍ଦ୍ଧା ରାଜା ନୂତନ ନୀଳଚକ୍ର ମନ୍ଦିର ଚୂଡ଼ାରେ ସ୍ଥାପନ କରିଥିବା ଜଣାଯାଏ ।

ଏଠାରେ କହିବା ଆବଶ୍ୟକ ଯେ, ୧୯୩୧ ମସିହାରେ ଯେତେବେଳେ ଶ୍ରୀମନ୍ଦିରରେ ଚୂନ ଧଉଳା ହେଉଥିଲା, ସେତେବେଳେ ମନ୍ଦିର ଶିଖରକୁ ଚଢ଼ିବା ପାଇଁ ବାଉଁଶ-ଚାର ପଡ଼ିଥାଏ । ଏ ଲେଖକ ପୁରୀର ରାଜା ରାମଚନ୍ଦ୍ର ଦେବଙ୍କୁ ଅନୁରୋଧ କରି ତାଙ୍କ ଲୋକଙ୍କ ସାହାଯ୍ୟରେ ନୀଳଚକ୍ରରେ ଖୋଦିତ ଲିପି ପାଠ କରିବାକୁ ଶିଖର ପର୍ଯ୍ୟନ୍ତ ଆରୋହଣ କରିଥିଲା । ମୋର ସ୍ମରଣ ହେଉଛି, ସେଥିରେ ଓଡ଼ିଆ ଲିପିରେ "ଗଜପତି ଗୌଡ଼େଶ୍ୱର" ଉପାଧି ମଣ୍ଡିତ ରାଜା ରାମଚନ୍ଦ୍ର ଦେବଙ୍କ ନାମ ଉଲ୍ଲେଖ ହୋଇଅଛି । ତେଣୁ ସେହି ନୀଳଚକ୍ରର ନିର୍ମାଣ ଗଜପତି ରାମଚନ୍ଦ୍ର ଦେବ (୨ୟ), ଯେ କି ଖ୍ରୀ: ୧୭୧୭-୧୭୩୬ ମଧ୍ୟରେ ଖୁର୍ଦ୍ଧା ରାଜଗାଦିରେ ବସିଥିଲେ । ସୁତରାଂ ଅନ୍ତତଃ ୨୭ । ୨୮ ବର୍ଷ ପର୍ଯ୍ୟନ୍ତ ଶ୍ରୀମନ୍ଦିର ଶିଖର ନୀଳଚକ୍ର ଶୂନ୍ୟ ହୋଇ ରହିଥିଲା ।

କେତେକ ଐତିହାସିକଙ୍କ ମତରେ ଖ୍ରୀ: ୧୭୧୫ରେ ଖୋର୍ଦ୍ଧା ରାଜା ଦିବ୍ୟସିଂହଦେବ (୧ମ)ଙ୍କ ଦ୍ୱାରା ନୀଳଚକ୍ର ସ୍ଥାପିତ ହୋଇଥିଲା । ତେଣୁ ଶ୍ରୀମନ୍ଦିରସ୍ଥ ନୀଳଚକ୍ର ଗାତ୍ରରେ ଖୋଦିତ ଲିପି ପୁନର୍ବାର ପଠିତ ନ ହେବାଯାଏ ଏ ଲେଖକର ସ୍ମୃତିପଟରୁ ଉଦ୍ଧୃତ ରାମଚନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ନୀଳଚକ୍ର ସ୍ଥାପିତ ହୋଇଥିବା ଘଟଣା ଆମ୍ଭେ ବିଶ୍ୱାସ କରୁଛୁ ।

ଗଜପତି ରାମଚନ୍ଦ୍ର ଦେବ (୨ୟ) ଖ୍ରୀ: ୧୭୩୨-୧୭୩୬ ମଧ୍ୟରେ ଶ୍ରୀମନ୍ଦିରର ପରିଚାଳନା ଭାର ଗ୍ରହଣ କରିଥିଲେ । ସେତେବେଳେ ମହମ୍ମଦ ତକିଖାଁ ଓଡ଼ିଶାର ନାଇବ୍ ରୂପେ ନିଯୁକ୍ତ ହୋଇଥାନ୍ତି । ସେ ପ୍ରଥମେ ଶ୍ରୀମନ୍ଦିରର ରତ୍ନଭଣ୍ଡାର ଲୁଟି ନେବାକୁ ଅଭିଯାନ କଲେ । ଏହା ଆଶଙ୍କା କରି ମନ୍ଦିରର ସେବକମାନେ

ଶ୍ରୀବିଗ୍ରହମାନଙ୍କୁ ନେଇ ଚିଲ୍କାର ଏକ ନିଭୃତ ଅଞ୍ଚଳରେ ଲୁଚାଇ ରଖିଲେ । ଶ୍ରୀମନ୍ଦିର ଲୁଟ୍‌ପାଟ କରି ତକିଖାଁ ସୈନ୍ୟ ସାମନ୍ତ ସହ ଖୋର୍ଦ୍ଧା ଯାଇ ସେଠାରେ ରାଜା ରାମଚନ୍ଦ୍ର ଦେବଙ୍କୁ ପରାସ୍ତ କରି ତାଙ୍କୁ କଟକର ବନ୍ଦୀ ଗୃହରେ ନିକ୍ଷେପ କଲେ ଓ ବଳପୂର୍ବକ ମୁସଲମାନ ଧର୍ମରେ ଦୀକ୍ଷିତ କରାଇଲେ । କିନ୍ତୁ ଏ ଘଟଣାର ଅଳ୍ପକାଳ ପରେ ୧୭୩୪ରେ ତକିଖାଁଙ୍କ ମୃତ୍ୟୁ ହେଲା । ତାଙ୍କ ଅତ୍ୟାଚାର ହେତୁ ଦେବତାଙ୍କ ଅଶୁଭ ଦୃଷ୍ଟିରେ ପଡ଼ି ସେ ପ୍ରାଣ ବିସର୍ଜନ କରିଥିବା ସମ୍ବାଦ ସର୍ବତ୍ର ପ୍ରଚାରିତ ହେଲା । ତାଙ୍କ ମୃତ୍ୟୁପରେ ମୁର୍ଶିଦ୍ କୁଲିଖାଁ (୨ୟ) ଓଡ଼ିଶାର ନାଇବ୍ ପଦବୀ ଗ୍ରହଣ କରି ଶ୍ରୀମନ୍ଦିରରେ ଶ୍ରୀବିଗ୍ରହମାନଙ୍କ ପୁନଃ ସଂସ୍ଥାନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଦେଲେ । ସେ ମଧ୍ୟ ରାମଚନ୍ଦ୍ର ଦେବଙ୍କ ସଙ୍ଗେ ନିଜ କନ୍ୟାର ବିବାହ କରି ଖୋର୍ଦ୍ଧା ରାଜା କରିଦେଲେ ।

ଗଞ୍ଜାମ ଆଠଗଡ଼ର ଇତିହାସରୁ ସେ ସମୟର ଯେଉଁ ବିବରଣୀ ମିଳୁଛି, ତାହା ନିମ୍ନରେ ଉଦ୍ଧୃତ ହେଲା ।:—

ଆଠଗଡ଼ରେ ମୁକୁନ୍ଦ ହରିଚନ୍ଦନ ଜଗଦ୍ଦେବଙ୍କ ଭ୍ରାତା ରାମଚନ୍ଦ୍ର ହରିଚନ୍ଦନ କିଛି କାଳ ରାଜତ୍ୱ କଲାପରେ ତାଙ୍କ ପୁତ୍ର ଜଗନ୍ନାଥ ହରିଚନ୍ଦନ ଜଗଦେବ ଖ୍ରୀ.୧୭୩୫ରେ ରାଜ୍ୟଭାର ଗ୍ରହଣ କରନ୍ତି । ତାଙ୍କ ରାଜତ୍ୱ କାଳରେ ପ୍ରାୟ ବିଂଶସହସ୍ର ସୈନ୍ୟ ଉତ୍ତର ଭାରତରୁ ଅଭିଯାନ ଚଳାଇ ଶ୍ରୀଜଗନ୍ନାଥ କ୍ଷେତ୍ରରେ ପ୍ରବିଷ୍ଟ ହୁଅନ୍ତି । ସେମାନେ ଶ୍ରୀମନ୍ଦିରରେ କିଛି କାଳ ରହି ମନ୍ଦିରର ପବିତ୍ରତା ବହୁ ପରିମାଣରେ ନଷ୍ଟ କରିଥିବା କଥିତ ହୁଏ । କାରଣ ଶ୍ରୀମନ୍ଦିରରେ ମଦ୍ୟପାନ ଓ ଗୋମାଂସାଦି ଭକ୍ଷଣ ହେତୁ ଶ୍ରୀମନ୍ଦିର ନିତାନ୍ତ ଅସଂସ୍କୃତ ହୋଇଗଲା । ଏଥିରେ ସେବକ ଓ ପଣ୍ଡାମାନେ ଚକିତ ହୋଇ ଆଠଗଡ଼ର ରାଜା ଜଗନ୍ନାଥ ହରିଚନ୍ଦନଙ୍କ ସାହାଯ୍ୟ ପ୍ରାର୍ଥନା କଲେ । କିନ୍ତୁ ରାଜା ହରିଚନ୍ଦନ ଏତେ ବଡ଼ ସୈନ୍ୟ ସଙ୍ଗେ ଯୁଦ୍ଧ କରିବାକୁ ସମର୍ଥ ହେଲେ ନାହିଁ । ତେଣୁ ଶ୍ରୀବିଗ୍ରହଙ୍କ ଆରାଧନା ପାଇଁ ନିଜ ତାଲୁକାର 'ମାର୍ଦ୍ଦା' ନାମକ ଗ୍ରାମରେ ସ୍ଥାନ ନିରୂପଣ କରେ । ଯଥାସମୟରେ ଶ୍ରୀବିଗ୍ରହମାନଙ୍କୁ ମାର୍ଦ୍ଦାଠାକୁ ଅଣା ହେଲା ଓ ରାଜାଙ୍କ ସାହାଯ୍ୟରେ ଯଥା ବିହିତ ଭାବେ ଶ୍ରୀଜଗନ୍ନାଥଙ୍କ ଭୋଗ ରାଗ ଓ ଦୈନିକ ନୀତି ସେଠାରେ ପରିଚାଳିତ ହେଲା । ମନ୍ଦିର ସେବକ ଓ ଦୟିତା-ପତିମାନେ ଆଠଗଡ଼ ରାଜାଙ୍କଠାରୁ ସାହାଯ୍ୟ ପାଇ ସେଠାରେ ରହିଲେ । ଏଣେ ଶ୍ରୀକ୍ଷେତ୍ର ପ୍ରାୟ ଜନଶୂନ୍ୟ ହେଲା । ଠାକୁର ରାଜା ରାମଚନ୍ଦ୍ର ଦେବ କଟକରେ ରହି ମୁସଲମାନ୍ ଧର୍ମ ଗ୍ରହଣ କଲେ । ତାଙ୍କ ନାମ ରଖାଗଲା,

ହାଫିଜ୍- ହାଦର-ମହମ୍ମଦ । ଏ ଅବସ୍ଥାରେ ଠାକୁରମାନେ ଆଠଗଡ଼ରେ ରହି ପୂଜିତ ହେଉଥିବା ଜଣାଯାଏ ।

ଶାସକ ଯେତେ ଧର୍ମଦ୍ୱେଷୀ-ଅତ୍ୟାଚାରୀ ହୁଅନ୍ତୁ, ତେବେ ଲକ୍ଷ ଲକ୍ଷ ପ୍ରଜାଙ୍କ ଆକୁଳ ଅଭିଶାପ ତାଙ୍କୁ ଗ୍ରାସ କରେ । ଶେଷ ଜୀବନରେ ଦୁଃଖ କଷ୍ଟର ଭାଗୀ ହେବାକୁ ପଡ଼ିଥାଏ । ଏହା ଅତ୍ୟାଚାରୀ ତକିଖାଁଙ୍କ ଜୀବନରେ ପ୍ରମାଣିତ ହେଲା । କୌଣସି ଅଦ୍ଭୁତ ରୋଗରେ ପୀଡ଼ିତ ହୋଇ ସେ ପ୍ରାଣତ୍ୟାଗ କରିବାରୁ, ଲୋକେ କହିଲେ, ଗୋସାଣିମାନେ ତାକୁ ଖାଇଗଲେ ।

ତକିଖାଁଙ୍କ ପରେ ୧୭୩୪ରେ ମୁରସିଦ୍ କୁଲିଖାଁ ଓଡ଼ିଶାର ନାଏବ୍ ହୋଇ କଟକରେ ଅବସ୍ଥାନ କଲେ । ସେ ହିନ୍ଦୁ ଦେବଦେବୀଙ୍କ ପ୍ରତି ବିରୁଦ୍ଧାଚରଣ ନକରି ଶ୍ରୀମନ୍ଦିରରେ ଶ୍ରୀବିଗ୍ରହମାନଙ୍କ ପୁନଃସଂସ୍ଥାନ ନିମନ୍ତେ ଧର୍ମାନ୍ତର ଗ୍ରହଣ କରିଥିବା ରାମଚନ୍ଦ୍ର ଦେବଙ୍କୁ ଖୁର୍ଦ୍ଧାରେ ଅବସ୍ଥାପିତ କଲେ । ହିନ୍ଦୁଧର୍ମ ତ୍ୟାଗ କରିଥିବାରୁ "ଠାକୁର ରାଜା" ପଦବୀରୁ ସେ ବଞ୍ଚିତ ହେଲେ । ନିଜ ପରିବାରରେ ମଧ୍ୟ ତାଙ୍କୁ ସ୍ଥାନ ମିଳିଲା ନାହିଁ ।

ଓଡ଼ିଶାରେ ହିନ୍ଦୁମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର ଓ ଶ୍ରୀଜଗନ୍ନାଥଙ୍କୁ ସ୍ଥାନାନ୍ତରିତ କରାଯାଇଥିବା ପ୍ରସଙ୍ଗ ମରହଟ୍ଟା ଶାସକମାନଙ୍କର କର୍ଣ୍ଣଗୋଚର ହେଲା । ତେଣୁ ସେମାନେ ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଅବତରଣ କରିବାକୁ ପ୍ରସ୍ତୁତ ହୋଇ ରହିଲେ । ଏଣେ ଓଡ଼ିଶାର ନାଏବ ମୁରସିଦ୍ କୁଲିଙ୍କ ସଙ୍ଗେ ୧୭୪୦ ସାଲରେ ବଙ୍ଗର ନବାବ ଆଲିବର୍ଦ୍ଦି ଖାଁଙ୍କର କଳହ ଜାତ ହେବାରୁ ଆଲିବର୍ଦ୍ଦି ସୈନ୍ୟସାମନ୍ତ ସହ ଓଡ଼ିଶା ଆକ୍ରମଣ କଲେ । ଏଥିରେ ମୁର୍ସିଦ୍ କୁଲିଙ୍କ ଜାମାତା ରାମଚନ୍ଦ୍ର ଦେବ ଅଲିବର୍ଦ୍ଦିଙ୍କ ସଙ୍ଗେ ଯୁଦ୍ଧରେ ପରାସ୍ତ ହୋଇ ମସୁଲିପାଟନାରେ ଆଶ୍ରୟ ଗ୍ରହଣ କଲେ । ସେତେବେଳେ ନାଗପୁରର ମରହଟ୍ଟା ଭୋଁସଲା ରଘୁଜୀଙ୍କ ସାହାଯ୍ୟ ପ୍ରାର୍ଥନା କରି ଓଡ଼ିଶା ଅଧିକାର କରିବାକୁ ମୁରସିଦ୍ କୁଲି ପ୍ରସ୍ତାବ କରନ୍ତି । ରାମଚନ୍ଦ୍ର ଦେବଙ୍କ ୧୭୩୫ରେ ମୃତ୍ୟୁ ହେଲା । ଖୁର୍ଦ୍ଧା ସିଂହାସନ ପାଇଁ ପଦ୍ମନାଭ ଦେବ ଓ ରାମଚନ୍ଦ୍ରଙ୍କ ନାବାଳକ ପୌତ୍ର ବୀରକିଶୋରଙ୍କ ମଧ୍ୟରେ କନ୍ଦଳ ସୃଷ୍ଟି ହେଲା । ୧୭୫୧ରେ ଅଲିବର୍ଦ୍ଦି ଖାଁ ଓ ଭୋଁସଲା ରଘୁଜୀଙ୍କ ମଧ୍ୟରେ ସନ୍ଧି ହୋଇ ସୁବର୍ଣ୍ଣରେଖା ନଦୀର ଦକ୍ଷିଣାଞ୍ଚଳ ମରହଟ୍ଟା ଶାସନର ଅନ୍ତର୍ଭୁକ୍ତ ହେଲା ।

ଓଡ଼ିଶାରେ ମରହଟ୍ଟା-ଶାସକମାନେ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ସମସ୍ତ ପରିଚାଳନା ଭାର ଗ୍ରହଣ କରି ଶ୍ରୀବିଗ୍ରହଙ୍କ ନୀତିନିୟମ ଯଥାବିହିତ ଭାବେ ପରିଚାଳନା କଲେ । ତାଙ୍କରି ଶାସନ କାଳରେ ଭାଙ୍ଗି ପଡ଼ିଥିବା କୋଣାର୍କ ମନ୍ଦିରର ଅରୁଣସ୍ତମ୍ଭ ଆଣି ପୁରୀର ଶ୍ରୀମନ୍ଦିର ସମ୍ମୁଖରେ ସ୍ଥାପନ କରିଥିଲେ । ମନ୍ଦିରର ବ୍ୟୟଭାର ତୁଳାଇବାକୁ ଯାତ୍ରୀମାନଙ୍କଠାରୁ ଟିକସ ଆଦାୟ କରୁଥିଲେ ।

ମରହଟ୍ଟା-ଶାସନ ଅବଧି ଶ୍ରୀମନ୍ଦିରର କ୍ରମୋନ୍ନତି ସାଧିତ ହୋଇଥିବା ଇତିହାସରୁ ପରିଲକ୍ଷିତ ହୁଏ । ଯେଉଁ ସମୟରେ ଶ୍ରୀବିଗ୍ରହଙ୍କୁ ପୁରୀ ମନ୍ଦିରରୁ ସ୍ଥାନାନ୍ତରିତ କରି ଆଠଗଡ଼ର ମାଢ଼ି ଗ୍ରାମରେ ସ୍ଥାପନ କରାଯାଇଥିଲା ସେତେବେଳେ ଆଠଗଡ଼ର ରାଜା ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ମହାପ୍ରଭୁଙ୍କ ନୀତିଗତ ପରିଚାଳନ ସକାଶେ ମାଢ଼ି ଗ୍ରାମର ସମସ୍ତ ଆୟ ସମେତ କୋନାପୁର, ଦେଉଳି, ବଣ୍ଡିମୀ ଓ ହରିପୁର ନାମକ ଆଉ ଚାରିଗୋଟି ଗ୍ରାମ ଶ୍ରୀଜଗନ୍ନାଥଙ୍କ ଅମୃତମଣୋହି ପାଇଁ ଦାନ କରିଥିଲେ । ଖୁର୍ଦ୍ଧା ରାଜା ରାମଚନ୍ଦ୍ର ଦେବ (୨ୟ)ଙ୍କ ୧୨ଶ ଓ ୧୩ଶ ଅଙ୍କରେ ସେହି ଦାନପତ୍ର ଲେଖା ହୋଇଥିବା ପ୍ରସଙ୍ଗ "ଗଞ୍ଜାମ କୈଫିୟତ୍" ନାମକ ତେଲୁଗୁ ରେକର୍ଡ଼ରୁ ଜଣାଯାଇଛି ।



# ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟମ୍

ମାନ୍ଦ୍ରାଜର ସରକାରୀ ଅଭିଲେଖାଗାରରେ "ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ" ନାମକ ଗୋଟିଏ କ୍ଷୁଦ୍ର ତାଳପତ୍ର ପୋଥି (No, D. 2473) ତେଲୁଗୁ ଲିପିରେ ଓ ସଂସ୍କୃତ ଶ୍ଲୋକରେ ଲେଖା ହୋଇଛି । ଗ୍ରନ୍ଥର ଲେଖକ କିଏ, ସେଥିର ପରିଚୟ କିଛି ମିଳିନାହିଁ । (*) ତାହା ଆକାରରେ କ୍ଷୁଦ୍ର ହେଲେ ସୁଦ୍ଧା ଶ୍ରୀକ୍ଷେତ୍ରର ବୈଶିଷ୍ଟ୍ୟ ଏବଂ ପବିତ୍ରତା ସମ୍ପର୍କରେ ଚମତ୍କାର କିଛି ତଥ୍ୟ ସେଥିରେ ପୂରି ରହିଛି, ଯାହା କି ଅଦ୍ୟାପି ପ୍ରକାଶ ହୋଇନାହିଁ । ବିଭିନ୍ନ ଆଗମ, ସ୍ମୃତି ଓ ପୁରାଣମାନଙ୍କରୁ ଉଦ୍ଧାର କରି ଗ୍ରନ୍ଥଟି ସଂକଳିତ ହୋଇଅଛି ବୋଲି ନିଜେ ଲେଖକ ସ୍ୱୀକାର କରିଛନ୍ତି—

ନାନାଗମସ୍ମୃତିପୁରାଣମହାବ୍ଧିମଧ୍ୟା
ଦୁଦ୍ଧୃତ୍ୟ ବୁଦ୍ଧିମଥନେନ ହରିପ୍ରସାଦାତ୍ ।
ବାକ୍ୟାନି ଯାନି ବିଲିଖାମି ବିମୁକ୍ତିଦେହଃ
ସନ୍ତସ୍ତଦର୍ଥମନିଶଂ ପରିପାଳୟନ୍ତୁ ॥

ସେଥିରେ ପ୍ରଥମେ ବର୍ଣ୍ଣିତ ହୋଇଛି, ଶ୍ରୀପୁରୁଷୋତ୍ତମ କ୍ଷେତ୍ର ହେଉଛି 'ମୁକ୍ତି ଚନ୍ତାମଣି' । ଏହା ସମସ୍ତ ଲୋକଙ୍କ ପାଇଁ ମୋକ୍ଷ-ଦ୍ୱାର ଉନ୍ମୁକ୍ତ କରିଦିଏ; 'ବ୍ରହ୍ମପୁରାଣ'ରୁ ଉଦ୍ଧୃତ ନିମ୍ନୋକ୍ତ ଶ୍ଲୋକ ଏହା ପ୍ରମାଣିତ କରେ—

---

(*) ମାନ୍ଦ୍ରାଜରେ Oriental Manuscripts Libraryରୁ ଏଥିର ନକଲ ଏ ଲେଖକ ୧୯୭୧ ମସିହାରେ ସଂଗ୍ରହ କରିଥିଲେ । 'ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ' ନାମକ ଅନେକଗୁଡ଼ିଏ ପୋଥି ଅଦ୍ୟାପି ବିଭିନ୍ନ ଗ୍ରନ୍ଥାଳୟରେ ଥିବା ଜଣାଯାଏ । ଯଥା:—କଲିକତା ଏସିଆଟିକ୍ ସୋସାଇଟି ଲାଇବ୍ରେରୀ, ଭୁବନେଶ୍ୱର ସଂଗ୍ରହାଳୟ ପୋଥି ଲାଇବ୍ରେରୀ ଓ ଲଣ୍ଡନର ଇଣ୍ଡିଆ ଅଫିସ୍ ଲାଇବ୍ରେରୀ । କିନ୍ତୁ ଉକ୍ତ ପୋଥିର ବିଷୟବସ୍ତୁ ସଙ୍ଗେ ସେଗୁଡ଼ିକର ଲେଖା ଭିନ୍ନ ପ୍ରକାର ଥିବା ଜଣାଯାଏ ।

ଯୋଽସୌ ପୂର୍ବର୍ଣେବେଦାନ୍ତେ ପରମାତ୍ମେତି ଗୀୟତେ ।
ଅସୌ ବର୍ଣ୍ଣୋପକାରସ୍ୟ ଆସ୍ତେ ଶ୍ରୀପୁରୁଷୋତ୍ତମେ ॥

ଆଉ ମଧ୍ୟ ସେହି ମାହାତ୍ମ୍ୟରେ ଲେଖାଅଛି :

ବିନାସାଂଖ୍ୟାଙ୍ଗଯୋଗେନ ବିନାଧ୍ୟାନଶକାଦ୍ଧଭିଃ ।
ମୁକ୍ତିଚିନ୍ତାମଣିର୍ହ୍ୟେଷ ମୋକ୍ଷଦଃ ସର୍ବଦେହିନାମ୍ ॥

ଦଶଯୋଜନ (ପ୍ରାୟ ୮୦ ମାଇଲ) ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଏହି କ୍ଷେତ୍ରର ପରମ ପବିତ୍ରତା ବିଦ୍ୟମାନ ।

ଅହୋ କ୍ଷେତ୍ରସ୍ୟ ମାହାତ୍ମ୍ୟଂ ସମନ୍ତାଦ୍ଦଶଯୋଜନମ୍ ।
ଦିବସ୍ଥା ଯତ୍ର ପଶ୍ୟନ୍ତି ସର୍ବାନେବ ଚତୁର୍ଭୁଜାନ୍ ॥
ସପ୍ତସପ୍ତେଷୁ ଲୋକେଷୁ ଲୋକାଲୋକ ଚରାଚରେ ।
ନାସ୍ତି ନାସ୍ତି ସମଂ କ୍ଷେତ୍ରମୁତ୍ତମଂ ପୁରୁଷୋତ୍ତମାତ୍ ॥

ପୂର୍ବେ କଣ୍ଡୁମୁନିଙ୍କ ଆଶ୍ରମ ଶ୍ରୀକ୍ଷେତ୍ର-ମହୋଦଧି ତଟରେ ଥିଲା । ଏକଦା ଭଗବାନ୍ ବିଷ୍ଣୁ (ଶ୍ରୀପୁରୁଷୋତ୍ତମ) ତାଙ୍କୁ ଦେଖା ଦେଇ କହିଲେ, "ଏହି ପୁଣ୍ୟତମ କ୍ଷେତ୍ରରେ ମୋତେ ଆରାଧନା କଲେ ମନୁଷ୍ୟ ନିଶ୍ଚିତରେ ମୋକ୍ଷ ଲାଭ କରିବ; କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ବା ଅନ୍ତ୍ୟଜ ଶ୍ରେଣୀର ଯେ କେହି ହୁଅନ୍ତୁନା କାହିଁକି, ସେ ନିଶ୍ଚୟ ସିଦ୍ଧି ଲାଭ କରିବେ । ଆପଣଙ୍କ ପରି ବ୍ରାହ୍ମଣଙ୍କ ପକ୍ଷରେ କଣ ବା ଅସମ୍ଭବ ?

ମଦ୍‌ଭକ୍ତା-କ୍ଷତ୍ରିୟା-ବୈଶ୍ୟାସ୍ତ୍ରିୟଃ ଶୂଦ୍ରାସ୍ତଥାନ୍ତ୍ୟଜାଃ ।
ପ୍ରାପ୍ନୁବନ୍ତି ପରାଂ ସିଦ୍ଧିଂ କିଂ ପୁନସ୍ତ୍ୱଂ ଦ୍ୱିଜୋତ୍ତମ ॥

ବିଷ୍ଣୁଙ୍କ ମୁଖରୁ ଏ କଥା ଶୁଣି କଣ୍ଡୁମୁନି ଶ୍ରୀକ୍ଷେତ୍ରର ଦକ୍ଷିଣ ପାର୍ଶ୍ୱସ୍ଥ ମହୋଦଧି କୂଳରେ ଏକ ପୁଣ୍ୟାଶ୍ରମ ରଚନା କରି ଶିଷ୍ୟମାନଙ୍କ ସହ ସେଠାରେ 'ବ୍ରହ୍ମପାରସ୍ତବ' ନିତ୍ୟ ପାଠ କରି ଦେହ ବିସର୍ଜନ କରିଥିଲେ । ସେହି 'ମହାସ୍ତବ' ଅଧିକାଂଶ ଭକ୍ତଙ୍କର ଅଦ୍ୟାପି ଅଜ୍ଞାତ ହୋଇ ରହିଛି । ମାନ୍ଦ୍ରାଜର ସେହି ପ୍ରାଚ୍ୟ ଗ୍ରନ୍ଥାଳୟରେ ସଂରକ୍ଷିତ ତେଲୁଗୁ ପୋଥିରୁ ସଂଗ୍ରହ କରି ନିମ୍ନରେ ସେଥିର ଅବିକଳ ନକଲ ଦିଆଗଲା—

**ବ୍ରହ୍ମପାର ସ୍ତୋତ୍ରମ୍ :**

ପାରଂ ପାରଂ ବିଷ୍ଣୁମପାରପାରଃ ପରଃ ପରେଭ୍ୟଃ ପରମାର୍ଥରୂପୀ ।
ସ ବ୍ରହ୍ମପାରଃ ପରପାରଭୂତଃ ପରଃ ପରାଣାମପି ପାରପାରଃ ॥୧॥

ସ କାରଣଂ କାରଣତସ୍ତତୋଽପି ତସ୍ୟାପି ହେତୁଃ ପରହେତୁହେତୁଃ ।
କାର୍ଯେଂଷୁ ଚୈବଂ ସ ହି କର୍ମକର୍ତ୍ତୃରୂପୈରଶେଷୈରବତୀହ ସର୍ବମ୍ ॥ ୨॥
ବ୍ରହ୍ମ ପ୍ରଭୁର୍ବ୍ରହ୍ମ ସ ସର୍ବଭୂତୋ ବ୍ରହ୍ମପ୍ରଦାନଂ ପତିରୁଚ୍ୟତେଽସୌ ।
ବ୍ରହ୍ମାବ୍ୟୟଂ ପାତ୍ୟମଜଂ ସ ବିଷ୍ଣୁ ସ ରୁ ଖସ୍ବାଦ୍ୟୈର ଖିଳୈ କସଙ୍ଗେ ॥୩॥
ଯଥା କ୍ଷରମଜଂ ନିତ୍ୟଂ ଯଦାସୌ ପୁରୁଷୋତ୍ତମଃ ।
ତଥା କୋଧସ୍ତୋ ଦୋଷାଃ ପ୍ରସ୍ୟାନ୍ତୁ ପ୍ରଶମଂ ମମ ॥ ୪ ॥
ଏତଦ୍ବୈ ବ୍ରହ୍ମପାରାଖ୍ୟଂ ସଂସ୍ତବଃ ପରମଂ ଜପମ୍ ।
ଅବାପ ପରମାଂ ସିଦ୍ଧିଂ ସ ସମାରାଧ୍ୟ କେଶବମ୍ ॥ ୫ ॥
ଅଚ୍ୟୁତୋଽହମନନ୍ତୋଽହଂ ଗୋବିନ୍ଦୋଽହମପାଂ ହରିଃ ।
ଆନନ୍ଦୋଽହମଶେଷୋଽହମଜୋଽହମମୃତୋଽସ୍ମ୍ୟହମ୍ ॥ ୬ ॥
ନିତ୍ୟୋଽହଂ ନିର୍ବିକଳ୍ପୋଽହଂ ନିରାକାରୋଽହମବ୍ୟୟମ୍ ।
ସଚ୍ଚିଦାନନ୍ଦରୂପୋଽହଂ ପଞ୍ଚପୂର୍ଣ୍ଣୋଽସ୍ମି ସର୍ବଦା ॥ ୭ ॥
ବ୍ରହ୍ମୈବାହଂ ନ ସଂସାରୀ ମୁକ୍ତୋଽହମିତି ଭାବୟେତ୍ ।
ଆଦ୍ୟମଧ୍ୟାନ୍ତମୁକ୍ତୋଽହଂ ନ ବଦ୍ଧୋଽହଂ କଦାଚନ ॥ ୮ ॥
(ସ ଏବ ନିର୍ମଳଃ ଶୁଦ୍ଧଃ ସ ଏବାସ୍ମି ନ ସଂଶୟଃ)
ଇତି ପାରମାର୍ଥସ୍ତୋତ୍ରଂ ସମାପ୍ତମ୍ ॥

କଥିତ ଅଛି ଯେ, ଉଲ୍ଲବଟ ଓ ମହୋଦଧି ମଧ୍ୟରେ ଯେଉଁ ବ୍ୟକ୍ତି ଦେହତ୍ୟାଗ କରନ୍ତି ସେ 'ସାଯୁଜ୍ୟ-ମୁକ୍ତି' ଲାଭ କରନ୍ତି ।

"ହୃଦୟସ୍ୟ ତଦ୍‌ବିଜାନୀହି
ବଟ-ସାଗର ମଧ୍ୟମମ୍ ।
ତତ୍ର ଦେହଂ ପରିତ୍ୟଜ୍ୟ
ମମ ସାଯୁଜ୍ୟମାପ୍ନୁୟାତ୍ ॥"

ବୈଷ୍ଣବ ସମ୍ପ୍ରଦାୟର ପରମ ପବିତ୍ର ଧାମ (ଶ୍ରୀକ୍ଷେତ୍ର)ରେ ବାସକରିବା ଓ ସେଠାରେ ଶେଷନିଃଶ୍ୱାସ ତ୍ୟାଗକରି ସାଯୁଜ୍ୟ-ମୁକ୍ତିଲାଭ କରିବା ବିଶ୍ୱାସ ଚୈତନ୍ୟଙ୍କ ଆବିର୍ଭାବ ପୂର୍ବରୁ ଭାରତର ବିଭିନ୍ନ ଅଞ୍ଚଳରେ ଲୋକେ ହୃଦୟଙ୍ଗମ କରିଥିଲେ । ସ୍ମାର୍ତ୍ତ ଓ ପରମାର୍ଥ ସମ୍ପ୍ରଦାୟରେ ଯଥାକ୍ରମେ ଗଙ୍ଗାତଟବର୍ତ୍ତୀ କାଶୀ (ବନାରସ) ଓ ଶ୍ରୀକ୍ଷେତ୍ର (ପୁରୀ) ମହୋଦଧି ଓ ଉଲ୍ଲବଟ ମଧ୍ୟବର୍ତ୍ତୀ

ଅଞ୍ଚଳରେ ପଞ୍ଚତ୍ୱପ୍ରାପ୍ତ ହେବା ଅଭିଳାଷ ବଳବତ୍ତର ହୋଇଥିଲା । ତେଣୁ ବହୁ ଜ୍ଞାନୀ, ମାନୀ ଓ ଭକ୍ତ ପୁରୀର ସମୁଦ୍ର କୂଳରେ ବାସ ସ୍ଥାପନ କରିଥିଲେ । ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ମୁଖ୍ୟ ଧର୍ମକେନ୍ଦ୍ର ରୂପେ ଶ୍ରୀରାଧାକାନ୍ତ ମଠ ସ୍ଥାପିତ ହୋଇଥିଲା । ସେଠାରେ ଗୋଟିଏ ଗମ୍ଭୀରାରେ ଶ୍ରୀଚୈତନ୍ୟ ତାଙ୍କ ଶେଷ ଜୀବନ କଟାଇଥିଲେ । ଖ୍ରୀ. ୧୬ଶ ଶତାବ୍ଦୀର ପ୍ରଥମ ପାଦରେ ଚୈତନ୍ୟଙ୍କ ବହୁ ପୂର୍ବରୁ ଆଦ୍ୟ ଶଙ୍କରାଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନେ ସେଠାରେ ମଠ ସ୍ଥାପନକରି ରହିଥିବା କମ୍ବଦନ୍ତୀରୁ ଜଣାଯାଇଛି । ତେବେ ଶ୍ରୀଚୈତନ୍ୟଙ୍କ ପରି ଶଙ୍କରାଚାର୍ଯ୍ୟ ତାଙ୍କ ଶେଷ ଜୀବନ ଶ୍ରୀକ୍ଷେତ୍ରର ବଟ-ସିନ୍ଧୁ-ମଧ୍ୟସ୍ଥଳରେ କଟାଇଥିଲେ କି ନାହିଁ ତାହା ପ୍ରମାଣିତ ହୋଇନାହିଁ । ଏଥିପୂର୍ବେ ମହୋଦଧିରେ ଦାମୋଦର ନାମକ ଜଣେ ଶିଶୁ ଗ୍ରହ ବୁଡ଼ିଯାଇ ସ୍ୱର୍ଗଲାଭ କରିଥିବା ପ୍ରସଙ୍ଗ ମଧ୍ୟପ୍ରଦେଶସ୍ଥ ମହସ୍ୱାର ଗ୍ରାମର ସରସ୍ୱତୀ ମନ୍ଦିରରୁ ପ୍ରାପ୍ତ ଏକ ଶିଳାଲିପିରେ ଖ୍ରୀ. ୧୦ମ ଶତାବ୍ଦୀରେ ପ୍ରଚଳିତ ଅକ୍ଷରରେ ଗୋଟିଏ ଶ୍ଳୋକ ଉଲ୍ଲେଖ ଅଛି । ଯଥା :

ସମୁଦ୍ରମଜ୍ଜନାନ୍ମୃନ୍ଂ ଓଡ୍ରେଷୁ ପୁରୁଷୋତ୍ତମମ୍ ।
ଦୃଷ୍ଟ୍ୱାତବାନ୍ତକେ ଭୂୟଃ ପୁରାଗଚ୍ଛତ୍ୟସୌ ଶିଶୁଃ ॥

× × ×

ତତଶ୍ଚ ଗଣିତୈରେବ ଦିବସୈର୍ଦେବଦୁର୍ଲଭଃ ।
ପ୍ରାପ୍ତବାନ୍ ଜଳଧେସ୍ତୀରଂ ଦୃଷ୍ଟଶ୍ଚ ପୁରୁଷୋତ୍ତମଃ ॥ (+)

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସିନ୍ଧୁଗର୍ଭରେ ନିମଜ୍ଜିତ ହୋଇ ଶିଶୁ ଦାମୋଦର ପଞ୍ଚତ୍ୱ ଲାଭ କରିଥିବାରୁ, ତେଥିର ସ୍ମାରକ ରୂପେ ସରସ୍ୱତୀଙ୍କ ମନ୍ଦିରଟିଏ ନିର୍ମିତ ହୋଇଥିଲା । ମୃତ ଶିଶୁ ଦାମୋଦର ଦେବଦୁର୍ଲଭ ମୁକ୍ତି ଲାଭ କରିଥିଲା ବୋଲି ବିଶ୍ୱାସ କରାଯାଇଛି ।

ବାସ୍ତବରେ ଖ୍ରୀ: ୧୦ମ ବା ୧୧ଶ ଶତାବ୍ଦୀ ପୂର୍ବରୁ ଶ୍ରୀପୁରୁଷୋତ୍ତମ-କ୍ଷେତ୍ର-ମାହାତ୍ମ୍ୟ ଭାରତର ଅଧିକାଂଶ ଅଞ୍ଚଳରେ ପ୍ରସିଦ୍ଧି ଲାଭ କରିଥିଲା । କିନ୍ତୁ ଖ୍ରୀ. ୧୨ଶ. ଶତାବ୍ଦୀରେ ଗଙ୍ଗବଂଶୀୟ ମହାରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଶ୍ରୀକ୍ଷେତ୍ରରେ ବିରାଟ ଆକାରରେ ଯେଉଁ ଶ୍ରୀମନ୍ଦିର ଗଢ଼ାଇଲେ, ତଦବଧି ସେଥିର ମାହାତ୍ମ୍ୟ ଅଧିକ ସମ୍ପ୍ରସାରିତ ହେଲା । ସର୍ବଶେଷରେ ସୂର୍ଯ୍ୟବଂଶୀୟ ଗଜପତି ରାଜାମାନଙ୍କ

---

(+) Ep Ind., Vol. XXXV, P. III

ରାଜତ୍ୱ କାଳରେ ତାହା ସର୍ବଭାରତୀୟ ସ୍ତରରେ ବୈଷ୍ଣବଧର୍ମର ମୁଖ୍ୟ କେନ୍ଦ୍ରରେ ପରିଣତ ହେଲା ।

"ଶ୍ରୀପୁରୁଷୋତ୍ତମଙ୍କ ମାହାତ୍ମ୍ୟ କେତେକ ପୁରାଣରେ ବର୍ଣ୍ଣିତ ହୋଇଅଛି । 'ବାମନପୁରାଣ'ରେ ସ୍ନାନ ପୌର୍ଣ୍ଣମୀ ସମ୍ବନ୍ଧରେ ଲେଖାଅଛି :

ଶଣ୍ୱନ୍ତୁ ମୁନୟଃ ସ୍ନାନଂ କୃଷ୍ଣସ୍ୟ ବଦତୋ ମମ ।
ରାମସ୍ୟ ଚ ସୁଭଦ୍ରାୟାଃ ପୁଣ୍ୟଂ ସର୍ବାଘନାଶନମ୍ ॥
ମାସି ଜ୍ୟେଷ୍ଠେ ଚ ସଂପ୍ରାପ୍ତେ ନକ୍ଷତ୍ରେ ଚୈନ୍ଦ୍ରଦୈବତେ ।
ପୌର୍ଣ୍ଣମାସ୍ୟାଂ ତଦା ସ୍ନାନଂ ସର୍ବକାଲଂ ହରେଦ୍ୱିଜାଃ ॥
ରାମକୃଷ୍ଣାଭିଷେକାର୍ଥଂ ସୁଭଦ୍ରାୟାଶ୍ଚ ହେଦ୍ୱିଜାଃ ।
କାରୟିତ୍ୱା ଦୃଢ଼ଂ ମଞ୍ଚମୈଶାନ୍ୟାଦଶି ମଣ୍ଡିତମ୍ ॥

'ବ୍ରହ୍ମପୁରାଣ'ରେ ମଧ୍ୟ ଏ ସମ୍ପର୍କରେ ଲେଖାଅଛି :

ସ୍ନାନକାଲେ ତୁ ଯେ ମର୍ତ୍ତ୍ୟାଃ ପଶ୍ୟନ୍ତି ପୁରୁଷୋତ୍ତମମ୍ ।
ବଳଭଦ୍ରଂ ସୁଭଦ୍ରାଂ ଚ ତେ ଯାନ୍ତି ପଦମବ୍ୟୟମ୍ ॥

'ସ୍କନ୍ଦ ପୁରାଣ'ରେ ଲେଖାଅଛି ;

ଜୟଶ୍ରୀ ରାମକୃଷ୍ଣେତି ସୁଭଦ୍ରେତି ସକୃନ୍ନରାଃ ।
ବଦନ୍ତି ମାର୍ଜନେ କାଲେ ଯାନ୍ତି ବ୍ରହ୍ମପଦଂ ମମ ॥

'ନାରଦୀୟ ପୁରାଣ'ରେ ଏବଂ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥମାନଙ୍କରେ ମଧ୍ୟ ପୁରୁଷୋତ୍ତମ ମାହାତ୍ମ୍ୟ ଲେଖାଥିବା ଦେଖିବାକୁ ମିଳେ ।

'ମହାପ୍ରସାଦ' ସେବା ସମ୍ବନ୍ଧରେ ପ୍ରାୟ ୬୫ଟି ଶ୍ଳୋକ 'ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ' ଗ୍ରନ୍ଥରେ ଉଲ୍ଲେଖ ହୋଇଅଛି । ଯେଉଁ ସମୟରେ ଭାରତର ହିନ୍ଦୁ ସମାଜରେ ବର୍ଣ୍ଣାଶ୍ରମ ତଥା ଉଚ୍ଚ-ନୀଚ ଜାତି ପ୍ରଥା ସର୍ବତ୍ର ବ୍ୟାପକ ଭାବେ ପ୍ରଚଳିତ ହୋଇଥିଲା, ସେତେବେଳେ ଏକମାତ୍ର ଶ୍ରୀମନ୍ଦିର ତଥା 'ମହାପ୍ରସାଦ' ସେବାରେ ସେହି ପ୍ରାଚୀନ ପ୍ରଥା ବର୍ଜିତ ହୋଇପାରିଥିଲା । ଭଗବାନଙ୍କ ଦୃଷ୍ଟିରେ ମାନବ ସମାଜରେ ଭେଦାଭେଦ ଆଦୌ ସମ୍ଭବ ନୁହେଁ; ଏ ମହାନ ଆଦର୍ଶ ସର୍ବପ୍ରଥମେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ହିଁ ପ୍ରଚଳିତ ହୋଇଥିଲା । 'ମହାପ୍ରସାଦ' ସଙ୍ଗେ ଗଙ୍ଗାଜଳକୁ ସମାନ କରି ଲେଖାଅଛି ;

ଚଣ୍ଡାଳାଦ୍ୟୈର୍ଯଥା ସ୍ପୃଷ୍ଟଂ ଗାଙ୍ଗତୋୟଂ ନ ଦୂଷ୍ୟତେ ।
ତଥୈବ ମମ ନୈବେଦ୍ୟଂ ସ୍ପୃଷ୍ଟଂ କେନାପି ନାରଦ ॥

\+ \+ \+

ଯୋ ମତ୍ପ୍ରସାଦଂ ନାଶ୍ନାତି ଶୂଦ୍ରସ୍ପୃଷ୍ଟମିତି ଦ୍ୱିଜ ।
ଶ୍ୱେତ କୁଷ୍ଠୋ ଭବେଦ୍ଯସ୍ତ୍ୱଣ୍ଡାଳାଦଧମୋ ଭବେତ୍ ॥

\+ \+ \+

ବ୍ରହ୍ମ କ୍ଷତ୍ରି ସ୍ୱବିଟ୍ ଶୂଦ୍ରୈର୍ମତ୍ ପ୍ରସାଦାନ୍ନ-ଭୋଜନେ ।
ପଂକ୍ତିଭେଦୋ ନ କର୍ତ୍ତବ୍ୟୋ ମଦ୍‌ଭକ୍ତୈସ୍ତୁ ବିଶେଷତଃ ॥

ଉପରୋକ୍ତ ମହାପ୍ରସାଦ-ମାହାତ୍ମ୍ୟ 'ବିଷ୍ଣୁ ରହସ୍ୟ' ଗ୍ରନ୍ଥର ପଞ୍ଚବିଂଶ ଅଧ୍ୟାୟରୁ ଉଦ୍ଧାର କରାଯାଇଥିବା ପ୍ରସଙ୍ଗ ଏଥିରେ ଉଲ୍ଲେଖ ହୋଇଅଛି । କିନ୍ତୁ ସେହି ଗ୍ରନ୍ଥଟି (ବିଷ୍ଣୁ ରହସ୍ୟ) କେବଳ ଦଶଟି ଅଧ୍ୟାୟରେ ମାତ୍ର ପୂର୍ଣ୍ଣ ଏବଂ ପୁରୀର କୌଣସି ଜଣେ ଶାସନୀ ତାର୍କିକ ବ୍ରାହ୍ମଣ ସେଥିର ଲେଖକ ବୋଲି ଡା. କୁଲ୍‌କେ (Dr. Kulke) ମତ ବ୍ୟକ୍ତ କରିଅଛନ୍ତି :

> "This is a Sanskrit work in 10 Adhyayas which aims at propagating the glory of the wooden Deities mainly among the learned Brahmanas of Orissa by bringing the Deities into contact with the Vedic and Tantric traditions." (+)

ଉପରୋକ୍ତ ମତ ଆମ୍ଭେ ଗ୍ରହଣ କରିବାକୁ ଅସମର୍ଥ, କାରଣ ଯେଉଁ ଗ୍ରନ୍ଥ (ବିଷ୍ଣୁ ରହସ୍ୟ)ର ପଞ୍ଚବିଂଶ ଅଧ୍ୟାୟରୁ ଉଦ୍ଧାର କରି ଲେଖା ହୋଇଅଛି, ତାହା (ବିଷ୍ଣୁ ରହସ୍ୟ) ଗ୍ରନ୍ଥଟି ୧୦ ଅଧ୍ୟାୟ ବିଶିଷ୍ଟ ବୋଲି କହିବା ଠିକ୍ ଖାପ ଖାଉନାହିଁ । ଆଉ ମଧ୍ୟ ଡା. କୁଲ୍‌କେ ଅନୁମାନ କରନ୍ତି ଯେ, ପୁରୀ ଜିଲ୍ଲାର କୌଣସି ତାର୍କିକ ଶାସନୀ-ବ୍ରାହ୍ମଣ ଖ୍ରୀ. ୧୬ଶ. ଶତାବ୍ଦୀର ପ୍ରଥମ ପାଦରେ ସମ୍ଭବତଃ ଗ୍ରନ୍ଥଟି ଲେଖିଥିବେ । ଏହା ମଧ୍ୟ ଠିକ୍ ଠିକ୍ ବୋଲି କହିବା କଷ୍ଟକର । କାରଣ 'ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ' ଗ୍ରନ୍ଥରେ ଉତ୍କଳର କେତେକ ବିଶିଷ୍ଟ ତୀର୍ଥର ନାମ ପର୍ଯ୍ୟାୟ କ୍ରମେ ଲେଖାଅଛି । ଯଥା : ବୈତରଣୀ ଓ ବିରଜା ତୀର୍ଥ, ଚଣ୍ଡୋପୂଜା,

\+ The Cult of Jagannath and the Regional Tradition of Orissa (1978) P. 483 No-20 Foot Note.

ମହାନଗୀ, ଏକାମ୍ର କ୍ଷେତ୍ର, ନୀଳାଚଳ ଓ ମହେନ୍ଦ୍ରାଚଳକୁ ଦୁବୋଯା ମୁନି ଓ ତାଙ୍କ ଶିଷ୍ୟମାନେ ଯାତ୍ରା କରିଥିବା ବର୍ଣ୍ଣନା କରାଯାଇଅଛି । ସେଥିରେ କୋଣାର୍କ, ଚନ୍ଦ୍ରଭାଗା କିମ୍ବା ଅର୍କ କ୍ଷେତ୍ର ସମ୍ବନ୍ଧରେ କିଛି ବିବରଣୀ ଉଲ୍ଲେଖ ହୋଇନାହିଁ । ଅଥଚ 'ଚୈତନ୍ୟ ଚରିତାମୃତ'ରେ ବର୍ଣ୍ଣିତ ଅଛି ଯେ ଶ୍ରୀଚୈତନ୍ୟ ତାଙ୍କ ଶିଷ୍ୟ-ମାନଙ୍କ ସଙ୍ଗେ ଅର୍କ-କ୍ଷେତ୍ର ବାଟେ ପୁରୀକୁ ଯାତ୍ରା କରିଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, 'କପିଳ ରହସ୍ୟ' ଓ 'ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ' ଲେଖା ହେଲା ବେଳକୁ କୋଣାର୍କ ମନ୍ଦିର ନିର୍ମିତ ହୋଇ ନ ଥିଲା କିମ୍ବା ତାହା ଏକ ବିଶିଷ୍ଟ ତୀର୍ଥରେ ପରିଣତ ହୋଇ ନଥିଲା । ଇତିହାସରୁ ସ୍ପଷ୍ଟ ପ୍ରମାଣିତ ହୋଇଛି ଯେ ଗଙ୍ଗବଂଶୀୟ ମହାରାଜା ନରସିଂହଦେବ (୧ମ) ସେହି ସୁପ୍ରସିଦ୍ଧ କୋଣାର୍କ ମନ୍ଦିର ଖ୍ରୀ. ୧୩ଶ ଶତାବ୍ଦୀର ପ୍ରାୟ ମଧ୍ୟଭାଗରେ ନିର୍ମାଣ କରାଇଥିଲେ ଏବଂ ତଦବଧି ତାହା ଅର୍କ-କ୍ଷେତ୍ର' ରୂପେ ପରିଚିତ ହୋଇ ଆସିଛି ।

ଉପରୋକ୍ତ ଐତିହାସିକ ବିଷୟବସ୍ତୁ ଉପରେ ନିର୍ଭର କରି ଆମ୍ଭେ କହିପାରୁ ଯେ' "ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ" ଅନ୍ତତଃ ପୁରୀର ଶ୍ରୀମନ୍ଦିର ଖ୍ରୀ. ୧୨ଶ ଶତାବ୍ଦୀ ପ୍ରଥମ ପାଦରେ ନିର୍ମିତ ହୋଇଥିବା ଅଳ୍ପକାଳ ପରେ ହିଁ ରଚିତ ହୋଇଥିବ, ଏବଂ ନୀଳାଚଳ ତଥା ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ଭାରତରେ ସର୍ବତ୍ର ପ୍ରଚାର କରିବାକୁ ଏହା ଏକ ବଳିଷ୍ଠ ଉଦ୍ୟମ ।

ଡଃ କୁଲକେ ଲେଖିଥିବା, 'କପିଳ ରହସ୍ୟ' ଗ୍ରନ୍ଥଟି ଅଦ୍ୟାପି ପ୍ରକାଶିତ ହୋଇ ନାହିଁ, କିନ୍ତୁ ସେଥିର ଯେଉଁ ତିନୋଟି ପାଣ୍ଡୁଲିପି ସେ ଦେଖିଛନ୍ତି ତାହା ଯଥାକ୍ରମେ କଲିକତାର ଏସିଆଟିକ୍ ସୋସାଇଟି ଲାଇବ୍ରେରୀ, ଭୁବନେଶ୍ବର ମ୍ୟୁଜିୟମ ଲାଇବ୍ରେରୀ ଓ ଲଣ୍ଡନର ଇଣ୍ଡିଆ ଅଫିସ ଲାଇବ୍ରେରୀରେ ରକ୍ଷିତ ଅଛି । ସେ ଆଉ ମଧ୍ୟ ଉଲ୍ଲେଖ କରିଛନ୍ତି ଯେ, ସେହି ଅପ୍ରକାଶିତ ଗ୍ରନ୍ଥଟି ଫ୍ରିବାର୍ଗ ବିଶ୍ବବିଦ୍ୟାଳୟ (Freiburg University)ର ଅଧ୍ୟାପକ ୟୁ. ସ୍ନେଇଡର (Prof. U. Schneider)ସେଥିର ଏକ ବିସ୍ତୃତ ସମାଲୋଚନା ସହ ପ୍ରକାଶ କରିବେ । (*) ଆମର ସନ୍ଦେହ ଯେ, ଯେଉଁ ପାଣ୍ଡୁଲିପିଗୁଡ଼ିକ ବର୍ତ୍ତମାନ

---

* ୧୮ବର୍ଷ ପୂର୍ବେ ଏ କଥା ଡଃ କୁଲ୍‌କେ ତାଙ୍କ ବହିରେ ଲେଖିଥିଲେ । ପୁସ୍ତକଟି ବର୍ତ୍ତମାନ ପ୍ରକାଶ ପାଇଲାଣିକି, ନାହିଁ ତାହା ଏ ଲେଖକ ଜାଣିନାହିଁ ।

ବଭିନ୍ନ ଗ୍ରନ୍ଥାଳୟରେ ସଂଗୃହୀତ ହୋଇଅଛି, ସେ ସମସ୍ତ ଏକ ବିରାଟ ଗ୍ରନ୍ଥର ଅଂଶବିଶେଷ ହୋଇଥିବ । କାରଣ ଡଃ କୁଳାକେ ସେଥିର ୧୦ଟି ଅଧ୍ୟାୟ ମାତ୍ର ପାଇଛନ୍ତି; ଅଥଚ ମାନ୍ଦ୍ରାଜର ଓରିଏଣ୍ଟାଲ ମେନ୍ୟୁସ୍କ୍ରିପ୍ଟ ଲାଇବ୍ରେରୀ-(Oriental Manuscript Library)ରେ ସଂରକ୍ଷିତ ଗ୍ରନ୍ଥରେ ମୂଳଗ୍ରନ୍ଥ 'ବିଷ୍ଣୁ ରହସ୍ୟ'ର ୨୫ଶ ଅଧ୍ୟାୟରୁ ଉଦ୍ଧୃତ ହୋଇ "ମହାପ୍ରସାଦ" ମାହାତ୍ମ୍ୟର କେତେକ ଶ୍ଳୋକ ବିବୃତ ହୋଇଅଛି । ସୁତରାଂ 'ବିଷ୍ଣୁ ରହସ୍ୟ' ଗ୍ରନ୍ଥକର୍ତ୍ତା ଓଡ଼ିଶାର କେହିଜଣେ ଶାସନୀ ବ୍ରାହ୍ମଣ କିମ୍ବା କମ୍ପାର୍କ ପନ୍ଥୀ କୌଣସି ବୈଷ୍ଣବ ଗୁରୁ ହୋଇଥିବେ ଏବଂ ନିଶ୍ଚିତଭାବେ ଓଡ଼ିଶାର ଗଙ୍ଗବଂଶୀୟ ମହାରାଜା ଚୋଡ଼ଗଙ୍ଗ କିମ୍ବା ଅନଙ୍ଗଭୀମଙ୍କ ନିର୍ଦ୍ଦେଶକ୍ରମେ ଶ୍ରୀପୁରୁଷୋତ୍ତମ (ବିଷ୍ଣୁ)ଙ୍କୁ ଲୋକରେ ଅଧିକ ପରିଚିତ କରିବା ଉଦ୍ଦେଶ୍ୟରେ ସଂକଳନ କରିଥିବେ ।

ଆମ୍ଭେ ମନେକରୁଁ, ଓଡ଼ିଶାରେ ଅନୁସନ୍ଧାନ କରି 'ବିଷ୍ଣୁ ରହସ୍ୟ' ଗ୍ରନ୍ଥର ଅସଂପୂର୍ଣ୍ଣ ଅଂଶଗୁଡ଼ିକ ମିଳିଥିଲେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ଓ ନୀଳାଚଳଧାମର ପ୍ରାଚୀନତମ ତଥ୍ୟ ଆବିଷ୍କୃତ ହୋଇପାରନ୍ତା । ମହାରାଜା ଚୋଡ଼ଗଙ୍ଗ କେବଳ ବୀର, ସାହସୀ ଓ ଶାସନକାର୍ଯ୍ୟରେ ସୁଦକ୍ଷ ରାଜାନଥିଲେ, ତାଙ୍କର ଦୀର୍ଘ ୭୦ ବର୍ଷବ୍ୟାପୀ ରାଜତ୍ୱକାଳରେ ବହୁ ଧର୍ମକେନ୍ଦ୍ରରେ ସେ ଦାନ ଦେଇଥିବା ବିଷୟ ଅଭିଲେଖମାନଙ୍କରୁ ଜଣାଯାଏ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ତ୍ରିକଳିଙ୍ଗ ସାମ୍ରାଜ୍ୟର ଅଧୀଶ୍ୱର ଓ ଧର୍ମପ୍ରାଣ ଚୋଡ଼ଗଙ୍ଗ ଯେ ତାଙ୍କ ମହାନ୍‌କୀର୍ତ୍ତି ଶ୍ରୀପୁରୁଷୋତ୍ତମମନ୍ଦିର ଓ ନୀଳାଚଳର ମାହାତ୍ମ୍ୟ ପ୍ରଚାର ଓ ପ୍ରସାରିତ କରିବାକୁ ଯତ୍ନ କରି ନ ଥିବେ, ଏହା କୌଣସିମତେ ବିଶ୍ୱାସ ହେଉନାହିଁ । ବହୁ ବ୍ରାହ୍ମଣ, ପଣ୍ଡିତ ଓ ସାଧୁ ତାଙ୍କ ସାମ୍ରାଜ୍ୟରେ ରହି ଧର୍ମଚର୍ଚ୍ଚା କରୁଥିଲେ । ସେମାନଙ୍କ ଲେଖନୀ ଅବଶ୍ୟ ନୀରବ ହୋଇନଥିବ ! ଏଥିର ନିଦର୍ଶନ ରୂପେ 'ଶ୍ରୀପୁରୁଷୋତ୍ତମ'ଙ୍କ ସ୍ତୁତି ସମ୍ବଳିତ ଦୁଇଟି ଶ୍ଳୋକ ଶଂସିତ ଗ୍ରନ୍ଥରୁ ନିମ୍ନରେ ଉଦ୍ଧୃତ ହେଲା:—

ଉଦ୍ୟନ୍ନୀରଦ ନୀଳ-ସୁନ୍ଦର-ତନୁଂ
ପୂର୍ଣ୍ଣେନ୍ଦୁବିମ୍ବାନନଂ
ରାଜୀବୋତ୍ପଳ ପତ୍ର-ନେତ୍ରଯୁଗଳଂ
କାରୁଣ୍ୟବାରାଂନିଧିମ୍ ।

ଭକ୍ତାନାଂ ସକଳାର୍ତ୍ତିନାଶନକରଂ
ଚନ୍ଦ୍ରାର୍ଥଚନ୍ଦ୍ରାମଣିମ୍

ବନ୍ଦେ ଶ୍ରୀପୁରୁଷୋତ୍ତମଂ ପ୍ରତିଦିନଂ
ଲକ୍ଷ୍ମୀ ବିଳାସାଳୟମ୍ ॥

ନୀଳେନ୍ଦୀବର ଲୋଚନଂ ନବଘନଂ-
ଶ୍ୟାମାଭିରାମାକୃତିଂ

ବିଶ୍ୱେଶଂ କମଳା ବିଲୋଲ କଳସା-
କାରୁଣ୍ୟ ବାରାଂନିଧିମ୍

ଦୈତ୍ୟାରିଂ ସକଳେନ୍ଦୁ-ମଣ୍ଡିତ ମୁଖଂ
ଚକାବ୍ଜହସ୍ତଦ୍ୱୟଂ

ବନ୍ଦେ ଶ୍ରୀପୁରୁଷୋତ୍ତମଂ ପ୍ରତିଦିନଂ
ନୀଳାଦ୍ରି ଚୂଡ଼ାମଣିମ୍ ॥

# ମହାପ୍ରସାଦ-ମାହାତ୍ମ୍ୟ

'ଶ୍ରୀପୁରୁଷୋତ୍ତମ-ମାହାତ୍ମ୍ୟମ୍' ଗ୍ରନ୍ଥରେ ଉଲ୍ଲେଖ ଅଛି, ଏକଦା ଦେବର୍ଷି ନାରଦଙ୍କୁ 'ମହାପ୍ରସାଦ-ମାହାତ୍ମ୍ୟ' ବୁଝାଇବାକୁ ଯାଇ ସ୍ୱୟଂ ଶ୍ରୀପୁରୁଷୋତ୍ତମ କହିଥିଲେ :

"ପୁରୁଷୋତ୍ତମ ଯାତ୍ରାୟାଂ ଯସ୍ୟ ଚେତଃ ପ୍ରବର୍ତ୍ତତେ ।
ତସ୍ୟ ମୁକ୍ତିଂ ପ୍ରଦାସ୍ୟାମି କମୁତାଗଚ୍ଛତ ସ୍ୱୟମ୍ ॥
ବ୍ରହ୍ମଜ୍ଞାନେନ ମୁଚ୍ୟନ୍ତେ ଯୋଗିନୋ ଯାତକଲ୍ମଷାଃ ।
ଅତ୍ର ସର୍ବେ ବିମୁଚ୍ୟନ୍ତେ ମତ୍ ପ୍ରସାଦ ନିଷେବନାତ୍ ॥
ମତ୍ ପ୍ରସାଦଂ ତୁ ଯୋଽଶ୍ନାତି ଯନ୍ତୁ ଭକ୍ତ୍ୟା ପ୍ରଯଚ୍ଛତି ।
ଉଭୌ ତୌ ପୁଣ୍ୟକର୍ମାଣୌ ବିମୁକ୍ତୌ ଦାୟଭାଗିନୌ ॥
ରଥ୍ୟାନ୍ତରେ ଗୃହେ ବାପି ପ୍ରଦତ୍ତଂ ଯେନ କେନ ବା ।
ମତ୍ ପ୍ରସାଦଂ ତୁ ଯୋଽଶ୍ନାତି ତସ୍ୟ ମୁକ୍ତିଂ ଦଦାମ୍ୟହମ୍ ॥
+ + +
ଅତ୍ର ପାଚୟତେ ଲକ୍ଷ୍ମୀଃ କ୍ଷେତ୍ରାଽହଂ ଯଜ୍ଞଭୁକ୍ ସ୍ୱୟମ୍ ।
କ୍ଷେତ୍ରବ୍ୟଂ ମୁନଭିଃ ବର୍ତ୍ତୈର୍ନାତ୍ର କାର୍ଯ୍ୟା ବିଚାରଣା ॥
ବାଞ୍ଛନ୍ତେ ସକଳାଦେବାଃ ମତ୍ ପ୍ରସାଦଂ ସୁପାବନମ୍ ।
ୟାଚନ୍ତି ଭିକ୍ଷୁରୂପେଣ କିଂ ପୁନର୍ବ୍ବ ମାନୁଷାଃ ॥
ତପସ୍ୱିନୋ ନିରାହାରାଃ ବ୍ରତନଷ୍ଟାଗ୍ନିହୋତ୍ରିଣଃ ।
ଶୁଦ୍ଧ୍ୟନ୍ତି ମତ୍ ପ୍ରସାଦେନ କୃପାଦତ୍ତେନ ନାରଦ ॥"

ଶ୍ରୀଜଗନ୍ନାଥ ମନ୍ଦିରରେ ଯେଉଁ 'ମହାପ୍ରସାଦ' ବିକ୍ରୟ ହୁଏ, ସେଥିରେ ହଜାର ହଜାର ସଂଖ୍ୟାରେ ଯାତ୍ରୀମାନେ ପରିତୃପ୍ତ ହୁଅନ୍ତି । 'ମହାପ୍ରସାଦ' ସ୍ପର୍ଶାସ୍ପର୍ଶ-ଦୋଷ ବର୍ଜିତ ହୋଇ ତାହା ପୂର୍ବରୁ ଅନ୍ୟାନ୍ୟ ମଧ୍ୟ ବୋଧ ନେଇ ବ୍ରାହ୍ମଣ-ଶୂଦ୍ର ଜାତି ନିର୍ବିଶେଷରେ ସମସ୍ତେ ଏକତ୍ର ବସି ସେବନ କରିବା ପ୍ରଥା ଲକ୍ଷଣଶୀଳ ହିନ୍ଦୁ ସମାଜରେ ମଧ୍ୟ ପ୍ରଚଳିତ ଅଛି । ଏ ମହତ୍ତ୍ୱ ଉତ୍କଳ

ବ୍ୟକ୍ତିର ଅନ୍ୟ କେଉଁ ସ୍ୱାର୍ଥ ଥାଇନାହିଁ । ସୁତରାଂ ଏଥିର ମୌଳିକ ତତ୍ତ୍ୱ ଏବଂ ଐତିହ୍ୟ ଅନୁଶୀଳନ କରିବା ଆବଶ୍ୟକ ।

କେତେକ ପଣ୍ଡିତଙ୍କ ମତରେ ଏହା ତାନ୍ତ୍ରିକ ପଦ୍ଧତିରୁ ଜନ୍ମଲାଭ କରିଛି । ବେଦ ବିଦ୍ୱେଷୀ ତଥା ଜାତିଭେଦ ବର୍ଜିତ ବୌଦ୍ଧ ତାନ୍ତ୍ରିକମାନଙ୍କ ପ୍ରଭାବ ଶ୍ରୀଜଗନ୍ନାଥ ମନ୍ଦିରରେ ବିସ୍ତାର ଲାଭ କରିଥିବାରୁ ବୃଦ୍ଧରୂପୀ-ଶ୍ରୀ ଶ୍ରୀଜଗନ୍ନାଥଙ୍କ 'ମହାପ୍ରସାଦ'ରେ ଜାତି ଓ ବର୍ଣ୍ଣଭେଦ ସୃଷ୍ଟି ହୋଇନାହିଁ । ସୁତରାଂ ସହଜିଆ-ପନ୍ଥୀମାନଙ୍କ ଧର୍ମବିଶ୍ୱାସ ଏଥିର ମୁଖ୍ୟ କାରଣ ।

ବର୍ତ୍ତମାନ ପ୍ରଶ୍ନ ହେଉଛି କେଉଁ ଉତ୍କଳୀୟ ରାଜାଙ୍କ ରାଜତ୍ୱ କାଳରେ 'ମହାପ୍ରସାଦ'ର ମହତ୍ତ୍ୱ ଏପରି ଭାବେ ହିନ୍ଦୁ-ସମାଜରେ ଗୃହୀତ ହୋଇଥିଲା ?

ଇତିହାସରୁ ପ୍ରମାଣିତ ହେଉଛି ଯେ, ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ବିଗ୍ରହମାନ ପ୍ରତିଷ୍ଠିତ ହେବା ପୂର୍ବରୁ ସେହି ବିଗ୍ରହମାନେ ପ୍ରଥମେ ମୁକ୍ତିମଣ୍ଡପ ସମୀପରେ ଥିବା ନୃସିଂହ ମନ୍ଦିରରେ ସ୍ଥାପିତ ହୋଇଥିଲେ । ସେଠାରେ ତାଙ୍କର ଭୋଗରାଗ ପ୍ରଭୃତି କ୍ରିୟାକଳାପ ସମ୍ପନ୍ନ ହେଉଥିଲା । ଏ ବିଷୟ ସେହି ମନ୍ଦିରରୁ ପ୍ରାପ୍ତ ଅଭିଲେଖମାନଙ୍କରୁ ଜଣାଯାଉଛି ।

ତାହା ରାଜା ଚୋଡ଼ଗଙ୍ଗଙ୍କ ୧୧୪୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁର ପ୍ରାୟ ୮୫ ବର୍ଷ ପରେ ୧୨୩୦ ଖ୍ରୀଷ୍ଟାବ୍ଦରେ ମହାରାଜା ଅନଙ୍ଗଭୀମଦେବ (ତୃତୀୟ)ଙ୍କ ରାଜତ୍ୱ କାଳରେ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ହୋଇ ସେଥିରେ ଉକ୍ତ ବିଗ୍ରହଙ୍କୁ ସ୍ଥାପନ କରାଗଲା । ଯେତେକାଳ ପର୍ଯ୍ୟନ୍ତ ସେହି ବିଗ୍ରହମାନେ ନୃସିଂହ ମନ୍ଦିରରେ ପୂଜିତ ହେଉଥିଲେ, ସେତେକାଳ ତାଙ୍କ ଭୋଗରାଗର ପରିମାଣ ନିଶ୍ଚିତ ଭାବେ ସଂକ୍ଷିପ୍ତ ହୋଇଥିବ । ଆଧୁନିକ ଭୋଗର ପରିମାଣ ତୁଳନାରେ ତାହା ଯଥେଷ୍ଟ କମ୍ ଥିବା ସମ୍ଭବ, ତା' ନହେଲେ, ସେହି କ୍ଷୁଦ୍ର ନୃସିଂହ ମନ୍ଦିରରେ ଏତେ ପରିମାଣରେ ଭୋଗ ସମ୍ଭାର ରଖିବା ଆଦୌ ସମ୍ଭବ ନୁହେଁ । ଆମ୍ଭେ ମନେକରୁ ଯେ, ବର୍ତ୍ତମାନ ଓଡ଼ିଶାର କେତେକ କ୍ଷୁଦ୍ର ମନ୍ଦିରରେ, ଯଥା ଓଡ଼ଗାଁ ଶ୍ରୀରଘୁନାଥଙ୍କ ମନ୍ଦିରରେ ଯେପରି ଅଳ୍ପ ପରିମାଣରେ ସଂଖୁଡ଼ି ଭୋଗ ହେଉଛି ଏବଂ ତାହା ସେହି ମନ୍ଦିରରେ ସେବକମାନେ ଭକ୍ତମାନଙ୍କୁ ବିକ୍ରୟ କରନ୍ତି, ସେପରି ସ୍ୱଳ୍ପ ପରିମାଣ ଭୋଗ ଶ୍ରୀପୁରୁଷୋତ୍ତମଙ୍କ ସେହି କ୍ଷୁଦ୍ର ମନ୍ଦିରରେ ଭୋଗଲାଗି ସେବକମାନଙ୍କୁ ବିତରଣ କରାଯାଉଥିଲା ଏବଂ ସେବକମାନେ ଇଚ୍ଛା କଲେ ତାହା ଭକ୍ତମାନଙ୍କୁ ବିକ୍ରି କରାଯାଉଥିଲା ।

ଖ୍ରୀ: ୧୨୩୦ ସାଲ ପରେ ଠାକୁରମାନଙ୍କୁ ସୁପ୍ରଶସ୍ତ ବଡ଼ଦେଉଳରେ ସ୍ଥାପନ କରି ଅନଙ୍ଗଭୀମଦେବ ତାଙ୍କର ରାଜକୀୟ ସମସ୍ତ ଅଧିକାର ସମେତ ଉତ୍କଳ ସାମ୍ରାଜ୍ୟ ମହାପ୍ରଭୁଙ୍କ ପାଦ ପଦ୍ମରେ ଉତ୍ସର୍ଗ କରି, ନିଜେ ତାଙ୍କର ସେବକ ହୋଇ ରହିଲେ । ଏହାପରେ ଶ୍ରୀପୁରୁଷୋତ୍ତମଙ୍କ ନୀତି ଏବଂ ଭୋଗରାଗ ବହୁ ପରିମାଣରେ ପରିବର୍ତ୍ତିତ ହୋଇ ବୃଦ୍ଧି ଲାଭ କଲା । ଶ୍ରୀମନ୍ଦିର ହତା ଭିତରେ ଭୋଗ ସମ୍ଭାର ରଖିବା ସ୍ଥାନାଭାବ ହେବାରୁ ପରବର୍ତ୍ତୀ କାଳରେ 'ଭୋଗମଣ୍ଡପ' ନିର୍ମିତ ହୋଇଥିଲା । କଥିତ ଅଛି ଯେ, ପ୍ରତ୍ୟହ ଶ୍ରୀଠାକୁରଙ୍କ ପାଇଁ ଷାଠିଏ ପଉଟି ଅନ୍ନ (ଅଭଡ଼ା) ଭୋଗ ହୁଏ । ସେଥିର ପରିମାଣ ଅନୁପାତରେ ଡାଲି, ମହୁର, ଶାଗ, ଅମ୍ବିଳ, ଖଟା ପ୍ରଭୃତି ବ୍ୟଞ୍ଜନ ଦ୍ରବ୍ୟମାନ ମଧ୍ୟ ପ୍ରସ୍ତୁତ କରିବାକୁ ସ୍ୱତନ୍ତ୍ର ରୋଷେଇ ଘର ଓ ଭଣ୍ଡାର ଘର ମଧ୍ୟ ନିର୍ମିତ ହେଲା । ସେଥିରେ 'ସୁଆର' ପ୍ରଭୃତି ସେବକମାନଙ୍କୁ ନିଯୁକ୍ତ କରାଗଲା । 'ଧୂପ' ସରିବା ପରେ ସେହି ତଟକା ରନ୍ଧନ ଦ୍ରବ୍ୟମାନ ଗୋଟିଏ ଆଲଟରେ ବିମଳାଙ୍କୁ ସମର୍ପଣ ହୁଏ । ଏହାପରେ ତାହା ',ମା-ପ୍ରସାଦ" ଓ 'ମହାପ୍ରସାଦ" ନାମରେ ଅଭିହିତ ହୁଏ । ଶ୍ରୀମନ୍ଦିରର ଐଶାନ୍ୟ କୋଣରେ ଥିବା "ଆନନ୍ଦ ବଜାର" ନାମକ ସ୍ଥାନକୁ "ମହାପ୍ରସାଦ" (ମା-ପ୍ରସାଦ') ବୋହିନେଇ ସୁଆରମାନେ ଯେ ଯାହାର 'ମହାପ୍ରସାଦ' ଭକ୍ତ ଓ ଯାତ୍ରୀମାନଙ୍କୁ ବିକ୍ରୟ କରିଥାନ୍ତି । ଏହି ବ୍ୟଞ୍ଜନ ଦ୍ରବ୍ୟମାନଙ୍କରେ କେତେକ ପରିବା ଓ ଜିନିଷ ବ୍ୟବହୃତ ହୁଏ ନାହିଁ । ଯଥା: ରସୁଣ, ପିଆଜ, ଲଙ୍କା, ମୁନିଗା, ବିଲାତି ଆଳୁ, ଅମୃତଭଣ୍ଡା, କୋବି, ଟମାଟୋ ପ୍ରଭୃତି ବିଦେଶରୁ ଆସିଥିବା ପନିପରିବାଗୁଡ଼ିକ ତ୍ୟାଜ୍ୟ ହୋଇଥାଏ । ରନ୍ଧନରେ କୌଣସି ପ୍ରକାର ତୈଳ ମଧ୍ୟ ବ୍ୟବହୃତ ନ ହୋଇ ଖାଣ୍ଟି ଗୋଜାତ ଘୃତ୍ୟ, ଦୁଗ୍ଧ, ଦହି, ଲହୁଣୀ, ଛେନା ପ୍ରଭୃତି ଜିନିଷ ବ୍ୟବହୃତ ହୋଇଥାଏ ।

ତାନ୍ତ୍ରିକ ବିଧି ଅନୁସାରେ ଦେବୀଙ୍କ ପ୍ରସାଦକୁ "ମା-ପ୍ରସାଦ" କୁହାଯାଏ । ସେହି ପ୍ରସାଦ ସ୍ପର୍ଶାସ୍ପର୍ଶ ଦୋଷ ବର୍ଜିତ ବୋଲି ତନ୍ତ୍ରଶାସ୍ତ୍ରରେ ଉଲ୍ଲେଖ ଅଛି ।

ମହାପ୍ରସାଦ (ଅଭଡ଼ା) ଆନନ୍ଦବଜାରରେ ବିକ୍ରି ନହୋଇ ବଳକା କିଛି ରହିଗଲେ ତାହା ମଧ୍ୟ ନଷ୍ଟ ହୁଏ ନାହିଁ । କାରଣ ତାହା ସୂର୍ଯ୍ୟକିରଣରେ ଶୁଖାଇ 'ନିର୍ମାଲ୍ୟ' ରୂପେ ବିକ୍ରି କରାଯାଏ । ଭକ୍ତମାନେ ତାହା ଦୈନିକ କଣିକାଏ ଲେଖାରେ ସେବା କରନ୍ତି । ତେଣୁ ବଜାରରେ 'ନିର୍ମାଲ୍ୟ' ବିକ୍ରି ନ ହୋଇ ରହେ ନାହିଁ ।

ବାହାର ରାଜ୍ୟମାନଙ୍କରୁ ସମାଗତ ଯାତ୍ରୀମାନଙ୍କ ସୁବିଧାରେ ଶ୍ରୀକ୍ଷେତ୍ରରେ ରହିବା ବ୍ୟବସ୍ଥା ପାଇଁ ପୁରୀର ପଣ୍ଡାମାନଙ୍କୁ ପୂର୍ବେ ରାଜାମାନେ ଅଧିକାର ଦେଇଥିଲେ । ଭାରତବର୍ଷକୁ କେତେକ ବିଭକ୍ତ କରି ଗୋଟିଏ ଗୋଟିଏ ଅଞ୍ଚଳରେ ଜଣେ ଜଣେ ପଣ୍ଡା ମହାପାତ୍ରମାନଙ୍କୁ ଅଧିକାର ଦିଆଯାଇଥିଲା । ଭାରତର ଅନ୍ୟ କେତେକ ତୀର୍ଥମାନଙ୍କରେ ପଣ୍ଡା ବ୍ୟବସ୍ଥା ଥିଲେ ମଧ୍ୟ ପୁରୀର ପଣ୍ଡା-ବ୍ୟବସ୍ଥାର ବିଶେଷତ୍ୱ ସ୍ୱତନ୍ତ୍ର କହିଲେ ଚଳେ । ଭାରତର ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଭାଷା ବ୍ୟବହୃତ ହେଉଥିବାରୁ ସେହି ସେହି ଭାଷାରେ ଦକ୍ଷତା ଲାଭ କରିଥିବା ଗୁମାସ୍ତାମାନଙ୍କୁ ପଣ୍ଡାମାନେ ନିଯୁକ୍ତ କରୁଥିଲେ । ଏହା ଫଳରେ ଶ୍ରୀପୁରୁଷୋତ୍ତମଙ୍କ ମାହାତ୍ମ୍ୟ ପ୍ରଚାର ଓ ପ୍ରସାର ସମ୍ଭବ ହେଉଥିବା ସଙ୍ଗେ ବିଭିନ୍ନ ଭାଷାଭାଷୀ ଅଞ୍ଚଳ ଲୋକଙ୍କ ସଙ୍ଗେ ଉତ୍କଳର ମହତ୍ତ୍ୱ ଓ ମିତ୍ରତା ସମ୍ପାଦନ କରିବା ମଧ୍ୟ ସମ୍ଭବ ହେଉଥିଲା । ପଣ୍ଡାମାନେ ଯେ' ଯାହା ଅଞ୍ଚଳରେ ଥିବା ଯଜମାନଙ୍କ ବିଶ୍ୱାସ ଭାଜନ ହେବାପାଇଁ ସ୍ୱତନ୍ତ୍ର ଖାତାରେ ସେମାନଙ୍କ ବଂଶତାଲିକା ଲେଖି ରଖିଥିଲେ । ଯଜମାନଙ୍କ ତୀର୍ଥଯାତ୍ରା ବେଳେ ଯେଉଁଦିନ ପ୍ରଥମେ ସେମାନେ ଶ୍ରୀକ୍ଷେତ୍ରକୁ ଆସନ୍ତି, ସେମାନଙ୍କ ବାସ ଓ ଭୋଜନ ନିମନ୍ତେ ତାଙ୍କ ପଣ୍ଡା ବିନା ମୂଲ୍ୟରେ "ମହାପ୍ରସାଦ" ଯୋଗାଇଥାନ୍ତି । ଏପରି ଗୋଟିଏ ପ୍ରାଚୀନ ପ୍ରଥା ପୁରୀରେ ଥିବାରୁ ଯାତ୍ରୀମାନଙ୍କ ସଂଖ୍ୟା ଅନୁପାତରେ ସୁଆରମାନଙ୍କୁ ଦେଇ ଅଧିକ 'ଖଟଣି' ଆୟୋଜିତ ହୋଇଥାଏ । ଆଉ ମଧ୍ୟ ଓଡ଼ିଶାରେ ଅନୁଷ୍ଠିତ ବିବାହ, ବ୍ରତାଦି ଉତ୍ସବରେ ମଧ୍ୟ ପଂକ୍ତି ଭୋଜନ ପାଇଁ 'ଖଟଣି'ରେ ଅଧିକ ଭୋଗ ପ୍ରସ୍ତୁତ ହୁଏ । ଏପରି ଏକ ଅଭିନବ ପ୍ରଥା ଭାରତର ଅନ୍ୟ କେଉଁ ଦେବସ୍ଥାନରେ ନାହିଁ କହିଲେ ଚଳେ ।

ଶ୍ରୀମନ୍ଦିରର ପ୍ରତ୍ୟେକ ସେବକ 'ଖେଇ' ଅର୍ଥାତ୍ ବିନା ମୂଲ୍ୟରେ 'ମହାପ୍ରସାଦ' ପାଇବା ପ୍ରଥା ପ୍ରଚଳିତ ଅଛି । ଏ ଦୃଷ୍ଟିରୁ ବିଚାର କଲେ ସ୍ପଷ୍ଟ ଜଣାଯାଉଛି ଯେ, ଶ୍ରୀଜଗନ୍ନାଥ-ମନ୍ଦିର ଏକ ସ୍ୱୟଂଶାସିତ-ସଂସ୍ଥା । ଏତେ ବଡ଼ ଆକାରର ସଂସ୍ଥା ଅନ୍ୟତ୍ର ଦେଖାଯାଏ ନାହିଁ । ଯେ' ଯାହାର କର୍ତ୍ତବ୍ୟ ଠିକ୍ ସମୟରେ ତୁଲାଇ ଶ୍ରୀଜଗନ୍ନାଥଙ୍କ ନୀତି ଅତି ନିଷ୍ଠା ଓ ଶୃଙ୍ଖଳିତ ଭାବେ ତୁଲାଇଥାନ୍ତି । ମହାରାଜା ଅନଙ୍ଗଭୀମଙ୍କ ରାଜତ୍ୱକାଳରୁ ଆଜକୁ ପ୍ରାୟ ୭୭୦ ବର୍ଷ ହେଲା, ଏହିପରି ନୀତି ଶ୍ରୀମନ୍ଦିରରେ ପରିଚାଳିତ ହେଉଥିବା ଦୃଷ୍ଟ । ତେବେ କାଳର ଗତି ଦୃଷ୍ଟିରୁ ବିଭିନ୍ନ ସମୟରେ କେତେକ ରାଜ-ପରିବାର ଓ ଧନୀ ବ୍ୟବସାୟୀମାନେ ଶ୍ରୀକ୍ଷେତ୍ରକୁ ଆସି ପ୍ରଚୁର ମୂଲ୍ୟବାନ୍

ଉପଢ଼ୌକନ ଶ୍ରୀଜଗନ୍ନାଥଙ୍କୁ ଦାନ କରିଥିଲେ । ସେମାନଙ୍କ ପ୍ରଦତ୍ତ ସ୍ୱର୍ଣ୍ଣ ଓ ରତ୍ନ ଆଭରଣମାନ ଅଦ୍ୟାବଧି ରତ୍ନ ଭଣ୍ଡାରରେ ଗଚ୍ଛିତ ହୋଇ ଶ୍ରୀମହାପ୍ରଭୁଙ୍କ ବିଭିନ୍ନ ବେଶରେ ଲାଗିଥାଏ । ଆହୁ ମଧ୍ୟ ପୂର୍ବେ ଓଡ଼ିଶାର ଗଜପତି ମହାରାଜା ଓ ସେମାନଙ୍କ ରାଣୀମାନେ ବିଭିନ୍ନ ସମୟରେ ଶ୍ରୀଜଗନ୍ନାଥଙ୍କ ଭୋଗ ନିମନ୍ତେ ପ୍ରଚୁର ଭୂମିଦାନ କରିଥିଲେ । ତାହା 'ଶ୍ରୀଜଗନ୍ନାଥଙ୍କ ଅମଣିଆ'' ବୋଲି ପରିଚିତ ହୁଏ । ଅନ୍ୟ କେହି ସେଥିରେ ହସ୍ତକ୍ଷେପ କରୁ ନଥିଲେ । କିନ୍ତୁ କାଳକ୍ରମେ ଲୋକଙ୍କ ମନରୁ ଧର୍ମବିଶ୍ୱାସ ତୁଟି ଯିବାରୁ ଶ୍ରୀଜଗନ୍ନାଥଙ୍କ ନାମରେ ପ୍ରଦତ୍ତ ବହୁ ଦେବସ୍ୱ ଜମି (ଅମଣିଆ) ଲୋକେ ଆତ୍ମସାତ୍ କରି ସାରଲେଣି । ଏପରି ଘଟଣା ଖ୍ରୀଷ୍ଟିୟାନ୍ ଇଂରାଜଙ୍କ ରାଜତ୍ୱ କାଳରେ ହିଁ ସମ୍ଭବ ହୋଇଥିଲା ।

"ଶ୍ରୀଜଗନ୍ନାଥ-ସ୍ଥଳ-ବୃତ୍ତାନ୍ତ ମୁ'' ନାମକ ଗୋଟିଏ ତେଲୁଗୁ ପାଣ୍ଡୁଲିପି ବର୍ତ୍ତମାନ "ମାଡ୍ରାଜ ଓରିଏଣ୍ଟାଲ୍ ମେନୁସ୍କ୍ରିପ୍ଟ୍ ଲାଇବ୍ରେରୀ'' (Madras Oriental Manuscript-Library) ରେ ଗଚ୍ଛିତ ଅଛି । ତାହା ପ୍ରାୟ ୨୨୦ ବର୍ଷ ଆଗେ ମାଡ୍ରାଜର କର୍ଣ୍ଣଲ ମେକାଞ୍ଜି ନାମକ ଜଣେ ଇଂରାଜ ଅଫିସର ପୁରୀଠାକୁ ଲୋକ ପଠାଇ ସେଠା ଦେଉଳ କରଣଙ୍କଠାରେ ଗଚ୍ଛିତ ଥିବା 'ମାଦଳାପାଞ୍ଜି' ତେଲୁଗୁ ଭାଷାରେ ଲେଖାଇ ନେଇଥିଲେ । ୧୯୭୪ ସାଲରେ ଏ ଲେଖକ ସେହି ପାଣ୍ଡୁଲିପିକୁ ଇଂରାଜୀରେ ଅନୁବାଦ କରିଥିଲା । ସେହି ପାଣ୍ଡୁଲିପିରେ ଶ୍ରୀଜଗନ୍ନାଥଙ୍କ ଦୈନିକ ଭୋଗ ସମ୍ବନ୍ଧରେ ଲେଖା ଅଛି ଯେ, ପ୍ରତ୍ୟହ ଶ୍ରୀଠାକୁରଙ୍କ ଧୂପ (ଭୋଗ) ସଂଖ୍ୟା ସାତ ଏବଂ ଶିଙ୍ଗାର ଭୋଗ ନଅ । ଏପରି ମୋଟ ଭୋଗ ସଂଖ୍ୟା ୧୬: ଯଥା:—ଛଅ ଧୂପ ସମେତ ଗୋଟିଏ ଦହି-କୁଡୁଆ ଓ ଛଅଗୋଟି ରପନ ଭୋଗ । ଏପରି ସମୁଦାୟ ସାତ । ତା' ବାହାରେ ନଅଟି 'ଶିଙ୍ଗାର-ଭୋଗ', ଯଥା:—ଗୋଟିଏ ପ୍ରମ୍ବୋଧନୀ ଶିଙ୍ଗାର, ଗୋଟିଏ ଶିତଳ ଶିଙ୍ଗାର-ଭୋଗ, ଗୋଟିଏ ଶିଙ୍ଗାର ଭୋଗ, ଛଅଗୋଟି ବଡ଼ଶିଙ୍ଗାର ଭୋଗ ଛଅଗୋଟି ସନ୍ତୁଡ଼ି ବଲ୍ଲଭ-ଭୋଗ; ଏପରି ନଅଟି ଭୋଗ । ଏହି ଭୋଗ ସବୁ ଯୋଗାଡ଼ କରିବାକୁ ପୁରୀର ଗଜପତି ମହାରାଜା ଦୈନିକ ୬୦ ମାଢ଼ (ସ୍ୱର୍ଣ୍ଣମୁଦ୍ରା) ବ୍ୟୟ କରିବା ବ୍ୟବସ୍ଥା କରିଥିଲେ । ନିମ୍ନ ହିସାବ ଅନୁସାରେ ତାହା ଖର୍ଚ୍ଚ ହୋଇଥିଲା । ଯଥା —

| | |
|---|---|
| (୧) ଦହି କୁଡ଼ୁଆ ଭୋଗ ପାଇଁ | ୯ ମାଢ଼ |
| (୨) ଶିଙ୍ଗାର-ଭୋଗମାନଙ୍କ ପାଇଁ | ୮ ମାଢ଼ |

| | |
|---|---|
| (୩) ଗୋଟିଏ ବଲ୍ଲଭ ସିଙ୍ଗାର ଭୋଗ ପାଇଁ | ୫ ମାଢ଼ |
| (୪) ଦୁଇଟି ସକୁଢ଼ି ସିଙ୍ଗାର ଭୋଗ ପାଇଁ | ୧୩ ମାଢ଼ |
| (୫) ସାତଟି ସିଙ୍ଗାର ଭୋଗ ପାଇଁ (ପ୍ରତ୍ୟେକ ଭୋଗ ପାଇଁ ୨ ମାଢ଼) | ୧୪ ମାଢ଼ |
| ମୋଟ— | ୪୯ ମାଢ଼ |

ମୋଟ ୬୦ ମାଢ଼ରୁ ଭୋଗ ପାଇଁ ୪୯ ମାଢ଼ ଖର୍ଚ୍ଚ ଯାଇ ବଳକା ୧୧ ମାଢ଼ କପର ଖର୍ଚ୍ଚ ହେଉଥିଲା ତାହା ଲେଖା ହୋଇନାହିଁ । ଏହା ବ୍ୟତୀତ ଅଧିକରେ ସିଙ୍ଗାର ଭୋଗ ପାଇଁ ୨୨ ମାଢ଼ ଏବଂ ଅନ୍ୟ ସାତଟି ଭୋଗପାଇଁ ୮୨ ମାଢ଼ ମଧ୍ୟ ଖର୍ଚ୍ଚ ହେଉଥିଲା । ଏ ହିସାବରେ ବର୍ଷ ଗୋଟିକ (୩୬୫ ଦିନ)ରେ ଠାକୁରଙ୍କ ଭୋଗ ସକାଶେ ମୋଟ ଖର୍ଚ୍ଚ ହେଉଥିଲା ୩୯,୨୮୫ ମାଢ଼ (ସୁବର୍ଣ୍ଣ) ।

ଶ୍ରୀମନ୍ଦିରରେ ଠାକୁରମାନଙ୍କ ଭୋଗ ଦୁଇ ଭାଗରେ ବିଭକ୍ତ; ଯଥା— ସକୁଢ଼ି ଓ ନିସଂକୁଢ଼ି (ଶୁଖିଲା) । ସେହି ଭୋଗମାନଙ୍କର ସଂଖ୍ୟା ଓ ପରିମାଣ କାଳକ୍ରମେ ବୃଦ୍ଧି ଲାଭ କଲା । କାରଣ ଓଡ଼ିଶାର ରାଜା ଓ ରାଣୀମାନେ ଆପଦ-ବିପଦ କାଳରେ ମାନସିକ କରି ନୂଆ ନୂଆ ଭୋଗରାଗ ଶ୍ରୀଜଗନ୍ନାଥଙ୍କ ପାଇଁ ଖଞ୍ଜି ଦେଉଥିଲେ । ଦେଖି ସଙ୍ଗେ ପରବର୍ତ୍ତୀକାଳର ରାଜା ଓ ରାଣୀମାନେ ମଧ୍ୟ ଭୋଗ-ବ୍ୟଞ୍ଜନ ତଥା ପିଷ୍ଟକାଦି ଖଞ୍ଜିବା ହେତୁ ଶ୍ରୀଜଗନ୍ନାଥଙ୍କ ଭୋଗ ପଦାର୍ଥର ପରିମାଣ କାଳକ୍ରମେ ଅଧିକରୁ ଅଧିକ ହୋଇ ବଢ଼ିଗଲା । ସେହି ଅନୁପାତରେ ମଧ୍ୟ ତାହା ଶ୍ରୀମନ୍ଦିର ଭିତରେ ରନ୍ଧା ହେବା ବ୍ୟବସ୍ଥା କରାଗଲା ।

ଏଠାରେ କହିବା ଆବଶ୍ୟକ ଯେ, ସମାଜର ଅଧିକାଂଶ ନୀତିନିୟମ ବାସ୍ତବତାକୁ ସମ୍ବଳ କରି ଗଠିତ ହୋଇଛି ଏବଂ ତାହା ସ୍ମୃତିକାରମାନେ ଗ୍ରହଣ କରିଛନ୍ତି । ଉଦାହରଣ ସ୍ୱରୂପ ଗୀତାରେ ଖାଦ୍ୟବସ୍ତୁ ବର୍ଜନ ବିଷୟରେ ଲେଖାଅଛି ; "ଯାତ ଯାମଂ ଗତରସଂ ପୂତି ପର୍ଯ୍ୟୁଷିତଂ ଚ ଯତ୍..." ଇତ୍ୟାଦି । ରନ୍ଧା ହୋଇଥିବା ଯେଉଁ ଖାଦ୍ୟ ପଦାର୍ଥ ଗୋଟିଏ ରାତି ଅତିବାହିତ ହୋଇଥାଏ କିମ୍ବା ରସଶୂନ୍ୟ ହୋଇଥାଏ, ତାହା ଖାଦ୍ୟରୂପେ ବ୍ୟବହାର କରିବା ନିଷେଧ । କିନ୍ତୁ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଏ ନୀତି ପାଳିତ ହୁଏ ନାହିଁ । ପଖାଳ ଓ ନିର୍ମାଲ୍ୟ ବ୍ୟବହାରରୁ ଏହା ପ୍ରମାଣିତ ହୁଏ ।

ବାସ୍ତବରେ କହିବାକୁ ଗଲେ, ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ହିଁ ଉତ୍କଳବାସୀ ହିନ୍ଦୁ ସମାଜରେ ବହୁ ସଂସ୍କାର କରି ପାରିଥିଲେ । ସେଥିର ଠିକ ନଥି ବିସ୍ତାର କରିବାକୁ ଗଲେ, ତାହା ଏକ ସ୍ଵତନ୍ତ୍ର ଗ୍ରନ୍ଥରେ ପରିଣତ ହେବ । ତେବେ ଓଡ଼ିଶାରେ ପ୍ରସ୍ତୁତ ହେଉଥିବା ଖାଦ୍ୟ ସାମଗ୍ରୀ, ଯାହାକି ନଗିମିଷ ପୁଣି ଶ୍ରୀଜଗନ୍ନାଥଙ୍କ ଭୋଗରୂପେ ପ୍ରାପ୍ତ ଅଢ଼େଇଶ ବର୍ଷ ପୂର୍ବେ ଶ୍ରୀମନ୍ଦିରରେ ସୁଦକ୍ଷ ସୁଆରମାନେ ପ୍ରସ୍ତୁତ କରୁଥିଲେ, ସେଥି ମଧ୍ୟରେ ସଙ୍କୁଡ଼ି ଭୋଗ ରୂପେ ଛପନ ପ୍ରକାର ଅନ୍ନ ବ୍ୟଞ୍ଜନ ସମେତ ବିଭିନ୍ନ ପ୍ରକାର ପିଷ୍ଟକାଦି (ସୁଖିଲା) ଭୋଗ ଅନ୍ୟତମ । ବର୍ତ୍ତମାନ ସେହି 'ସୁଖିଲା-ଭୋଗ' ମଧ୍ୟରୁ କେତେକ ନାମ ମଧ୍ୟ ବିସ୍ମୃତି ଗର୍ଭରେ ଲୀନ ହୋଇଗଲାଣି । "ଶ୍ରୀଜଗନ୍ନାଥସ୍ଥଳ ବୃତ୍ତାନ୍ତମ୍" ନାମକ ଅପ୍ରକାଶିତ ଗ୍ରନ୍ଥରେ ସେହି ଭୋଗଗୁଡ଼ିକର ଏକ ଦୀର୍ଘ ତାଲିକା ଦିଆଯାଇଛି ଏବଂ ପ୍ରତ୍ୟେକ ଜିନିଷପାଇଁ ବ୍ୟବହୃତ ହେଉଥିବା ଦ୍ରବ୍ୟ ଓ ସେଥିର ପରିମାଣ ମଧ୍ୟ ଉଲ୍ଲେଖ ହୋଇଛି । ବର୍ତ୍ତମାନ ପ୍ରବନ୍ଧର ଦୀର୍ଘତା ଦୃଷ୍ଟିରୁ ସେହି ସୁଖିଲା ଭୋଗଗୁଡ଼ିକର ନାମ କେବଳ ନିମ୍ନରେ ଉଦ୍ଧୃତ ହେଲା—

(୧) ଗଜାମଣ୍ଡା, (୨) ବୋଡ଼ି-ମଣ୍ଡା, (୩) ଓଳ-ପୁଳି, (୪) ମାଠପୁଳି, (୫) ସର-ପୁଳି, (୬) ଘୃତ-ପୁଳି, (୭) ସାନ ଚକ୍ରା, (୮) କାକରା, (୯)ଅହ୍ମମାଲୁ (ଅମାଲୁ), (୧୦)ବଡ଼େଇ ଲେଣ୍ଡା, (୧୧) କର୍ପୂରକେଳୀ, (୧୨) ମାଣ୍ଡୁଆ, (୧୩) ଜସ୍ମ ଅପାମାଲୁ, (୧୪) ଧର୍ମଶରଣ ଲଡ଼ୁ, (୧୫) ନାନମାନ, (୧୬) ଛେନା ଗଜା, (୧୭) ସରକୁମ୍ଭ ଲଡ଼ୁ, (୧୮) କୁଆଁରି-ଗଜା, (୧୯) ହରିବଲ୍ଲଭ, (୨୦) ନରସିଂହବଲ୍ଲଭ, (୨୧) ସାନ ଛେନା ଲଡ୍ଡୁ, (୨୨) ପାରିଜାତକ, (୨୩) ବଡ ଡାଲିମ୍ବ, (୨୪) ସାନ ଡାଲିମ୍ବ, (୨୫) ବଡ଼ ଲୋଗାଦିସନୁ (?). (୨୬) ସାନସୋଧ, (୨୭) ଖଇରୁ ଚୂରା, (୨୮) ଚିତଉ ପିଠା, (୨୯) ସୋଣ ଚକୁନ, (୩୦) ଅମୃତ କୁଣ୍ଡି, (୩୧) ଅଙ୍ଗବାସ-ପଣା, (୩୨) ଛେନା ପଣା, (୩୩) ସରପଣା, (୩୪) ସରଗଜା, (୩୫) ଘଡ଼କା-ପଣା, (୩୬) ସରପଣା, (୩୭) ଗୋଲ୍ଠି-ବସାଦହି, (୩୮) କୁଡ଼ିକ- ବସାଦହି, (୩୯) ଅମୃତ ଦୁଧ, (୪୦) ଚକାଦହି (୪୧) ଶ୍ଵେତଦହି, (୪୨) ଏଣ୍ଡୁରି ପିଠା, (୪୩) ସର ପାପୁଡ଼ି, (୪୪) ଘିଅନାଡ଼ି ପ୍ରଭୃତି ଭୋଗରେ ଲାଗେ । ମହାପ୍ରଭୁଙ୍କର ସକାଳ ଧୂପରେ 'ଦହି ପଖାଳ" ବଢ଼ାଯାଏ । ସେଥି ସଙ୍ଗେ ତିନ କୁଡ଼ୁଆ ଖେଚଡ଼ି, ତିନୋଟି ବଡ଼ କୁଡୁଅରେ କାନିକା ଖେଚଡ଼ି ମଧ୍ୟ ଭୋଗ ଲାଗେ । ଏହା ବ୍ୟତୀତ ଏଣ୍ଡୁରିପିଠା, ଚନ୍ଦ୍ରକାନ୍ତି, ବଡ଼ ପାପୁଡ଼ି, ସାନ ପାପୁଡ଼ି ବଢ଼ା ହୁଏ । ସେଥି ସଙ୍ଗେ ୫୦ଟି ପାନ ବିଡ଼ିଆ ମଧ୍ୟ ପ୍ରଭୁଙ୍କ ଭୋଗରେ ଦିଆଯାଏ ।

ମହାରାଜା ମୁକୁନ୍ଦଦେବ ମହାପ୍ରଭୁଙ୍କ ମଧ୍ୟାହ୍ନ ଧୂପରେ ଭୋଗପାଇଁ ଅନ୍ନ ସଙ୍ଗେ ତିନି ବଡକୁଡୁଆ ବେଢ଼ୀର, ଚାରି ବଡ଼ କୁଡୁଆ ଡ଼ାଲି, ଚାରି କୁଡୁଆ ଅଟକାଳି, ତିନି କୁଡୁଆ କାନିକା (ପରମାନ୍ନ), ତିନି କୁଡୁଆ ମହୁର, ତିନି କଲଶ ଦହି, ଏକ କୁଡୁଆ ଅମୃତ ଦୁଧ ଓ ସେଥିରେ ଖଣ୍ଡ ଓ ଅମୃତ ପାଣି କଦଳୀ ଚକଟା ହୋଇଥାଏ । ଏ ସମସ୍ତ ସଙ୍ଗେ ବଡ଼ ନାଡ଼ୁ ୪ଟି, ଛପୁରି ୪ଟି, ସିଙ୍ଗାଡ଼ (?) ବଡ଼ା ୧୨ଟି, ଘୋଲ-ବଡ଼ା (ଦହିବଡ଼ା) ୮ଟି, ଟାକୁଆ ୪ଟି, ବଡ଼ କାନ୍ତି, ୪ ସର, ବଡ଼ କାକରା ୪ଟି, ସର, ସାନସୁଆ-୩୨ଟି, ସାନ କାକରା ୧୨ଟି, ସାନ କାନ୍ତି ୧୨ଟି, ଛେନା ଓ ଖିରି ୪ଟି, ମାଟି କଲଶରେ ଏବଂ ପାରିଜାତକ ୩ଟି, ହଂସକେଳି ୪ଟି ମାଟି କଲଶରେ ରଖି ବଣ୍ଟା ହୁଏ । ଏହା ବ୍ୟତୀତ ଚଢ଼େଇ ଲେଦା ୭ଟି ମାଟି ସରାରେ, କଦଳୀ ବଡ଼ା ୩୨ଟି, ଅପମାଲୁ ୨୨ଟି, ଚନ୍ଦ୍ରକାନ୍ତି ୩ଟି, ନଡ଼ିଆ-ମଣ୍ଡା ୩ଟି, ସୁବାସିତ ଜଳ ତଳି କଲଶ ଏବଂ ବଡ଼ିଆ ୫୦ଟି ଭୋଗ ସକାଶେ ବ୍ୟବସ୍ଥା କରିଥିଲେ । ସନ୍ଧ୍ୟା ଧୂପରେ ଭୋଗ ସକାଶେ ମହାରାଜା ମୁକୁନ୍ଦଦେବ ନିମ୍ନୋକ୍ତ ବସ୍ତୁଗୁଡ଼ିକ ବ୍ୟବସ୍ଥା କରିଥିଲେ—

(୧) ସାକର ୩ କୁଡୁଆ, ଘୋଟା ଦହି ୪ କୁଡୁଆ, ସରପାପୁଡ଼ି ୮ଟି, ବସାଦହି ୩ ସରା, ୭ ହାଣ୍ଡି ଚହ୍ଲା ପଖାଳ, ମରିଚ ଲଡୁ ୨୭ଟି, ମାଠିପୁଳି ୧୨ଟି, ଛେନା ଲଡୁ ୩ଟି, ଚନ୍ଦ୍ରକାନ୍ତି ୩ଟି, ସୁବାସ ପାଣି ସମେତ ୧୦୦ଟି ପାନପତ୍ର ଓ ବଡ଼ିଆ ତିନୋଟି ଭୋଗ ପାଇଁ ଗଞ୍ଜିଥିଲେ ।

ବଡ଼ଶିଙ୍ଗାର ଭୋଗପାଇଁ ତିନୋଟି ବଡ଼ କୁଡ଼ିଆରେ ପୂର୍ଣ୍ଣ ହୋଇଥିବା କାନକା, ୪ଟି ଆରିସା, ୪ଟି ବଡ଼ ଡ଼ାଲମ୍ବ, ୩ଟି କର୍ପୂର କେଳି, ୧୨ଟି ସାନଚୂଡ଼ା, ଏକ ସରରେ ପୂର୍ଣ୍ଣ ହୋଇଥିବା ସର, ୪ଟି ଛେନା ଲଡୁ, ୭ଟି କୁମ୍ଭରେ ଭରିଥିବା ସୁବାସ ଜଳ ଏବଂ ୧୦୦ଟି ପାନ ପତ୍ର ଓ ୧୫ଟି ଗୁଆ ।

ସେହିପରି ବଲ୍ଲଭ ଭୋଗରେ ୫ଟି ଚକୁଳି, ତିନି ହାଣ୍ଡି କାଞ୍ଜି (?), ୩ କଳସି ପୂଟିକା ଦହି, ୨ଟି ନାଡ଼ୁ, ୪ଟି ଛେନା ଲଡୁ, ୪ଟି ସରପୁଳି, ୪ଟି ଦହି ବଡ଼ା, ୩ କଳସି ସୁବାସ-ଜଳ ଏବଂ ୩ଟି ବଡ଼ିଆ ।

ଉପରୋକ୍ତ ସମସ୍ତ ଭୋଗ ସମ୍ଭାର ଉତ୍କଳର ଶେଷ ସ୍ୱାଧୀନ ମହାରାଜା ମୁକୁନ୍ଦଦେବ ଗଞ୍ଜିଥିବା ବିଷୟ ଉପରୋକ୍ତ ଅପ୍ରକାଶିତ "ଶ୍ରୀଜଗନ୍ନାଥ ସ୍ଥଳ ବୃତ୍ତାନ୍ତ ମୂ" ପାଣ୍ଡୁଲିପିରେ ଲେଖାଅଛି ।

ଓଡ଼ିଶା ଇତିହାସରୁ ଜଣାଯାଇଛି ଯେ, ଚାଳୁକ୍ୟ ବଂଶୀୟ ମହାରାଜା ମୁକୁନ୍ଦ ଦେବ, ୧୫୫୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ସିଂହାସନ ଆରୋହଣ କରି ଏ ରାଜ୍ୟର ବହୁ ଉନ୍ନତିକର କାର୍ଯ୍ୟରେ ଲିପ୍ତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କଠାରେ ତାଙ୍କର ଅପାର ଭକ୍ତି ଥିଲା । ତେଣୁ ଶ୍ରୀମନ୍ଦିରର ଶ୍ରୀବୃଦ୍ଧି କରି ଶ୍ରୀଜଗନ୍ନାଥଙ୍କ ଭୋଗରାଗ ପାଇଁ ଯେଉଁ ବ୍ୟବସ୍ଥାମାନ କରିଥିଲେ, ସେଥିର ସଂକ୍ଷିପ୍ତ ବିବରଣୀ ଉପରେ ବର୍ଣ୍ଣିତ ହେଲା, କିନ୍ତୁ ତାଙ୍କର ଜୀବନକାଳ ଖ୍ରୀ. ୧୫୬୮ ସାଲରେ ଅର୍ଥାତ୍ ଦଶବର୍ଷ ମଧ୍ୟରେ ଶେଷ ହୋଇଗଲା । ବାଲେଶ୍ୱରସ୍ଥ କୋଟସିମାଠାରେ ବଙ୍ଗର ନବାବ ସୁଲେମାନଙ୍କ ସଙ୍ଗେ ତାଙ୍କର ସନ୍ଧି ହୋଇଥିଲା । ରାମଚନ୍ଦ୍ର ଭଞ୍ଜ ବିଦ୍ରୋହ କରିଥିବାରୁ ତାଙ୍କୁ ଦମନ କରିବା ନିମନ୍ତେ ସୁଲେମାନଙ୍କ ପୁତ୍ର ବାଇଜିଦ୍ କୋଟସିମାଠାରେ ଯୁଦ୍ଧ କରି ରାମଚନ୍ଦ୍ର ଭଞ୍ଜଙ୍କୁ ପରାସ୍ତ କଲେ । ଠିକ୍ ସେହି ରାତିରେ ମୁକୁନ୍ଦଦେବ ବାଲେଶ୍ୱରର ଗୋହିର ଟିକିରି ଶିବିରରେ ଶାୟିତ ଥିଲାବେଳେ ଓଡ଼ିଶାର ଦୁଇଜଣ ଆତତାୟୀ କର୍ମଚାରୀ ତାଙ୍କୁ ହତ୍ୟାକରି ଓଡ଼ିଶାର ସ୍ୱାଧୀନତା ଚିରଦିନ ପାଇଁ ହରାଇ ଦେଲେ । ଏ ଘଟଣା ପରେ ବଙ୍ଗର ଅଫ ଗାନ୍ ନବାବଙ୍କ ପକ୍ଷରୁ କଳାପାହାଡ଼ କଟକର ବାରବାଟୀ-ଦୁର୍ଗ ଅକ୍ରମଣ କରି ସଙ୍ଗେ ସଙ୍ଗେ ଓଡ଼ିଶାର ଜାତୀୟ ଦେବତା ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ପଶି ଦାରୁଦେବତାମାନଙ୍କୁ ଶକଟରେ ଗଙ୍ଗା ତଟକୁ ନେଇ ସେଠାରେ ଦଗ୍ଧ କରିଥିଲା । ସେତେବେଳେ ମୁସଲମାନ ସୈନ୍ୟମାନେ ପୁରୀ ସହରକୁ ଧ୍ୱଂସ ସ୍ତୂପରେ ପରିଣତ କଲେ । ସହରବାସୀମାନେ ପ୍ରାଣ ବିକଳରେ ଗୃହ ଦ୍ୱାର ଛାଡ଼ି କେ କେଉଁ ଆଡ଼େ ପଳାଇ ଗଲେ । ଶ୍ରୀନୀଳାଚଳ ଧାମ ଏକ ନିର୍ଜନ ମରୁଭୂମିରେ ପରିଣତ ହେଲା । ସମଗ୍ର ଭାରତର ହିନ୍ଦୁ-ସମାଜରେ ଚହଳ ସୃଷ୍ଟି ହେଲା । ଦିଲ୍ଲୀରେ ବାଦଶାହ ଆକବର ଏ ଖବର ପାଇ ବ୍ୟସ୍ତ ହୋଇଗଲେ । କାରଣ ପୂର୍ବ ଭାରତରେ ତାଙ୍କର ପରମ ମିତ୍ର ମହାବୀର ମୁକୁନ୍ଦଦେବଙ୍କ ହେନ୍ତ ଶୋଚନୀୟ ମୃତ୍ୟୁ ତାଙ୍କୁ ଅଥୟ କରି ଦେଲା । ଏଥିର ପ୍ରତିକାର ନିମନ୍ତେ ଦିଲ୍ଲୀଠାରୁ ସୈନ୍ୟ ସଙ୍ଗେ ମାନସିଂହଙ୍କୁ ସେ ଉତ୍କଳକୁ ପଠାଇଲେ । ମାନସିଂହ ଅବିଳମ୍ବେ ଓଡ଼ିଶାରେ ପହଞ୍ଚି କଟକରୁ ଆଫ୍‌ଗାନ୍-ମାନଙ୍କୁ ବିତାଡ଼ିତ କରି ଶ୍ରୀଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା କାର୍ଯ୍ୟ ସମାପନ କରିବାକୁ ଲାଗିଲେ । ମାନସିଂହ ୧୫୯୨ ଖ୍ରୀଷ୍ଟାବ୍ଦରେ ବାରବାଟୀ ଦୁର୍ଗ ଅଧିକାର କରିଥିବା ଜଣାଯାଏ । ତେଣୁ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ପ୍ରାୟ ୨୪ ବର୍ଷ ଓଡ଼ିଶାରେ ଘୋର ଦୁର୍ବିପାକ ଘୋଟି ରହିଥିଲା ।

ଶ୍ରୀଜଗନ୍ନାଥ ମନ୍ଦିରର ପୂର୍ବ ଗୌରବ ଓ ପବିତ୍ରତା ଫେରାଇ ଆଣିବା ନିମନ୍ତେ ଭୋଇ ବଂଶର ଜଣେ ସମର୍ଥକ ବୀରସେନାଧ୍ୟକ୍ଷ ରାମଚନ୍ଦ୍ରଦେବଙ୍କୁ

ଖୁର୍ଦ୍ଧାର ରାଜା ରୂପେ ନିରୂପଣ କରି ମାନସିଂହ ଦିଲ୍ଲୀକୁ ଫେରିଗଲେ । ରାମଚନ୍ଦ୍ର ଦେବଙ୍କ ରାଜତ୍ୱରେ (ଖ୍ରୀ: ୧୫୬୮-୧୬୦୦) ତାଙ୍କ ବିଚକ୍ଷଣତା ଯୋଗୁଁ ଶ୍ରୀମନ୍ଦିରରେ ତିନି ଠାକୁରଙ୍କ ନବକଳେବର ଉତ୍ସବ ସମାପନ ହୋଇ ଶ୍ରୀମନ୍ଦିରର ପ୍ରାଚୀନ ବୈଭବ ଫେରିଥିବା ଦେଖି ଲୋକେ ଶ୍ରୀରାମଚନ୍ଦ୍ର ଦେବଙ୍କୁ "ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ" ବୋଲି ଅଭିନନ୍ଦିତ କଲେ । ରାଜା ରାମଚନ୍ଦ୍ରଙ୍କ ଉଦ୍ୟମରେ ପୂର୍ବରୁ ପ୍ରଚଳିତ ସମସ୍ତ ନୀତିଗତି ଶ୍ରୀଜଗନ୍ନାଥ ମନ୍ଦିରରେ ପୁନଃ ପ୍ରଚଳନ କରାଗଲା । ତେଣୁ ମହାରାଜା ମୁକୁନ୍ଦଦେବ ଯେଉଁ ଯେଉଁ, ଭୋଗ-ରାଗର ବ୍ୟବସ୍ଥାମାନ ଖଞ୍ଜି ଦେଇଥିଲେ, ତାହାହିଁ 'ମାଦଳା ପାଞ୍ଜି'ରେ ଲେଖା ହୋଇ ଯଥା ନିୟମରେ ପରିଚାଳିତ ହେଲା । ତଥାପି କାଳକ୍ରମେ କେତେକ ଭୋଗ ସାମଗ୍ରୀର ଅଦଳବଦଳ କରାଯାଇଛି ।

ଶ୍ରୀପୁରୁଷୋତ୍ତମ-କ୍ଷେତ୍ରରେ ବିକ୍ରି ହେଉଥିବା 'ମହାପ୍ରସାଦ'କୁ ଅନୁକରଣ କରି ଭୁବନେଶ୍ୱରସ୍ଥ ବିନ୍ଦୁସରୋବରର ତଟରେ ପ୍ରତିଷ୍ଠିତ ଅନନ୍ତ ବାସୁଦେବ ମନ୍ଦିରର ଭୋଗ ପ୍ରସାଦ ଶ୍ରୀଜଗନ୍ନାଥଙ୍କ 'ମହାପ୍ରସାଦ' ତୁଲ୍ୟ ବ୍ୟବହାର କରିବା ଉଦ୍ୟମ ଲୋକଙ୍କ ମଧ୍ୟରେ ପ୍ରଶଂସା ଲାଭ କରୁଛି । ବ୍ୟବସାୟିକ ଭିତ୍ତିରେ ସେଠାରେ ଭୋଗ ବିକ୍ରୟ ହେଉଥିଲେ ମଧ୍ୟ ସେଥିର ପବିତ୍ରତା କେବଳ ସେହି ମନ୍ଦିରରେ ହିଁ ପ୍ରସାଦ ଭୋଜନ କରିବା ସଙ୍ଗେ ସମ୍ପୃକ୍ତ । ସେହି ପ୍ରସାଦ ଅନ୍ୟତ୍ର ନେବା ବିଧି ବହୁତକାଳ ପର୍ଯ୍ୟନ୍ତ ପ୍ରଚଳିତ ହୋଇ ନଥିଲା । କିନ୍ତୁ ଏବେ ଭୁବନେଶ୍ୱର ଓ ପାର୍ଶ୍ୱବର୍ତ୍ତୀ ଅଞ୍ଚଳମାନଙ୍କରେ ଜନସଂଖ୍ୟାର କ୍ରମ ବୃଦ୍ଧି ହେତୁ ଶ୍ରୀଅନନ୍ତ ବାସୁଦେବ-ମନ୍ଦିର ଭୋଗପ୍ରସାଦ ବୃଦ୍ଧିକୁ ଲକ୍ଷ୍ୟ କଲେ ମନେହୁଏ, ଦିନ ଆସିବ ଯେତେବେଳେ ଲୋକେ ସେହି ପ୍ରସାଦକୁ ଶ୍ରୀଜଗନ୍ନାଥ ମନ୍ଦିରର 'ମହାପ୍ରସାଦ' ସଙ୍ଗେ ସମତୁଲ୍ୟ କରି ବ୍ୟବହାର କରିବେ । ଆବଶ୍ୟକତା ଦୃଷ୍ଟିରୁ ମଣିଷର ସାମାଜିକ କିମ୍ବା ସଂସ୍କାରଭିତ୍ତିକ ହୋଇଥାଏ । ଏହା ଯୁଗେ ଯୁଗେ ଘଟିଛି ଓ ଘଟୁଥିବ ମଧ୍ୟ ।



# ଦେବୀ ସୁଭଦ୍ରାଙ୍କ ସ୍ଥିତି ଓ ସ୍ୱରୂପ

ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ତ୍ରିମୂର୍ତ୍ତିଙ୍କ ମଧ୍ୟରେ ସୁଭଦ୍ରାଙ୍କ ଅବସ୍ଥିତି ଅତି ଅଦ୍ଭୁତ । କାରଣ ତାଙ୍କ ସ୍ୱରୂପ ହେଉଛି ହସ୍ତପଦବିହୀନ ସ୍ତମ୍ଭାକୃତି ମାତ୍ର । ପ୍ରାଚୀନ ମୂର୍ତ୍ତିତତ୍ତ୍ୱକୁ ଆଧାର କରି କୃଷ୍ଣ ଓ ବଳଦେବଙ୍କ ମଧ୍ୟରେ ସୁଭଦ୍ରା ରୁକ୍ମିଣୀ ଏକାନଂଶାଦେବୀ ଦ୍ୱିଭୁଜା କିମ୍ବା ଚତୁର୍ଭୁଜା ରୂପେ ବରାହ ମିହିର ତାଙ୍କ 'ବୃହତ୍ ସଂହିତା' ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ଦ୍ୱିଭୁଜାମୂର୍ତ୍ତି ଯଥାଃ—

"ଏକାନଂଶା କାର୍ଯ୍ୟାଦେବୀ ବଳଦେବ-କୃଷ୍ଣୟୋର୍ମଧ୍ୟେ ।
କଟିସଂସ୍ଥିତ ବାମକର ସରୋଜମିତରେଣ ଚୋଦ୍ ବହତୀ ॥"

ଅର୍ଥାତ୍ ଦେବୀ ଏକାନଂଶା (ସୁଭଦ୍ରା) ବଳଦେବ ଓ କୃଷ୍ଣଙ୍କ ମଧ୍ୟରେ ଅବସ୍ଥିତା । ତାଙ୍କ ବାମହସ୍ତ କଟି ସଂଲଗ୍ନ ଏବଂ ଦକ୍ଷିଣହସ୍ତରେ ସେ ଗୋଟିଏ ପଦ୍ମ ଧାରଣ କରନ୍ତି ।

ଚତୁର୍ଭୁଜା ଏକାନଂଶାଙ୍କ ସ୍ୱରୂପ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଅଛି :—

"କାର୍ଯ୍ୟା ଚତୁର୍ଭୁଜା ଚ ବାମକରାଭ୍ୟାଂ ସପୁସ୍ତକ କମଳମ୍ ।
ଦ୍ୱାଭ୍ୟାଂ ଦକ୍ଷିଣପାର୍ଶ୍ୱେ ବରମର୍ଥିଷ୍ୱକ୍ଷସୂତ୍ରଂ ଚ ॥"

ଅର୍ଥାତ୍ ଚତୁର୍ଭୁଜାଙ୍କ ବାମପାର୍ଶ୍ୱର ଦୁଇହସ୍ତରେ ପୁସ୍ତକ ଓ ପଦ୍ମ ଏବଂ ଦକ୍ଷିଣପାର୍ଶ୍ୱର ଦୁଇ ହସ୍ତରେ ବରଦ ଓ ଅକ୍ଷସୂତ୍ର ବିଦ୍ୟମାନ ।

(ବୃହତ୍ ସଂହିତା, ଟୀକାକାର ଭଟ୍ଟୋତ୍ପଳ)

କିନ୍ତୁ ଓଡ଼ିଶାରେ ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠିତା ଦେବୀ ସୁଭଦ୍ରା ଏକ ସ୍ତମ୍ଭାକୃତି ଧାରଣ କରିଥିବା ଦେଖାଯାଏ । ଖ୍ରୀଷ୍ଟ ତ୍ରୟୋଦଶ ଶତାବ୍ଦୀ ପରେ ଶ୍ରୀମନ୍ଦିରରେ ଯେତେବେଳେ ପ୍ରସ୍ତର ନିର୍ମିତ ବିଗ୍ରହଙ୍କ ପରିବର୍ତ୍ତେ ଦାରୁମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲେ, ସେତିକିବେଳୁ ଦେବଦେବୀଙ୍କ ମୂର୍ତ୍ତି ହସ୍ତପଦବିହୀନ କରି ଗଠିତ ହେଲା ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ସ୍ତମ୍ଭାକୃତି ସମ୍ପନ୍ନା ଦେବୀ ସୁଭଦ୍ରାଙ୍କ ମୂର୍ତ୍ତିର ଆଦ୍ୟମ ନିଦର୍ଶନ କେବେ ଓ କେଉଁ ଅଞ୍ଚଳରେ ପ୍ରଥମେ ସୃଷ୍ଟି ହୋଇଥିଲା ଓ

ଦେବୀ ରୂପେ ସେ ପୂଜିତା ହେଉଥିଲେ ? ଆମ୍ଭେ ମନେକରୁ, ଅତି ପ୍ରାଚୀନ-କାଳରୁ ଓଡ଼ିଶାର ନିବିଡ଼ ଅରଣ୍ୟ ରାଜ୍ୟରେ ବାସ କରିଥିବା କନ୍ଧ ଓ ଶବରମାନେ ଗୋଟିଏ କାଷ୍ଠ ସ୍ତମ୍ଭରେ ମନୁଷ୍ୟକୁ ବାନ୍ଧି ତାଙ୍କ ଦେବତାଙ୍କ ଉଦ୍ଦେଶ୍ୟରେ ନରବଳି ଦେଉଥିଲେ । କନ୍ଧମାନଙ୍କର ସେହି ନରବଳି ପ୍ରଥା ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ନିବିଡ଼ ଅରଣ୍ୟମାନଙ୍କରେ ପ୍ରଚଳିତ ହେଉଥିଲା । ଇଂରାଜୀ ରାଜତ୍ୱ ପରେ ତାହା ପ୍ରଶମିତ ହେଲା ।

ଯେଉଁ କାଷ୍ଠ ସ୍ତମ୍ଭରେ ମନୁଷ୍ୟଙ୍କୁ ବାନ୍ଧି ନରବଳି ଦିଆଯାଉଥିଲା, ସେହି ଯୂପସ୍ତମ୍ଭକୁ 'ଗୁପ୍ତଯୁଗ'ରେ କେତେକ ସ୍ଥାନୀୟ ରାଜା ତାଙ୍କ ଇଷ୍ଟଦେବୀ ରୂପେ ଗ୍ରହଣ କରିଥିଲେ । ସେହି ରାଜାମାନଙ୍କ ଆଶ୍ରୟରେ କେତେକ ସଂସ୍କୃତଜ୍ଞ ବ୍ରାହ୍ମଣ ପଣ୍ଡିତ ବା ପୁରୋହିତ ସେହି ଅରଣ୍ୟ ରାଜ୍ୟରେ ସେତେବେଳେ ରହିଥାନ୍ତି । ସେମାନେ ସେହି ସ୍ତମ୍ଭାକୃତି ବିଶିଷ୍ଟା ଦେବୀଙ୍କୁ "ସ୍ତମ୍ଭେଶ୍ୱରୀ" ନାମରେ ଅଭିହିତ କରିଥିବା ସମ୍ଭବ । ଓଡ଼ିଶା ବ୍ୟତୀତ ଅନ୍ୟ କେଉଁ ରାଜ୍ୟରେ ସ୍ତମ୍ଭେଶ୍ୱରୀ ପୂଜିତ ହେଉଥିବା ଦେଖାଯାଏ ନାହିଁ ।

ଖ୍ରୀ. ଚତୁର୍ଥ ଶତାବ୍ଦୀ ପୂର୍ବରୁ କଳାହାଣ୍ଡି ଜିଲ୍ଲାର ଏକ ନିବିଡ଼ ଅରଣ୍ୟରେ 'ପ୍ରସ୍ତର ଦ୍ୱାରକ' ନାମରେ ଏକ ରାଜ୍ୟ ଥିଲା । ସେଠାର ଏକ ରାଜବଂଶ 'ସ୍ତମ୍ଭେଶ୍ୱରୀ'ଙ୍କୁ ଇଷ୍ଟଦେବୀ ରୂପେ ପୂଜାକରି ତାଙ୍କ ଆଦିବାସୀ ପ୍ରଜାମାନଙ୍କ ତୁଷ୍ଟି-ସାଧନ ନିମନ୍ତେ ସେହି ଦେବୀଙ୍କ ସମ୍ମୁଖରେ ନରବଳି ଦେଉଥିଲେ । ସେମାନେ ବିଶ୍ୱାସ କରୁଥିଲେ ଯେ, ସେହି ଦେବୀଙ୍କ ପ୍ରାସାଦରୁ ତାଙ୍କ ରାଜ୍ୟ ନିରାପଦରେ ରହିଛି । ତାହା ମଧ୍ୟ ସମ୍ଭବ ହୋଇଥିଲା, ଯେହେତୁ ରାଜ୍ୟରେ ବାସ କରିଥିବା ଆଦିବାସୀ ପ୍ରଜାମାନେ ରାଜାଙ୍କ ପ୍ରତି ସନ୍ତୁଷ୍ଟ ହୋଇଥିଲେ ।

ଖ୍ରୀ: ୪ର୍ଥ ବା ୫ମ ଶତାବ୍ଦୀରେ ଖୋଦିତ ମହାରାଜା ତୁଷ୍ଟିକରଙ୍କ ପ୍ରଦତ୍ତ ଏକ ତାମ୍ରଶାସନ କଳାହାଣ୍ଡି ଜିଲ୍ଲାର ତେରସିଂଗା ନାମକ ଗ୍ରାମରୁ ଆବିଷ୍କୃତ ହୋଇଥିଲା । ସେହି ଗ୍ରାମଟି ତେଲନଦୀ ନିକଟରେ ଅବସ୍ଥିତ । ୧୯୪୭ ସାଲରେ କଳାହାଣ୍ଡି ମହାରାଜା ଶ୍ରୀପ୍ରତାପକେଶରୀ ଦେବଙ୍କଠାରୁ ଏ ଲେଖକ ତାମ୍ର ଶାସନଟି ପାଇ; ସେଥିର ପାଠ ପ୍ରଥମେ କଳିଙ୍ଗ ଐତିହାସିକ-ଗବେଷଣା ସମିତି ପକ୍ଷରୁ ପ୍ରକାଶିତ ଇଂରାଜୀ ପତ୍ରିକାର ୨ୟ ସଂଖ୍ୟାରେ ପ୍ରକାଶ କରିଥିଲା । ପରେ ଡା. ଦୀନେଶଚନ୍ଦ୍ର ସର୍କାର ତାହା 'ଏପିଗ୍ରାଫିଆ ଇଣ୍ଡିକା'ର ୩୦ ଭାଗରେ ପୁନଃପ୍ରକାଶ କଲେ । ସେହି ତାମ୍ର ଶାସନରେ ବ୍ୟବହୃତ ଲିପି ଅନୁସାରେ ତାହା ପଞ୍ଚମ ଶତାବ୍ଦୀର ଲେଖାବୋଲି ଆମ୍ଭେ ସ୍ଥିର କରିଛୁ । କିନ୍ତୁ ଡା. ସର୍କାର

ତାହା ୭ମ ଶତାବ୍ଦୀ ବୋଲି ଅନୁମାନ କରନ୍ତି । ସେଥିରେ ଲେଖାଅଛି, "ପର୍ବତ ଦ୍ୱାରକାଦ୍‌ଭଗବତ୍ୟା ସ୍ତମ୍ଭେଶ୍ୱର୍ଯ୍ୟାଃ ପାଦ ଭକ୍ତଃ × × × ତରଭ୍ରମରକାତ୍ର ସ୍ତମ୍ଭେଶ୍ୱରୀ ପାଦଭକ୍ତଃ ମାତାପିତୃ ପାଦାନୁଧ୍ୟାତଃ ଶ୍ରୀମହାରାଜ ଭୃଷ୍ଟିକାରଃ…"

ସ୍ତମ୍ଭେଶ୍ୱରୀଙ୍କ ପରବର୍ତ୍ତୀ କାଳରେ ସୋମବଂଶୀୟ ରାଜାମାନେ ଏବଂ ଭଞ୍ଜବଂଶୀୟ ରାଜାମାନେ ମଧ୍ୟ ଇଷ୍ଟଦେବୀ ରୂପେ ଆରାଧନା କରିବାକୁ ଲାଗିଲେ । ତେଲ ଓ ମହାନଦୀର ସଙ୍ଗମ ସ୍ଥଳ ସୁବର୍ଣ୍ଣପୁର (ସୋନପୁର)ଠାରେ ପ୍ରଥମେ ତାଙ୍କର ମନ୍ଦିର ଗଠିତ ହୋଇଥିବା ଅନୁମେୟ । ତା'ପରେ ଖ୍ରୀ: ୯ମ ଶତାବ୍ଦୀରେ ଧୃତିପୁରର ଭଞ୍ଜବଂଶୀୟ ରାଜାମାନେ ସ୍ତମ୍ଭେଶ୍ୱରୀଙ୍କୁ ତାଙ୍କ ଇଷ୍ଟଦେବୀ ରୂପେ ଆରାଧନା କରିବାକୁ ଲାଗିଲେ । ସେହି ରାଜାମାନଙ୍କ ପ୍ରଦତ୍ତ ତାମ୍ରଶାସନମାନଙ୍କରେ "ସ୍ତମ୍ଭେଶ୍ୱରୀ ଲବ୍‌ଧ ବରପ୍ରସାଦ" ବୋଲି ଲେଖାହୋଇଛି । ଏଣୁ ସେହି ପ୍ରାଚୀନ ରାଜାମାନେ ସ୍ତମ୍ଭେଶ୍ୱରୀଙ୍କ ବର ପ୍ରସାଦରେ ରାଜ୍ୟ ଲାଭକରି ନିର୍ବିଘ୍ନରେ ପ୍ରଜାପାଳନ କରୁଥିବାରୁ ସେମାନଙ୍କ ଆଦର୍ଶରେ ଦକ୍ଷିଣ ଓଡ଼ିଶାର ନଳ ବଂଶୀୟ ରାଜାମାନେ 'ସ୍ତମ୍ଭେଶ୍ୱରୀ-ପାଟଣା' ନାମ ଦେଇ ଅଶିକାଠାରେ ଋଷିକୁଲ୍ୟା ନଦୀ ତଟରେ ସ୍ତମ୍ଭେଶ୍ୱରୀଙ୍କ ଏକ ମନ୍ଦିର ନିର୍ମାଣ କରିଥିଲେ । ସେଥିର ପୂଜକ ରୂପେ 'ମୁନି' ଜାତିର 'ଦେହୁରି' ନିଯୁକ୍ତ ହେଲେ ।

ବାସ୍ତବରେ କହିବାକୁ ଗଲେ, ସ୍ତମ୍ଭାକାରରେ ଏକ ପ୍ରସ୍ତର ବା ଦାରୁ ନିର୍ମିତ ଦେବୀଙ୍କୁ ଉତ୍କଳର ତାନ୍ତ୍ରିକମାନେ ଆରାଧନା କରୁଥିବା ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ।

ଖ୍ରୀ: ୮ମ ଶତାବ୍ଦୀରେ ସେ ଅଞ୍ଚଳ ଭୌମକର ବଂଶୀୟ ବୌଦ୍ଧ-ରାଜାମାନଙ୍କର ଶାସନାଧୀନ ଥିଲା । ତାଙ୍କ ଅଧୀନରେ ଭଞ୍ଜ ଓ ନନ୍ଦ ବଂଶୀୟ ରାଜାମାନେ ଖଣ୍ଡପାଳ ରୂପେ ରହିଥିଲେ । ସେତେବେଳେ ବୌଦ୍ଧ ଧର୍ମରେ 'ତନ୍ତ୍ରଯାନ' ଏକ ପ୍ରସିଦ୍ଧ ଧର୍ମ ରୂପେ ବିବେଚିତ ହେଉଥିଲା । ଉଡ଼୍ଡ଼ିୟାନ (ଉଦ୍ୟାନ) ଅଞ୍ଚଳରେ ଖ୍ରୀ: ୮ମ ଶତାବ୍ଦୀ ଆରମ୍ଭରେ ଇନ୍ଦ୍ରଭୂତି ନାମକ ଜଣେ ପ୍ରଧାନ ତନ୍ତ୍ରସାଧକ ରାଜା "ଜ୍ଞାନ ସିଦ୍ଧି" ନାମକ ଗୋଟିଏ ଗ୍ରନ୍ଥ ରଚନା କରିଥିଲେ । ବିନୟତୋଷ ଭଟ୍ଟାଚାର୍ଯ୍ୟଙ୍କ ସଂକଳିତ 'ସାଧନମାଳା' ଗ୍ରନ୍ଥରେ ଉଲ୍ଲେଖ ଅଛି, 'କୁରୁକୁଲ୍ଲା-ସାଧନ' ନାମକ ଅନ୍ୟ ଏକ ଗ୍ରନ୍ଥ ମଧ୍ୟ ସେ ଲେଖିଥିଲେ ।

ଉଡ୍ଡିୟାନର ରାଜା ଇନ୍ଦ୍ରଭୂତିଙ୍କ ପୁତ୍ର ପଦ୍ମସମ୍ଭବ 'ଗୁହ୍ୟସିଦ୍ଧି' ନାମକ ଗ୍ରନ୍ଥ ପ୍ରଣୟନ କରି ଲାମା ଧର୍ମର ପ୍ରଥମ ଗୁରୁ ରୂପେ ପରିଚିତ ହେଲେ । ସେହି ରାଜବଂଶର ଇନ୍ଦ୍ରଭୂତିଙ୍କ ଭଗ୍ନି ଲକ୍ଷ୍ମୀଙ୍କରା ନାମକ ଜଣେ ସିଦ୍ଧ-ଯୋଗିନୀ, ଲେଖିଥିବା 'ଅଦ୍ୱୟସିଦ୍ଧି' ନାମକ ଗ୍ରନ୍ଥ 'ସହଜଯାନ ଧର୍ମ' ପ୍ରଚାର କରିଥିଲା ।

ଓଡ଼ିଶାରେ 'ତନ୍ତ୍ରଯାନ'ର ପ୍ରଚାର ପାଇଁ ସେହି ଉପକୂଳ ଅଞ୍ଚଳରେ, ଅର୍ଥାତ୍ 'ଉଦ୍ୟାନ ଅଞ୍ଚଳରେ', ରାଜତ୍ୱ କରୁଥିବା ମହାଯାନ-ବୌଦ୍ଧଧର୍ମୀ ଏକ ରାଜପରିବାର ଖ୍ରୀ: ୮ମ. ଓ ୯ମ. ଶତାବ୍ଦୀରେ ମୁଖ୍ୟ ଅଂଶ ଗ୍ରହଣ କରିଥିବା ଏଥିରୁ ପ୍ରମାଣିତ ହୁଏ । ଓଡ଼ିଶାରେ 'ବଜ୍ରଯାନ' ତଥା 'ତାରାତନ୍ତ୍ର'କୁ ଆଧାର କରି ଶିବ ଓ ଶକ୍ତିର ଏକତ୍ୱ ପ୍ରତିପାଦିତ ହୋଇ ସେଥିରୁ ବଜ୍ର ସ୍ୱରୂପିଣୀ ତାରାଙ୍କ ଉଦ୍ଭାବନା ଏବଂ ପ୍ରାଚୀନ କାଳରୁ ଆରଣ୍ୟକମାନଙ୍କ ପ୍ରତିଷ୍ଠିତା ଦେବୀ 'ସ୍ତମ୍ଭେଶ୍ୱରୀ'ଙ୍କ ଉପାସନା ପ୍ରବର୍ତ୍ତିତ ହୋଇଥିବା ସୁନିଶ୍ଚିତ । ଶିବଙ୍କୁ ଭୈରବ ରୂପେ ଭଞ୍ଜ ରାଜାମାନେ ତାଙ୍କ ତାମ୍ର ଶାସନସ୍ଥ ମଙ୍ଗଳାଚରଣ ଶ୍ଳୋକରେ ଉଲ୍ଲେଖ କରିଛନ୍ତି ; ଯଥା—

"ସଂହାର କାଳହୁତ ଭୁଗ୍ ବିକରାଳ ଘୋର-
ସମ୍ଭ୍ରାନ୍ତ କିଙ୍କର କୃତାନ୍ତ ନିତାନ୍ତ ଭିନ୍ନମ୍ ।
ଭିନ୍ନ ଧ୍ୱଜା ସୁରମହାଗହ୍ୱାନାତ ପନ୍ଥଂ
ତଦ୍ ଭୈରବଂହର ବପୁଃ ଭବତଃ ପ୍ରପାତୁ ॥"

ବୌଦ୍ଧମାନଙ୍କ 'ତାରାତନ୍ତ୍ର'ରେ ବୁଦ୍ଧଙ୍କୁ 'ମହାଭୈରବ' ଏବଂ 'ବିଷ୍ଣୁ' ବୋଲି ବର୍ଣ୍ଣନା କରାଯାଇଛି । ପୁଣି ତାରା ହେଉଛନ୍ତି ବୁଦ୍ଧଙ୍କ ଶକ୍ତି । ସୁତରାଂ ଓଡ଼ିଶାର ତତ୍କାଳୀନ ତାନ୍ତ୍ରିକମାନେ ବୁଦ୍ଧଙ୍କ ସଙ୍ଗେ ଭୈରବଙ୍କୁ ଏବଂ ତାରାଙ୍କ ସଙ୍ଗେ ଶକ୍ତିସ୍ୱରୂପିଣୀ ସ୍ତମ୍ଭେଶ୍ୱରୀଙ୍କୁ ଗ୍ରହଣ କରି ସେହି ସମ୍ମିଶ୍ରିତ ପଦ୍ଧତିରେ ତାଙ୍କର ଉପାସନା କରୁଥିବା ଉପଲବ୍ଧ ହୁଏ । ଯେହେତୁ ବୁଦ୍ଧଙ୍କୁ ଭୈରବ (ଶିବ) ଏବଂ ବିଷ୍ଣୁ ରୂପେ କଳ୍ପନା କରାଯାଉଥିଲା, ସେହି ଧର୍ମାବଲମ୍ବୀ ରାଜାମାନେ ସ୍ତମ୍ଭେଶ୍ୱରୀଙ୍କ ପାଦଭକ୍ତ ତଥା ତାନ୍ତ୍ରିକ ଗୁରୁମାନଙ୍କ ଶିଷ୍ୟ ରୂପେ 'ପରମ-ମାହେଶ୍ୱର' ଏବଂ 'ପରମ ବୈଷ୍ଣବ' ଉପାଧି ମଧ୍ୟ ତାଙ୍କ ତାମ୍ରଶାସନମାନଙ୍କରେ ବ୍ୟବହାର କରିଥିବା ଦେଖାଯାଏ । ଉଦାହରଣ ସ୍ୱରୂପ, ଧୃତିପୁର (ବୌଦ୍ଧ)ର ରାଜା ରଣଭଞ୍ଜଦେବ ତାଙ୍କ ୯ମ ଅଙ୍କରେ 'ପରମମାହେଶ୍ୱର' ଶବ୍ଦ ବ୍ୟବହାର କରି ୧୬ଶ ଅଙ୍କରେ 'ପରମବୈଷ୍ଣବ' ଶବ୍ଦ ବ୍ୟବହାର କରିଥିଲେ । ସେ ରାଜା

ତାଙ୍କ ୫୪ ଅଙ୍କରେ ଫେର୍ 'ପରମ ମାହେଶ୍ୱର' ଉପାଧି ବ୍ୟବହାର କଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଶିବ ଓ ବିଷ୍ଣୁଙ୍କୁ ତାନ୍ତ୍ରିକ ପଦ୍ଧତିରେ ସେ ତାଙ୍କ ଇଷ୍ଟଦେବୀ ସ୍ତମ୍ଭେଶ୍ୱରୀଙ୍କ ମିଶାଇ ଉପାସନା କରୁଥିଲେ । ଏଣୁ ତାଙ୍କ ରାଜଧାନୀର ଅନତିଦୂରସ୍ଥ ମହାନଦୀ ତଟରେ ଅବସ୍ଥିତ 'ଗନ୍ଧରାଡ଼ି' ନାମକ ସ୍ଥାନରେ ଏକ ବିଷ୍ଣୁମନ୍ଦିର ପ୍ରତିଷ୍ଠା କରି ସେଥିରେ ନୀଳମାଧବ (ବିଷ୍ଣୁ)ଙ୍କ ପ୍ରତିମା ସ୍ଥାପନ କରିଥିଲେ ।

ଉପରୋକ୍ତ ଐତିହାସିକ ପୃଷ୍ଠଭୂମିକୁ ଭିତ୍ତି କରି ଆମ୍ଭେ କହିପାରୁ ଯେ ଶିବ, ଶକ୍ତି ଓ ବିଷ୍ଣୁଙ୍କୁ ଏକତ୍ର କରି ଆରାଧନା କରିବା ପଦ୍ଧତି ଓଡ଼ିଶାରେ ସର୍ବ-ପ୍ରଥମେ ଧୃତିପୁରର ଭଞ୍ଜବଂଶୀୟ ମହାରାଜା ଶତ୍ରୁଭଞ୍ଜ ବା ତାଙ୍କ ପୁତ୍ର ରଣଭଞ୍ଜ-ଦେବ ଖ୍ରୀ: ୯ମ ଶତାବ୍ଦୀରେ ଅନୁସରଣ କରିଥିଲେ ।

ଯେଉଁ ସମୟରେ ରଣଭଞ୍ଜଦେବ ଧୃତିପୁରଠାରୁ ଓଡ଼ିଶାର ମଧ୍ୟଭାଗରେ ଥିବା ଅରଣ୍ୟ ଅଞ୍ଚଳରେ, ଅର୍ଥାତ୍ ଆଧୁନିକ ଫୁଲବାଣୀ ଓ ଗଞ୍ଜାମର ଭଞ୍ଜନଗର (ଘୁମୁସର) ପ୍ରଭୃତି ମାଳ ଅଞ୍ଚଳରେ ଶାସନ ବିସ୍ତାର କରିଥିଲେ, ସେତେବେଳେ ଓଡ଼ିଶାର ଉପକୂଳ ଅଞ୍ଚଳ ଭୌମକର ରାଜାମାନଙ୍କର ଶାସନାଧୀନରେ ଥିଲା ଏବଂ ସେହି ରାଜାମାନଙ୍କ ଅଧୀନରେ 'ରାଣକ' ଅର୍ଥାତ୍ ଖଣ୍ଡପାଳ ସାମନ୍ତ ରୂପେ ରଣଭଞ୍ଜ ରାଜତ୍ୱ କରୁଥିଲେ ।

ପ୍ରଥମେ କୁହାଯାଇଛି ଯେ, ଭୌମକର ରାଜାମାନେ ଅଷ୍ଟମ ଶତାବ୍ଦୀରେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ଓଡ଼ିଶାର ଉପକୂଳ ଅଞ୍ଚଳରେ ବୌଦ୍ଧଧର୍ମର ବିକାଶ ସାଧନ କରିଥିଲେ । କିନ୍ତୁ ତାଙ୍କ ଅଧୀନରେ ବହୁ ଜ୍ଞାନୀ ବ୍ରାହ୍ମଣ ପଣ୍ଡିତ ରାଜସଭା ମଣ୍ଡନ କରି ଧର୍ମ ଚର୍ଚ୍ଚାରେ ରାଜାମାନଙ୍କୁ ପ୍ରଭାବିତ କରିବା ଫଳରେ ଖ୍ରୀ: ୯ମ ଶତାବ୍ଦୀରେ ମହାଯାନୀ ବୌଦ୍ଧମାନଙ୍କ 'ତନ୍ତ୍ରଯାନ' ଏବଂ ବ୍ରାହ୍ମଣମାନଙ୍କ ଶକ୍ତି ଉପାସନା ସମ୍ମିଳିତ ହୋଇ ଏକ ନୂତନ ଧର୍ମର ଅଭ୍ୟୁଦୟ ଘଟିଲା । ସେଥିର ଫଳ ସ୍ୱରୂପ ବୌଦ୍ଧଧର୍ମାନ୍ତର୍ଗତ ତାରାଙ୍କୁ ଦୁର୍ଗା ବା ଶକ୍ତି ସ୍ୱରୂପିଣୀ ଦେବୀଙ୍କୁ ବିଭିନ୍ନ ନାମରେ ପରିଚିତ କରାଗଲା । ତାନ୍ତ୍ରିକ ବ୍ରାହ୍ମଣ ସମ୍ପ୍ରଦାୟ ସେହି ଧର୍ମ ଗ୍ରହଣ କଲେ । ଏଣୁ ସେମାନେ ସେହି ତାନ୍ତ୍ରିକ ବିଧିରେ ହିଁ ଦେବୀଙ୍କ ପୂଜା ସମ୍ପାଦନ କରିବାକୁ ଲାଗିଲେ । ବୌଦ୍ଧ 'ମହାଯାନ-ସୂତ୍ର' ଅନୁସାରେ ଦେବୀଙ୍କ ପୀଠରେ 'ପଞ୍ଚମକାର' ଭିତ୍ତିକ ମହା-ଚନ୍ଦ ପୂଜା ପାଳିତ ହେଉଥିଲା ।

ସେଥିରେ କୌଣସି ଜାତି ବା ବର୍ଣ୍ଣଭେଦ ରଖାଗଲା ନାହିଁ । ନାରୀ ପୁରୁଷ ନିର୍ବିଶେଷରେ ଏପରିକି ଚଣ୍ଡାଳୀ ସଙ୍ଗେ ମଧ୍ୟ ତାନ୍ତ୍ରିକର ସଙ୍ଗମ ପ୍ରଚଳିତ ହେଲା । କିନ୍ତୁ ସେଥିର ମୌଳିକ ଭିତ୍ତି ରହିଥିଲା ଯୋଗ-କ୍ରିୟାର ପାଞ୍ଚଟି ସ୍ତର ଉପରେ । ଯଥା—ଦେହଶୁଦ୍ଧି, ବାକ୍‌ଶୁଦ୍ଧି, ମାନସଶୁଦ୍ଧି, ଅମୃତଶୁଦ୍ଧି, ଓ ଚିତ୍ତଶୁଦ୍ଧି । ସେହି ଯୋଗରୁ ଯେ' ସିଦ୍ଧିଲାଭ କରନ୍ତି, ତାଙ୍କ ପକ୍ଷରେ କୌଣସି ସାମାଜିକ ପ୍ରତିବନ୍ଧ ରହି ନଥାଏ । ସେ ନିଜେ ଦେବତାଙ୍କ ଏକ ଅଂଶରେ ପରିଣତ ହୋଇ ପୃଥିବୀର ଯେକୌଣସି ଅସାଧ୍ୟ ସାଧନ କରିବାକୁ ପାରଦର୍ଶୀ ହୁଅନ୍ତି ।

ତାନ୍ତ୍ରିକ-ଯୋଗୀମାନେ ପ୍ରାଚୀନ ରାଜା ଓ ସାଧାରଣଙ୍କଠାରୁ ଯଥେଷ୍ଟ ସମ୍ମାନ ଲାଭ କରୁଥିଲେ ସୁଦ୍ଧା ତାଙ୍କର ସେହି ମହାନ୍ ଆଦର୍ଶ କାଳକ୍ରମେ ନଷ୍ଟଭ୍ରଷ୍ଟ ହୋଇ ଅଶ୍ଳୀଳ ବ୍ୟଭିଚାର ତଥା ନୈତିକ ଅବନତିର ଦ୍ୱାର ଉନ୍ମୋଚନ କଲା । ଏଣୁ ସେଥିର ସଂଶୋଧନ ପାଇଁ 'ତନ୍ତ୍ରଯାନ' ସଙ୍ଗେ ତାନ୍ତ୍ରିକ ଶୈବ ଓ ତାନ୍ତ୍ରିକ ବୈଷ୍ଣବଧର୍ମ ପ୍ରଚାରଲାଭ କରିଥିବା ଅନୁମେୟ । ଏଣୁ ଖ୍ରୀ: ୯ମ ଶତାବ୍ଦୀରେ 'ତାରତନ୍ତ୍ର'ର ପ୍ରଭାବ ସେହି ତାନ୍ତ୍ରିକମାନଙ୍କ ଉପରେ ପଡ଼ି ବୁଦ୍ଧଙ୍କୁ ମହାଭୈରବ (ଶିବ) ଓ ବିଷ୍ଣୁଙ୍କ ସଙ୍ଗେ ସମାନ କରି ଦେଇ ତାଙ୍କ ଆରାଧନା ପ୍ରଚଳିତ ହେଲା ।

ଖ୍ରୀ: ୧୦ମ ଏବଂ ୧୧ଶ ଶତାବ୍ଦୀରେ ଦେବୀ ରୂପିଣୀ ସ୍ତମ୍ଭେଶ୍ୱରୀଙ୍କ ମନ୍ଦିରଟି ସୋମବଂଶୀ ରାଜାମାନଙ୍କ ରାଜଧାନୀ ସୁବର୍ଣ୍ଣପୁରଠାରେ ତେଲ ଓ ମହାନଦୀର ସଙ୍ଗମସ୍ଥଳରେ ସ୍ଥାପିତ ହୋଇଥିଲା । ସେହି ମନ୍ଦିର ନିକଟରୁ ପ୍ରାପ୍ତ ଏକ ତାମ୍ର-ଶାସନରେ ଲେଖାଅଛି, 'କମଳବନ-ବଣିକ-ସ୍ଥାନ' ନିକଟରେ ଥିବା ଦେବତାଙ୍କ ଉଦ୍ଦେଶ୍ୟରେ ତାଙ୍କ ବଳି-ଚରୁ ନିମନ୍ତେ ଭୂମିଦାନ କରାଯାଇଥିଲା ।' ବୋଧହୁଏ ସ୍ତମ୍ଭେଶ୍ୱରୀଙ୍କ ପାଇଁ ସେଠାରେ କେତେକ ତାନ୍ତ୍ରିକ ଯୋଗୀ ରହୁଥିଲେ । ତାଙ୍କୁ ସେହି ଦାନ ଦିଆଯାଇଥିବା ସମ୍ଭବ । ପୁଣି ସେଠାରେ ଶିବଲିଙ୍ଗ ମଧ୍ୟ ସ୍ଥାପିତ ହୋଇଥିବା ସମ୍ଭବ । ଖ୍ରୀ: ୧୦ମ. ଶତାବ୍ଦୀ ପୂର୍ବରୁ ଶୁଲ୍‌କୀ ବଂଶୀୟ ରାଜାମାନେ ମଧ୍ୟ ସେମାନଙ୍କ ତାମ୍ର୍ଶାସନରେ "ସ୍ତମ୍ଭେଶ୍ୱରୀ ବରଲବ୍‌ଧ ପ୍ରସାଦ" ବୋଲି ଉଲ୍ଲେଖ କରିଛନ୍ତି । ସେମାନେ ମଧ୍ୟ ଭଞ୍ଜରାଜାମାନଙ୍କ ପରି ଭୌମକର ରାଜାମାନଙ୍କ ସାମନ୍ତ ରାଜାରୂପେ ଆଧୁନିକ ବାମଣ୍ଡା, ବଣାଇ, ଗାଙ୍ଗପୁର ପ୍ରଭୃତି ଅଞ୍ଚଳରେ ଶାସନ ବିସ୍ତାର କରିଥିଲେ । ଏଣୁ ସଂକ୍ଷେପରେ କହିବାକୁ ଗଲେ,

ଖ୍ରୀ: ୪ର୍ଥ ବା ୫ମ. ଶତାବ୍ଦୀରୁ ଆରମ୍ଭ କରି ଓଡ଼ିଶାର ସମଗ୍ର ପଶ୍ଚିମାଞ୍ଚଳରେ ସ୍ତମ୍ଭେଶ୍ୱରୀ ଏକ ପ୍ରସିଦ୍ଧ ଦେବୀ ରୂପେ ପୂଜିତା ହେଉଥିଲେ । ଆଉ ମଧ୍ୟ ସେଠାରେ ବୌଦ୍ଧଧର୍ମର ବିକାଶବେଳେ ତାନ୍ତ୍ରିକ ବିଧିରେ ତାଙ୍କର ପୂଜା ସମାହିତ ହେଉଥିଲା । କାଳକ୍ରମେ ସେହି ପଦ୍ଧତି ସଂଶୋଧିତ ଆକାରରେ ତାନ୍ତ୍ରିକ-ଶୈବ ଓ ତାନ୍ତ୍ରିକ-ବୈଷ୍ଣବ ଧର୍ମର ଅଭ୍ୟୁଦୟ ଘଟାଇଲା । ସେତିକବେଳେ 'ଭାଗବତ-ପୁରାଣ'କୁ ଭିତ୍ତିକରି ବିଷ୍ଣୁ (ମାଧବ)ଙ୍କ ସ୍ଥାନରେ କୃଷ୍ଣ (ବାସୁଦେବ), ଶିବ (ଭୈରବ)ଙ୍କ ସ୍ଥାନରେ ଶଙ୍କର୍ଷଣ (ବଳରାମ) ଏବଂ ସ୍ତମ୍ଭେଶ୍ୱରୀଙ୍କ ସ୍ଥାନରେ (ସୁଭଦ୍ରା)ଙ୍କ ମୂର୍ତ୍ତିତ୍ରୟ ଓଡ଼ିଶାର ଉପକୂଳ ଅଞ୍ଚଳରେ ପ୍ରତିଷ୍ଠିତ ହେଲେ । ସୁଭଦ୍ରାଙ୍କୁ ଏକାନଂଶା ନାମରେ ଅଭିହିତ କରି ଖ୍ରୀ: ୫ମ ଶତାବ୍ଦୀରେ ବରାହ-ମିହିର ତାଙ୍କୁ ଦ୍ୱିଭୁଜା ଏବଂ ଚତୁର୍ଭୁଜା ଦେବୀ ରୂପେ ବର୍ଣ୍ଣନା କରି ତାଙ୍କର ସ୍ଥିତି କୃଷ୍ଣ ଓ ବଳଦେବଙ୍କ ମଧ୍ୟରେ ବୋଲି ମୂର୍ତ୍ତିତତ୍ତ୍ୱ ଲେଖିବାବେଳେ ସିଦ୍ଧାନ୍ତ କରିଅଛନ୍ତି । ସେହି ପଦ୍ଧତିରେ ହିଁ ଶ୍ରୀମନ୍ଦିରରେ ତାଙ୍କ ଅବସ୍ଥାନ ନିରୂପିତ ହୋଇଅଛି ।

ଖ୍ରୀ. ୧୨ଶ ଶତାବ୍ଦୀରେ ମହାରାଜା ଚୋଡ଼ଗଙ୍ଗଦେବ ଯେତେବେଳେ ଶ୍ରୀପୁରୁଷୋତ୍ତମଧାମରେ ତିନି ମୂର୍ତ୍ତିଙ୍କୁ, ଅର୍ଥାତ୍ ପୁରୁଷୋତ୍ତମ (କୃଷ୍ଣ), ବଳଭଦ୍ର ଓ ସୁଭଦ୍ରା ନାମରେ ଅଭିହିତ ଶାସ୍ତ୍ରୋକ୍ତ ପ୍ରମାଣ ଅନୁସାରେ ହସ୍ତପଦ-ଯୁକ୍ତ ପ୍ରସ୍ତର ପ୍ରତିମା ରୂପେ ମନ୍ଦିରରେ (ଆଧୁନିକ ନୃସିଂହ-ମନ୍ଦିରରେ) ପ୍ରତିଷ୍ଠା କରିଥିଲେ, ସେତେବେଳେ ବୋଧହୁଏ ସୁଭଦ୍ରାଙ୍କ ସ୍ୱରୂପ 'ବୃହତ୍‌ସଂହିତା' ବର୍ଣ୍ଣିତ ଦ୍ୱିଭୁଜା ଏକାନଂଶାଙ୍କ ରୂପ ନେଇ ଗଠିତ ହୋଇଥିବ । କାରଣ ଖ୍ରୀ: ୧୩ଶ ଶତାବ୍ଦୀରେ ଅନଙ୍ଗଭୀମଦେବଙ୍କ କନ୍ୟା ଚନ୍ଦ୍ରିକାଦେବୀ ଭୁବନେଶ୍ୱର-ଠାରେ ଯେଉଁ ଅନନ୍ତ ବାସୁଦେବଙ୍କ ମନ୍ଦିର ଗଠନ କରି ସେଥିରେ ସେହି ତିନିମୂର୍ତ୍ତିଙ୍କୁ ସ୍ଥାପନ କରିଥିଲେ, ତାହା ମଧ୍ୟ ହସ୍ତପଦଯୁକ୍ତ ପ୍ରସ୍ତର ନିର୍ମିତ ମୂର୍ତ୍ତି ଏବଂ ଅଦ୍ୟାପି ସେଠାରେ ସେହି ପ୍ରସ୍ତର ନିର୍ମିତ ବିଗ୍ରହତ୍ରୟ ବିଦ୍ୟମାନ । ସୁତରାଂ ଆମ୍ଭେ ସିଦ୍ଧାନ୍ତ କରିବୁ ଯେ, ଖ୍ରୀ ୧୩ଶ ଶତାବ୍ଦୀ ଶେଷରେ ମହାରାଜା ନରସିଂହଦେବଙ୍କ ସମୟରେ ଯେତେବେଳେ କୌଣସି ବିଶିଷ୍ଟ କାରଣରୁ ସେହି ମୂର୍ତ୍ତିମାନଙ୍କ ରୂପ ବଦଳି ପାଷାଣ ପରିବର୍ତ୍ତେ ଦାରୁରେ ନିର୍ମିତ ହେଲେ, ସେତିକବେଳେ ଆଦିବାସୀ ଶବରମାନଙ୍କ ପୂଜିତ ଦେବଦେବୀଙ୍କ ମୂର୍ତ୍ତି ଅନୁ-ରୂପରେ ସୁଭଦ୍ରାଙ୍କୁ ଦେବୀ ସ୍ତମ୍ଭେଶ୍ୱରୀଙ୍କ ପ୍ରାଚୀନ ରୂପ ଦିଆଯାଇଥିବା ସମ୍ଭବ । ସେ ଦୁର୍ଗାରୂପିଣୀ ଦେବୀ ହୋଇଥିଲେ ମଧ୍ୟ ବିଷ୍ଣୁମନ୍ଦିରରେ ରହି ତାନ୍ତ୍ରିକ

ବିଧିବିଧାନରୁ ଅଲଗା ହୋଇରହିଛନ୍ତି । ଏହିତ 'ଭୁବନେଶ୍ୱରୀ' ମନ୍ତ୍ରରେ ତାଙ୍କର ପୂଜା ସମ୍ପନ୍ନ ହୁଏ; କିନ୍ତୁ ଅନ୍ୟସବୁ ତାନ୍ତ୍ରିକ କର୍ମମାନ ବିମଳାଙ୍କ ମନ୍ଦିରରେ ହିଁ ଅନୁଷ୍ଠିତ ହୋଇଥାଏ ।

ଯେଉଁ ତିନି ମୂର୍ତ୍ତି ପୂର୍ବେ ଶିବ (ଭୈରବ), ବିଷ୍ଣୁ (ନୀଳମାଧବ) ଓ ଦୁର୍ଗାରୂପିଣୀ ଭୁବନେଶ୍ୱରୀଙ୍କ ଭକ୍ତରାଜାମାନେ ଖ୍ରୀ: ୯ମ ଶତକରେ ମହାନଦୀ କୂଳରେ ଆରାଧନା କରୁଥିଲେ, ଠିକ ସେହି ଦେବଦେବୀ ତ୍ରୟଙ୍କୁ ମହାରାଜା ଅନଙ୍ଗଭୀମ ଆରାଧନା କରି ନିଜକୁ ପୁରୁଷୋତ୍ତମ ପୁତ୍ର, ରୁଦ୍ରପୁତ୍ର ଓ ଦୁର୍ଗାପୁତ୍ର ବୋଲି ଅଭିଲେଖମାନଙ୍କରେ ଉଲ୍ଲେଖ କରିଅଛନ୍ତି । ସୁତରାଂ ସୁଭଦ୍ରାଙ୍କୁ ସେ ଦୁର୍ଗା ରୂପେ ଗ୍ରହଣ କରିଛନ୍ତି । ମହାଭାରତରେ ବର୍ଣ୍ଣିତ ଅଛି ଯେ, କୃଷ୍ଣ ଓ ବଳରାମଙ୍କ ଭଗ୍ନୀ ସୁଭଦ୍ରା ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ପାଣି ଗ୍ରହଣ କରିଥିଲେ । ତାଙ୍କ ପୁତ୍ର ମହାବୀର ଅଭିମନ୍ୟୁ ଭାରତ ଯୁଦ୍ଧରେ ନିହତ ହେଲା ପରେ ତାଙ୍କ ପତ୍ନୀ ଉତ୍ତରାଙ୍କ ଗର୍ଭରୁ ପରୀକ୍ଷିତ ଜନ୍ମଲାଭ କଲେ । ତାଙ୍କ ପୁତ୍ର ଜନ୍ମେଜୟ ରାଜା ହୋଇଥିଲେ । ତାଙ୍କଠାରୁ ଭାରତରେ ସୋମବଂଶ ପ୍ରସାରିତ ହେଲା । ଗଙ୍ଗବଂଶୀୟ ରାଜାମାନେ ମଧ୍ୟ ସୋମବଂଶର ଏକ ଶାଖା । ତେଣୁ ସେମାନେ ସୁଭଦ୍ରାଙ୍କୁ ଜନନୀ ରୂପେ ଗ୍ରହଣ କରିଥିବା ସୁନିଶ୍ଚିତ ।

ଖ୍ରୀ: ୧୫ଶ ଶତାବ୍ଦୀ କିମ୍ବା ପରବର୍ତ୍ତୀକାଳରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ରୂପେ କଳ୍ପନା କରାଗଲା । ତେଣୁ ତାଙ୍କର ଭୈରବୀ ଶକ୍ତି ରୂପରେ ବିମଳାଙ୍କୁ ଉପସ୍ଥାପିତ କରାଯାଇଥିଲା । କେତେକ ତନ୍ତ୍ରରେ ଏହା ଉଲ୍ଲେଖ ଥିବା ଦେଖାଯାଏ :—

"ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବମ୍ ।"

ତେଣୁ ଦେବୀ ସ୍ୱରୂପିଣୀ ସୁଭଦ୍ରାଙ୍କ ପତ୍ନୀ ରୂପେ ପରବର୍ତ୍ତୀ କାଳରେ କେତୋଟି ଗ୍ରନ୍ଥରେ ଲେଖାଥିବାର ମଧ୍ୟ ଦେଖାଯାଏ :

"ସୁଭଦ୍ରା ପ୍ରାଣନାଥସ୍ୟ ଜଗନ୍ନାଥସ୍ୟ ମଙ୍ଗଳମ୍ ।"

ଭୈରବ ରୂପୀ ଶିବ କିମ୍ବା ରୁଦ୍ର, ଯେ କି ଶଙ୍କର୍ଷଣ ରୂପେ ପୂର୍ବେ ପରିଚିତ ହେଉଥିଲେ, ତାଙ୍କୁ ଶ୍ରୀଜଗନ୍ନାଥଙ୍କ ସଙ୍ଗେ ମିଶାଇ ଦେଇ ସେହି ଗ୍ରନ୍ଥମାନଙ୍କରେ ଏପରି ବର୍ଣ୍ଣନା କରାଯାଇଛି । ବାସ୍ତବରେ କହିବାକୁ ଗଲେ, ମହାଭାରତୋକ୍ତ କୃଷ୍ଣ ଓ ସୁଭଦ୍ରା ଭ୍ରାତା ଭଗ୍ନୀ ହୋଇଥିବାରୁ ଏବଂ

ସୁଭଦ୍ରା ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ଗୃହିଣୀ ରୂପେ ମହାଭାରତର ଏକ ଆଖ୍ୟାନରେ ବର୍ଣ୍ଣିତ ହୋଇଥିବାରୁ, ତାଙ୍କୁ ଶ୍ରୀଜଗନ୍ନାଥଙ୍କ ପତ୍ନୀ ଆଖ୍ୟା ଦେବା ଆଦୌ ସଙ୍ଗତ ନୁହେଁ । ବସ୍ତୁତଃ ତାନ୍ତ୍ରିକ ମତରେ ଶ୍ରୀଜଗନ୍ନାଥ ଓ ବିମଳା ଯଥାକ୍ରମେ ଭୈରବ ଭୈରବୀ ରୂପେ ପୂଜିତ ହେବାରୁ; ପୁଣି ଶକ୍ତି ସ୍ୱରୂପିଣୀ ଦେବୀ ସୁଭଦ୍ରାଙ୍କୁ ପରମବୈଷ୍ଣବୀ ରୂପେ ଭୁବନେଶ୍ୱରୀ ମନ୍ତ୍ରରେ ପୂଜା କରାଯାଉଥିବାରୁ, ଏପରି ଧାରଣା କେବଳ ପରବର୍ତ୍ତୀ ତାନ୍ତ୍ରିକ-ମାନେ ହିଁ ଗ୍ରହଣ କରିଅଛନ୍ତି ।

ଯେଉଁ ତ୍ରିମୂର୍ତ୍ତି ଶ୍ରୀମନ୍ଦିରରେ ପ୍ରତିଷ୍ଠିତ, ସେମାନେ 'ତ୍ରିଗୁଣ' ସ୍ୱରୂପୀ ଅର୍ଥାତ୍ ସତ୍ତ୍ୱ, ରଜ ଓ ତମ ଗୁଣ ପ୍ରତୀକ । ଯଥା:—ରଜଗୁଣସମ୍ପନ୍ନା ସୁଭଦ୍ରା ସୃଷ୍ଟିର ଜନ୍ମଦାତ୍ରୀ, ସତ୍ତ୍ୱଗୁଣଯୁକ୍ତ ଶ୍ରୀଜଗନ୍ନାଥ ସୃଷ୍ଟିର ସଂରକ୍ଷକ ଏବଂ ତମ ଗୁଣ ଯୁକ୍ତ ରୁଦ୍ର (ଶ୍ରୀ ବଳରାମ) ସୃଷ୍ଟିର ସଂହାରକର୍ତ୍ତା ରୂପେ ଅବତୀର୍ଣ୍ଣ ବୋଲି ବୁଝାଯାଇପାରେ । ଏହାହିଁ ତାତ୍ତ୍ୱିକ ବୈଷ୍ଣବଧର୍ମର ମୌଳିକ ମାତ୍ର ଓ ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରକଟିତ ଧର୍ମ, ଯାହା କି ଜାତି, ଧର୍ମ, ବର୍ଣ୍ଣ ଓ ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ଗ୍ରହଣ କରିଅଛନ୍ତି ।



# ଶ୍ରୀମନ୍ଦିରରେ ଶକ୍ତି ଉପାସନା

ଭାରତରେ ଶକ୍ତି ସ୍ୱରୂପିଣୀ ଦେବୀଙ୍କ ଆରାଧନା ବୈଦିକ ଯୁଗରୁ ଆରମ୍ଭ ହୋଇ ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମରେ ବିଶେଷ ରୂପେ ଶାଖା ସୃଷ୍ଟି କରିଥିଲା । ସୃଷ୍ଟିର ଉତ୍ପତ୍ତି ମୂଳରେ ମାତୃ ସ୍ୱରୂପିଣୀ ଦେବୀଙ୍କୁ ଆରାଧନା କରାଯାଏ । ସ୍ଥାବର ଓ ଜଙ୍ଗମ ସମସ୍ତ ପ୍ରାଣୀ ସେହି ମାତୃଗର୍ଭରୁ ସମ୍ଭୂତ ହୋଇ ଜୀବିତ କାଳ ମଧ୍ୟରେ କର୍ମ କରି କାଳ ଗର୍ଭରେ ଲୀନ ହୁଅନ୍ତି । ସୁତରାଂ ଉତ୍ପତ୍ତିର ଅଧିଷ୍ଠାତ୍ରୀ ଦେବୀ ମହାମାୟା ସଂସ୍ଥିତିର ମୁଖ୍ୟ ଦେବତା ବିଷ୍ଣୁ ଏବଂ ପ୍ରଳୟର କାରଣ ଶିବ ରୂପେ ତିନି ମୂର୍ତ୍ତିଙ୍କୁ ହିନ୍ଦୁ ସଂପ୍ରଦାୟ ନିର୍ଣ୍ଣୟ କରିଅଛନ୍ତି । ଶ୍ରୀଜଗନ୍ନାଥ କ୍ଷେତ୍ରରେ ଏଥିପାଇଁ ଦେବୀ ସୁଭଦ୍ରା, ମହାପ୍ରଭୁ ଜଗନ୍ନାଥ ଓ ବଳଭଦ୍ର-ଶଙ୍କର୍ଷଣ (ଶିବ) ରୂପରେ ସୃଷ୍ଟି, ସ୍ଥିତି ଓ ପ୍ରଳୟର ହେତୁ ରୂପେ ବିଦ୍ୟମାନ । କାଳକ୍ରମେ ବୈଷ୍ଣବମାନେ ଭାଗବତ ଓ ପୌରାଣିକ ଆଖ୍ୟାନ-ମାନଙ୍କୁ ଆଧାର କରି ସେହି ତିନି ବିଗ୍ରହଙ୍କୁ କୃଷ୍ଣ, ବଳଦେବ ଓ ତାଙ୍କ ଭଗ୍ନୀ ଦେବୀ ସୁଭଦ୍ରା ରୂପେ ବୈଷ୍ଣବ ପରିବାର ମଧ୍ୟରେ ଅନ୍ତର୍ଭୁକ୍ତ କରିବା ହେତୁ ସୁଭଦ୍ରାଙ୍କ ସ୍ଥାନରେ ଦେବୀ ବିମଳାଙ୍କୁ ଶ୍ରୀମନ୍ଦିରରେ ସ୍ଥାପନ କରି ତାନ୍ତ୍ରିକ ବିଧିରେ ତାଙ୍କର ଆରାଧନା ସମ୍ପନ୍ନ କରାଯାଉଛି । ଏଥିର ସବିଶେଷ ବିବରଣୀ ପ୍ରବନ୍ଧ ଶେଷରେ ଦିଆଯିବ । ତାନ୍ତ୍ରିକଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି 'ଭୈରବ' ଏବଂ ବିମଳା ତାଙ୍କର ଶକ୍ତି 'ଭୈରବୀ' । ଦଶହରା ଉତ୍ସବରେ ଆଶ୍ୱିନ ମାସର ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀ ତିଥିରେ ବିମଳାଙ୍କ ଆରାଧନା ସକାଶେ ଛାଗବଳି ଦିଆଯାଉଛି, ଯାହାକି ବିଷ୍ଣୁ-ମନ୍ଦିରରେ ଏକ ନିଷିଦ୍ଧ ବ୍ୟବସ୍ଥା ।

ଶ୍ରୀମନ୍ଦିରରେ ବିମଳାଙ୍କ ଆରାଧନା ଏକ ବିଚିତ୍ର ସମାବେଶ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସମ୍ଭବତଃ "ମା-ପ୍ରସାଦ" ଶବ୍ଦଟି କାଳକ୍ରମେ 'ମହାପ୍ରସାଦ'ରେ ପରିଣତ ହୋଇଥିବ । କାରଣ ଶ୍ରୀଜଗନ୍ନାଥଙ୍କ ଭୋଗ-ପ୍ରସାଦ ବିମଳାଙ୍କୁ ସମର୍ପଣ କଲାପରେ ହିଁ ତାହା "ମହାପ୍ରସାଦ"ରେ ପରିଣତ ହୁଏ । ଏହି ବିଧିରୁ ତାନ୍ତ୍ରିକ "କୌଳାଚାର" ତଥା ଶୌଚାଶୌଚ ରହିତ ତାନ୍ତ୍ରିକ ପଦ୍ଧତି ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିବା ସମ୍ଭବ ।

କେତେକ ତାନ୍ତ୍ରିକ ଗ୍ରନ୍ଥରେ ତଥା ଶକ୍ତି-ତୀର୍ଥରେ ଓ ପୁରୀର ମୁଖ୍ୟ ଦେବୀ ବିମଳାଙ୍କୁ ଶ୍ରୀଜଗନ୍ନାଥଙ୍କ ଶକ୍ତି ରୂପେ ବର୍ଣ୍ଣିତ ହୋଇଅଛି, ଯଥା:—

"ଉଚ୍ଛିଷ୍ଟଂ ବିମଳା ଶକ୍ତି
ଜଗନ୍ନାଥସ୍ତୁ ଭୈରବଃ ।"

ଏହି ବାକ୍ୟକୁ ଆଧାର କରି "ରୁଦ୍ରଯାମଳତନ୍ତ୍ର"ରୁ ଉଦ୍ଧୃତ 'ବ୍ରହ୍ମଯାମଳ' ନାମକ ତନ୍ତ୍ରରେ ସୋମବଂଶୀୟ ଶାସନତ୍ୱ କାଳରେ ଅର୍ଥାତ୍ (୧୦୫୨) ଖ୍ରୀଷ୍ଟାବ୍ଦରେ ଲେଖାଥିବା ପ୍ରସଙ୍ଗ ସ୍ୱର୍ଗୀୟ କେଦାର ନାଥ ମହାପାତ୍ର, ହରପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ଲେଖା ହୋଇଥିବା ଗୋଟିଏ ରିପୋର୍ଟ (Report)ରୁ ଉଦ୍ଧାର କରି ତାଙ୍କର ଏକ ଇଂରାଜୀ ପ୍ରବନ୍ଧରେ ୧୯୫୪ ମସିହାରେ ପ୍ରକାଶ କରିଥିଲେ । 'ରୁଦ୍ରଯାମଳ' ଓ ବ୍ରହ୍ମଯାମଳ' ଲେଖା ହୋଇଥିବା କାଳ ନିର୍ଣ୍ଣୟ କରିବାକୁ ଯାଇ ସ୍ୱର୍ଗୀୟ କେଦାରନାଥ ମହାପାତ୍ର କପରି ଭୁଲ୍ କରିଛନ୍ତି ତାହା ଦର୍ଶାଇ ଜର୍ମାନୀର ସୁବିଖ୍ୟାତ ଅଧ୍ୟାପକ ଡଃ ଷ୍ଟିଟନକ୍ରୋନ (Dr. Stietin Crone) ଲେଖିଛନ୍ତି :—

> One of the texts in which this passage (ଉଚ୍ଛିଷ୍ଟଂ ବିମଳା ଶକ୍ତି ଜଗନ୍ନାଥସ୍ତୁ ଭୈରବଃ") 'Occurs, the Rudra Yamala-tantra' has been mentioned in a manuscript of the 'Brahma Yamala-tantra' dated 1052 A. D. i. e. at a time corresponding in Orissa to the Somavansi period. "About the date of 'Brahmayamala, H. P. Sastri in his Report of 1906-1911, P. 3, quoted by K. N. Mohapatra. 1954. The dating of the manuscipt is not reliable indication for the date of the quoted verse verse which may have been interpolated at a later period. A Critical analysis of the 'Rudrayamala' and related texts is still a desidaratum."

---

× H. P. Sastri, Report on the Search of Sanskrit manuscripts, 1906-1911. Page-3

× K N. Mohapatra, J.O H.R., 1954, June, page-11

× The Cult of Jagannath and the Regional Tradition of Orissa, p. 121

× Invocatory verses from Inscriptions, Vol-II, Introduction, P. XXIX ଦ୍ରଷ୍ଟବ୍ୟ ।

ବର୍ତ୍ତମାନ ଦେଖାଯାଉ, ଭୈରବ ଓ ଭୈରବୀଙ୍କ ସମ୍ପର୍କରେ ପ୍ରାଚୀନ ଗ୍ରନ୍ଥମାନଙ୍କରୁ କଣ ଜଣାଯାଉଛି । ଏଥିର ସୁବିସ୍ତୃତ ବିବରଣୀ 'ବ୍ରହ୍ମଯାମଳ'ରେ ଉଲ୍ଲେଖ ଅଛି । ସେହି ଗ୍ରନ୍ଥରୁ ଜଣାଯାଇଛି ଯେ, ତାନ୍ତ୍ରିକ-ସାଧନା ସର୍ବପ୍ରଥମେ ଈଶ୍ୱର (ଶିବ) ଶ୍ରୀକଣ୍ଠଙ୍କୁ ଶିକ୍ଷା ଦେଇଥିଲେ । ପ୍ରୟାଗ ନିକଟବର୍ତ୍ତୀ କାଣବୀର ନାମକ ସ୍ଥାନରେ ଶ୍ରୀକଣ୍ଠ ଜନ୍ମଲାଭ କରିଥିଲେ । ସେ ସର୍ବପ୍ରଥମ ଗୁରୁ ହୋଇ ତାନ୍ତ୍ରିକ ବିଧି ସମ୍ପର୍କରେ ୧୨୫୦୦ ଶ୍ଳୋକ ଅନୁଷ୍ଟୁପ୍ ଛନ୍ଦରେ ରଚନା କରିଥିଲେ । ତାଙ୍କର ପ୍ରଥମ ଶିଷ୍ୟମାନଙ୍କ ଉପାଧି ଭୈରବ ବିତରଣ କରିଥିଲେ । ତାଙ୍କର ପ୍ରଥମ ଶିଷ୍ୟମାନଙ୍କ ଉପାଧି ଭୈରବ ଯଥା : କ୍ରୋଧ ଭୈରବ, କପାଳ ଭୈରବ ଏବଂ ପଦ୍ମ ଭୈରବ । ସେହି ତିନି ଜଣ ଶିଷ୍ୟଙ୍କୁ ସେ ତାନ୍ତ୍ରିକ ସାଧନା ଶିକ୍ଷା ଦେଇଥିଲେ । ପଦ୍ମ ଭୈରବଙ୍କ ଠାରୁ ସେହି ସାଧନା ପଦ୍ଧତି ଓଡ୍ରଦେଶର ଦେବଦତ୍ତ ନାମକ ଜଣେ ବ୍ରାହ୍ମଣ ଶିକ୍ଷା କରିଥିଲେ । ଦେବଦତ୍ତଙ୍କ ଅଧୀନରେ ଚଉଦ ଜଣ ଶୈବ ଶିଷ୍ୟ, ଯଥା : ରକ୍ତ-ଭୈରବ, ଜ୍ୱାଳା-ଭୈରବ, ହେଲ-ଭୈରବ, ବାମ-ଭୈରବ ସମେତ ମଧ୍ୟଦେଶରୁ ସମାଗତ ବିଜୟ-ଭୈରବ ଓ ସୌରାଷ୍ଟ୍ରରୁ ଆସିଥିବା ସିଂହ-ଭୈରବ ସେହି ସାଧନା ଶିକ୍ଷା କରିଥିଲେ ।

ତାନ୍ତ୍ରିକ ପଦ୍ଧତି ଅନୁସାରେ ତିନୋଟି ନିୟମ ବିଦ୍ୟମାନ, ଯଥା : ଦକ୍ଷିଣ, ବାମ ଓ ମଧ୍ୟମ । ଏହା ମଧ୍ୟ ସତ୍ତ୍ୱ, ରଜ ଓ ତମ ଗୁଣ ମାନଙ୍କରେ ଜଡ଼ିତ ତ୍ରିଗୁଣାତ୍ମକ । ଦକ୍ଷିଣ-ପଦ୍ଧତି ଦକାଶେ ସ୍ୱଣୋଟି ପୀଠରେ ସାଧନ କରାଯାଉଥିଲା । ସେହି ପୀଠଗୁଡ଼ିକ ହେଲା, ବିଦ୍ୟା, ମନ୍ତ୍ର, ମୁଦ୍ରା ଓ ମଣ୍ଡଳ । ଅଷ୍ଟ ଭୈରବ, ଯଥା : ରୁଦ୍ର, ସ୍କନ୍ଦ, ବ୍ରହ୍ମା, ଯମ, ବାୟୁ, ବିଷ୍ଣୁ, କୁବେର ଏବଂ ଇନ୍ଦ୍ର ସେହି ଗୁରୁପୀଠ ମଧ୍ୟରୁ 'ବିଦ୍ୟାପୀଠ'ରେ ସଂପୃକ୍ତ ଥିଲେ । 'ବ୍ରହ୍ମଯାମଳ'ର ପରିଶିଷ୍ଟ 'ଜୟଦ୍ରଥ-ଯାମଳ' ଓ 'ପିଙ୍ଗଳମତ' ଅନୁସାରେ, ଦୁଇଟି ମାତ୍ର ତାନ୍ତ୍ରିକ ପୀଠ ଭାରତରେ ବିଦ୍ୟମାନ । ପ୍ରଥମ ପୀଠଟି କାମରୂପ (ଆସାମ)ରେ ଅବସ୍ଥିତ ଏବଂ ଦ୍ୱିତୀୟଟି 'ଉଡ୍ଡୀୟାନ' (ଓଡ଼ିଶା)ରେ ପ୍ରତିଷ୍ଠିତ । 'ପିଙ୍ଗଳ ମତ' ଅନୁସାରେ 'କାମରୂପ-ତନ୍ତ୍ର' ଏବଂ 'ଉଡ୍ଡୀୟାନ ତନ୍ତ୍ର' ଏପରି ଦୁଇଟି ମାତ୍ର ପ୍ରସିଦ୍ଧ ତାନ୍ତ୍ରିକ ପୀଠ ପ୍ରତିଷ୍ଠା ଲାଭ କରିଥିଲା । 'ଜୟଦ୍ରଥ-ଯାମଳ' ଅନୁସାରେ ଯେଉଁ ଦେବୀମାନେ ସେହି ପୀଠ ଦୁଇଟିରେ ଆରାଧିତା ହୁଅନ୍ତି, ସେମାନେ ହେଲେ କାଳିକା, ପର୍ଣ୍ଣଶବରୀ, ବଜ୍ରାବତୀ, ରକ୍ଷାକାଳୀ, ଇନ୍ଦୀବର-କାଳିକା, ଶଙ୍କର୍ଷଣୀ

କାଳ ଶଙ୍କର୍ଷଣୀ, ଚର୍ଚ୍ଚିକା, ଡମ୍ବରକାଳୀ, ଗନ୍ଧନେଶ୍ୱରୀ, ଏକତାରା, ଧନୋଦ କାଳିକା, ରମଣୀ କାଳିକା, ଈଶାନ କାଳିକା, ମନ୍ତ୍ର ମାତୃ, ଜୀବକାଳୀ, ସୁପ୍ରାର୍ଣ୍ଣ-କାଳୀ ଏବଂ ସିଦ୍ଧିଲକ୍ଷ୍ମୀ ।

'ଯାମଳ' ଗ୍ରନ୍ଥଗୁଡ଼ିକ ଅନୁଯାରେ ତନ୍ତ୍ରିକ ସାଧନା ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ପ୍ରଥମତଃ ସାଧକ ଯେଉଁ ସାଧନାର ଫଳ ସ୍ୱରୂପ ମୋକ୍ଷ ଲାଭ କରନ୍ତି, ଦ୍ୱିତୀୟ ପଦ୍ଧତି ହେଉଛି ସାଧନା ବଳରେ ସାଧକ ନିଜେ ଅମାନୁଷିକ ଶକ୍ତି ଲଭିଥାନ୍ତି ।

ଖ୍ରୀଷ୍ଟୀୟ ପ୍ରାୟ ୭ମ ଶତାବ୍ଦୀରେ 'ତନ୍ତ୍ରଯାନ' ଚୀନ ଓ ମହାଚୀନ (ତିବ୍ବତ)କୁ ଓଡ଼ିଶାରୁ ପ୍ରାଜ୍ଞ ନାମକ ଜଣେ ତାନ୍ତ୍ରିକ ପଣ୍ଡିତ ଏବଂ କଳିଙ୍ଗରେ ବାସ କରୁଥିବା ବୌଦ୍ଧ ପଣ୍ଡିତ ଧର୍ମକୀର୍ତ୍ତି ନେଇଥିବା ଜଣାଯାଏ । ତତ୍କାଳୀନ ଚେ-ଯୁଙ୍ଗ ନାମକ ଚୀନ ସମ୍ରାଟଙ୍କ ଅନୁରୋଧ କ୍ରମେ ଉଡ୍ଡୀୟାନ (ଓଡ଼ିଶା)ର ବୌଦ୍ଧଧର୍ମାବଲମ୍ବୀ ଭୌମ-କର ବଂଶୀୟ ମହାରାଜା ଶୁଭକର ସିଂହ ପ୍ରାଜ୍ଞ ନାମକ ପଣ୍ଡିତଙ୍କୁ ଚୀନକୁ ପଠାଇଥିଲେ । ଏଥିରୁ ପ୍ରମାଣିତ ହେଉଛି ଯେ, ଓଡ଼ିଶାରେ ଯେଉଁ 'ଉଡ୍ଡୀୟାନ-ତନ୍ତ୍ର' ପ୍ରଚଳିତ ଥିଲା, ତାହା ହିଁ 'ତନ୍ତ୍ର-ଯାନ'ର ମୌଳିକ ସୂତ୍ର ଉଦ୍ଭାବନ କରିଥିଲା । ସେହି ତାନ୍ତ୍ରିକମାନେ କାଳୀ, ଚର୍ଚ୍ଚିକା, ପର୍ଣ୍ଣଶବରୀ ନାମରେ ଦେବୀଙ୍କୁ ଆରାଧନା କରୁଥିଲେ । ପୁରୀରେ ବର୍ତ୍ତମାନ ଯେଉଁ ଦେବୀମାନେ ପ୍ରତିଷ୍ଠା ଲାଭ କରିଛନ୍ତି, ସେମାନଙ୍କୁ ବିଭିନ୍ନ ନାମରେ ଅଭିହିତ କରାଯାଉଛି । ଯଥା:— କାଳିକା, ଦକ୍ଷିଣକାଳୀ, ଶ୍ୟାମାକାଳୀ, ଶ୍ମଶାନକାଳୀ, ବାଟକାଳୀ ପ୍ରଭୃତି । ସେମାନେ ମୁଖ୍ୟତଃ ଉଡ୍ଡୀୟାନ (ଓଡ଼ିଶା) ତନ୍ତ୍ରର ଆରାଧିତା ଦେବୀ । ବିମଳା ମଧ୍ୟ ସେହି ତାନ୍ତ୍ରିକ ପରିବାରର ଶ୍ରେଷ୍ଠ ଦେବୀ ରୂପେ ଶ୍ରୀମନ୍ଦିରରେ ପୂଜିତା ହେଉଛନ୍ତି ।

ଶାକ୍ତମାନଙ୍କ ମତାନୁସାରେ ବିମଳା (ଭୈରବୀ) ହିଁ ଶ୍ରୀଜଗନ୍ନାଥ (ଭୈରବ)ଙ୍କର ଶକ୍ତି । କିନ୍ତୁ ବୈଷ୍ଣବଙ୍କ ମତରେ ଦେବୀ ସୁଭଦ୍ରା ହିଁ ଆଦ୍ୟାଶକ୍ତି । ତେଣୁ ସେମାନଙ୍କ ଗ୍ରନ୍ଥରେ ଲେଖା ହୋଇଛି :—

"ସୁଭଦ୍ରା ପ୍ରାଣନାଥସ୍ୟ ଜଗନ୍ନାଥସ୍ୟ ମଙ୍ଗଳମ୍ ।"

ଏହି ଲେଖା ପରବର୍ତ୍ତୀକାଳରେ ହୋଇଥିଲେ ସୁଦ୍ଧା ଦେବୀ ସୁଭଦ୍ରାଙ୍କ ଅବସ୍ଥିତିକୁ ଶ୍ରୀମନ୍ଦିରରେ ବୈଷ୍ଣବୀୟ ମାତୃକା ରୂପେ କଳ୍ପିତ ହୋଇଅଛି,

ଏଥିରେ ଅଦୌ ସନ୍ଦେହ ନାହିଁ । ତାଙ୍କର ପୂଜାମନ୍ତ୍ର ମଧ୍ୟ "ଭୁବନେଶ୍ୱରୀ ମନ୍ତ୍ର" ଏକାକ୍ଷର (ହ୍ରୀଂ)ରେ ପରିଣତ ହୋଇଛି । ଠିକ୍ ସେହି ଏକାକ୍ଷର-ମନ୍ତ୍ରରେ ଦେବୀ ବିମଳାଙ୍କ ପୂଜା ମଧ୍ୟ ସମ୍ପନ୍ନ ହୁଏ । ସୁତରାଂ ସୃଷ୍ଟି, ସ୍ଥିତି ଓ ପ୍ରଳୟ ପାଇଁ ଯେଉଁ ତିନୋଟି ଶକ୍ତି ବିଦ୍ୟମାନ, ସେଥି ମଧ୍ୟରୁ 'ସୃଷ୍ଟି'ର କାରଣ ସ୍ୱରୂପା ଦେବୀ ସୁଭଦ୍ରାଙ୍କୁ ପ୍ରତିଷ୍ଠା କରାଯାଇଛି ।

ଆଗରୁ କୁହାଯାଇଛି ଯେ, ତାନ୍ତ୍ରିକ ସାଧନା ଦୁଇ ଭାଗରେ ବିଭକ୍ତ ହୋଇଥିଲା । ଯଥା : (୧) ନିର୍ବାଣ ଲାଭ ସକାଶେ ଏବଂ (୨) ଅମାନୁଷିକ ଶକ୍ତି ଲାଭ ସକାଶେ, ଦ୍ୱିତୀୟୋକ୍ତ ସାଧନା ଓଡ଼ିଶାରେ ଖ୍ରୀଷ୍ଟୀୟ ପ୍ରାୟ ୮ମ ବା ୯ମ ଶତାବ୍ଦୀରେ ପ୍ରାଧାନ୍ୟ ଲାଭ କଲା । ଅବିଭକ୍ତ ପୁରୀ ଜିଲ୍ଲାର ବାଣପୁରଠାରୁ ଅଳ୍ପ କେତେ ବର୍ଷ ଆଗେ ଶାଳିଆ ନଦୀ ପାର୍ଶ୍ୱସ୍ଥ ଭୂଗର୍ଭରୁ ବହୁତଗୁଡ଼ିଏ ଧାତୁ ନିର୍ମିତ ବୌଦ୍ଧ ପ୍ରତିମାମାନ ଆବିଷ୍କୃତ ହୋଇଥିଲା । ତାହା ବର୍ତ୍ତମାନ ଓଡ଼ିଶା ଷ୍ଟେଟ୍ ମ୍ୟୁଜିୟମରେ ପ୍ରଦର୍ଶିତ ହୋଇଛି । ସେଥିରେ ମହାଯାନୀ-ବୌଦ୍ଧ ସମ୍ପ୍ରଦାୟ ଦ୍ୱାରା ଆରାଧିତା ଏକ ସୁନ୍ଦର ତାରାବିଗ୍ରହର ପୃଷ୍ଠଦେଶରେ ଦୁଇ ପଂକ୍ତି ବିଶିଷ୍ଟ ଅଭିଲେଖ ଖୋଦିତ ଅଛି । ଯଥା :—

"ଓଁ ଯେ ଧର୍ମ ଗୌରୀ ପୁ-
ତତ୍ରା ସଂଘ ॥" (*)

ଅର୍ଥାତ 'ଗୌରୀ ପୁତ୍ର' ନାମକ କୌଣସି ଏକ ସଂଘ ସେହି ଦେବୀଙ୍କର ଉପାସକ ଥିଲେ । ବାଣପୁର ଅଞ୍ଚଳରେ ଓ ତତ୍ପାର୍ଶ୍ୱବର୍ତ୍ତୀ ସ୍ଥାନରେ ସେହି ଦେବୀଙ୍କୁ ସଂଘବଦ୍ଧ ଭାବେ ଓଡ଼ିଶାର ତାନ୍ତ୍ରିକମାନେ ପୂଜା କରୁଥିଲେ । କିନ୍ତୁ କାଳକ୍ରମେ 'ପରମୋପାସକ' ଭୌମ-କର ବଂଶୀୟ ରାଜାମାନେ 'ପରମ-ମାହେଶ୍ୱର' ଉପାଧି ଗ୍ରହଣ କରି ତାନ୍ତ୍ରିକ ଶୈବାଚାର୍ଯ୍ୟମାନଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସେତେବେଳେ ସେହି ରାଜବଂଶର କେତେକ ଦଣ୍ଡୀ ମହାଦେବୀ, ଧର୍ମା ମହାଦେବୀ' ପ୍ରମୁଖ ରାଣୀମାନେ ମଧ୍ୟ 'ପରମ ବୈଷ୍ଣବୀ' ଉପାଧି ବ୍ୟବହାର କରି କାତ୍ୟାୟିନୀ (ଦୁର୍ଗା) ଙ୍କ ପର କରିଥିବା ତାମ୍ର ଶାସନରେ

---

* ଏ ଲେଖକ ତାହା ପାଠ କରି "Invocatory Verses form Inscriptions" Vol. II Introduction P. XXXV ରେ ଉଲ୍ଲେଖ କରିଛି ।

ବର୍ଣ୍ଣିତ ହୋଇଛି । ତାନ୍ତ୍ରିକ ବୈଷ୍ଣବମାନଙ୍କ ଶିଷ୍ୟତ୍ୱ ସେମାନେ ଗ୍ରହଣ କରିଥିଲେ । ସୁତରାଂ ତାନ୍ତ୍ରିକ ପଦ୍ଧତିରେ ବୌଦ୍ଧ ଧର୍ମ ଓ ବୈଷ୍ଣବ ଧର୍ମ ଦୁଇ ଭାଗରେ ବିଭକ୍ତ ହେଲା । ଶାକ୍ତଧର୍ମୀମାନଙ୍କର ମୁଖ୍ୟ ଦେବୀରୂପେ ଦୁର୍ଗାଙ୍କର ଉପାସନା ପଦ୍ଧତି କେବଳ ଉତ୍କଳରେ ନୁହେଁ, ବରଂ ଭାରତର ପ୍ରତ୍ୟେକ ଅଞ୍ଚଳରେ ବିଶିଷ୍ଟ ସ୍ଥାନ ଅଧିକାର କଲା । ରାଜାମାନେ ଦୁର୍ଗାଙ୍କୁ ମହାଶକ୍ତି ସ୍ୱରୂପିଣୀ ଦେବୀରୂପେ ଆରାଧନା କରିବାକୁ ଲାଗିଲେ । ଓଡ଼ିଶାର ପ୍ରତ୍ୟେକ ରାଜପ୍ରାସାଦରେ କନକ ଦୁର୍ଗା ପୂଜିତ ହୁଅନ୍ତି । ଆଶ୍ୱିନମାସ ଶୁକ୍ଳ ସପ୍ତମୀ ଠାରୁ ଦଶମୀ ପର୍ଯ୍ୟନ୍ତ ଦେବୀଙ୍କର ପୂଜା ବିଧି ପାଳିତ ହେଉଛି ଶ୍ରୀମନ୍ଦିରରେ । ଏହି ଦଶହରା ଦୁର୍ଗୋତ୍ସବରେ ଶ୍ରୀମନ୍ଦିରସ୍ଥ ବିମଳାଙ୍କ ମନ୍ଦିରରେ ଆଶ୍ୱିନ ଶୁକ୍ଳ ସପ୍ତମୀ ଠାରୁ ନବମୀ ପର୍ଯ୍ୟନ୍ତ ତିନି ଦିନ ଯେଉଁ ବିଧିରେ ଦେବୀଙ୍କର ପୂଜା ପାଳିତ ହେଉଛି, ସେଥିର ବିସ୍ତୃତ ବିବରଣୀ ସ୍ୱର୍ଗୀୟ ଲକ୍ଷ୍ମଣ ପଣ୍ଡାଙ୍କ ପୁସ୍ତକ (Record of Rights) ରେ ନିମ୍ନ ପ୍ରକାରେ ବର୍ଣ୍ଣିତ ହୋଇଛି :—"ଆଶ୍ୱିନ ଶୁକ୍ଳ ସପ୍ତମୀ ପର୍ଯ୍ୟନ୍ତ ବିମଳାଙ୍କ ସଙ୍କୁଡ଼ି ଭୋଗ ହୁଏ ନାହିଁ । ସପ୍ତମୀ, ଅଷ୍ଟମୀ ଓ ନବମୀ ସଙ୍କୁଡ଼ି ଭୋଗ ହୋଇ ନିଶାର୍ଦ୍ଧ ପୂଜା ହୁଏ । ଏ ତିନି ଦିନ ପ୍ରତ୍ୟେକ ରାତ୍ର ଗୋଟା ଛେଳି ପଡ଼େ । ଭିତରେ ବଡ଼ ସିଂହାର ସରି ପହୁଡ ହେବା ପରେ ଛେଳି ଓ ଭୋଗ ପଶ୍ଚିମ ଦ୍ୱାର ବାଟେ ଯା ଆସ ହୁଏ । ମାଛ ରନ୍ଧା ହୁଏ । ବିମଳାଙ୍କ କୁଅଁ ପାଖେ ରୋଷଘର ତିଆରି ହୁଏ । ଛେଳି ବିମଳାଙ୍କ କୁଅଁ ପାଖରେ ପଡେ । ପୂଜକ ଠାକୁରାଣୀଙ୍କ ନିକଟକୁ ରକ୍ତ ସରାରେ ନିଏ । ମାନସିକ କରିବା ଲୋକଙ୍କ ଛେଳି ପେଜନଳା ପାଖେ ବାହାରେ କାକୁଡ଼ିଖାଇଙ୍କ ନିକଟରେ ପଡ଼େ । ପ୍ରତ୍ୟହ ସଙ୍କୁଡ଼ି ଧୂପ ପାଣି ପଡ଼ିବା ପରେ ମନ୍ଦିରଠାରେ ପଶ୍ଚିମ ଦ୍ୱାର ପର୍ଯ୍ୟନ୍ତ ଚୂନ ପାଣି ପଡ଼ି ଧୂଆ ହୁଏ । ଯେଉଁଦିନ ନିଶାର୍ଦ୍ଧକୁ ସପ୍ତମୀ ପାଇବ, ସେଦିନ ସଙ୍କୁଡ଼ି ଭୋଗ ଆରମ୍ଭ ହୁଏ । ଲୋକଙ୍କ ଇଚ୍ଛାନୁଯାୟୀ ସନ୍ଧ୍ୟା ଧୂପରେ ବିମଳାଙ୍କର ବିଭିନ୍ନ ଦେବୀ ବେଶ ହୁଏ ।

ବିମଳାଙ୍କ ୧୬ଦିନ ପୂଜା ଭିତରେ କୌଣସି ସ୍ତ୍ରୀ ଲୋକ ବିମଳାଙ୍କ ମନ୍ଦିର ଭିତରକୁ ଯାଇ ପାରିବେ ନାହିଁ । ଗୁରୁବାରେ ଏକାନ୍ତ ମାଛ ହେବ ନାହିଁ । ପଙ୍କ ପୂଜା ୪ଦିନ (ଘୃତପୂଜାରେ) ଭଣ୍ଡାର ଘରେ ଅସ୍ତ୍ରମାନଙ୍କ ପୂଜା ବସେ । ପଙ୍କ ଯାତ୍ରା ଯୋଗାଣିଆ ଦେଇଥିବା ଭୋଗ ଭଣ୍ଡାର ମେକାପ ଭୋଗ କରେ । ବିଭିନ୍ନ ରାଜଧାନୀ ମାନଙ୍କରେ ମଧ୍ୟ ରାଜାମାନଙ୍କ ନିର୍ଦ୍ଦିଷ୍ଟ ଇଷ୍ଟଦେବୀଙ୍କ ସମ୍ମୁଖରେ "ସପ୍ତଶତି ଚଣ୍ଡୀ" ପାଠ କରାଯାଏ । ଏଥିର ଫଳ ସ୍ୱରୂପ ରାଜ୍ୟ ତଥା ରାଜାଙ୍କର

ଶକ୍ତି ବର୍ଣ୍ଣିତ ହୁଏ ବୋଲି କେବଳ ହିନ୍ଦୁମାନେ ବୁଝନ୍ତି, ମୁସଲମାନ ଶାସକମାନେ ମଧ୍ୟ ବିଶ୍ୱାସ କରୁଥିଲେ । ୧୪୮୮ ଖ୍ରୀଷ୍ଟାବ୍ଦରେ ଜଣେ ମୁସଲମାନ ଶାସକ, ପାଦଶାହା ମହମ୍ମଦଙ୍କର ଗୋଟିଏ ଶିଳାଲେଖରେ 'କାଶ୍ମୀରବାସିନୀ' ଦେବୀଙ୍କୁ ସ୍ତୁତି କରାଯାଇଛି । ଯଥା;—

"କାଶ୍ମୀର ବାସିନୀ ଦେବୀଂ
ନତ୍ତ୍ୱା ଶାହ ମୁଜାଫର ସ୍ୟାଦୌ,
ବଶ ଜଗତ ବଶୁଙ୍କଂ ବକ୍ଷେ ଚ
ପାତ ସାସ୍ନାନାମ ॥" (*)

ହିନ୍ଦୁ ସମ୍ପ୍ରଦାୟ ପ୍ରାଚୀନ କାଳରୁ ବିଶ୍ୱାସ କରନ୍ତି ଯେ, ଦେବୀଙ୍କୁ ଆରାଧନା କରି ବ୍ରହ୍ମା ସୃଷ୍ଟି ସର୍ଜନା କରିଥିଲେ । ସୃଷ୍ଟି ହେଲା ପରେ ବିଷ୍ଣୁ ତାହା ପାଳନ କରିଥିଲେ ଓ ଶିବ ଦେଥିର ସଂହାର କରିଥିଲେ । ଶାକ୍ତମାନଙ୍କର ଶାସ୍ତ୍ରରେ ବର୍ଣ୍ଣିତ ଅଛି ଯଥା :—

"ଯାମାରାଧ୍ୟ ବିରଞ୍ଚିରସ୍ୟ ଜଗତଃ ସ୍ରଷ୍ଟାଃ ହରିଃ ପାଳକଃ
ସଂହର୍ତ୍ତା ଗିରିଶଃ ସ୍ୱୟଂ ସମଭବତ୍ ଧ୍ୟେୟା ଚ ଯା ଯୋଗିଭିଃ ।
ଯାମାଦ୍ୟାଂ ପ୍ରକୃତିଂ ବଦନ୍ତି ମୁନୟସ୍ତ ତ୍ତ୍ୱାର୍ଥବିଜ୍ଞାଃ ପରଂ
ତାଂ ଦେବୀ ପ୍ରଣମାମି ବିଶ୍ୱଜନନୀଂ ସ୍ୱର୍ଗାପବର୍ଗ ପ୍ରଦାମ୍ ॥" (**)

ଅର୍ଥାତ୍ ଯେଉଁ ଦେବୀଙ୍କୁ ଆରାଧନା କରି ବ୍ରହ୍ମା ଜଗତକୁ ସୃଷ୍ଟି କଲେ, ହରି ତାହା ପାଳନ କରନ୍ତି ଏବଂ ଶିବ ସଂହାର କରନ୍ତି, ସେହି ଦେବୀ ଅଯୋନି ସମ୍ଭୂତ । ଏହି ପରିପ୍ରେକ୍ଷୀରେ ତାନ୍ତ୍ରିକ ଯୋଗୀମାନେ ତାଙ୍କୁ ଧ୍ୟାନ କରିଥାନ୍ତି । ମୁନିମାନେ ଯାହାଙ୍କୁ 'ଆଦ୍ୟା ପ୍ରକୃତି' ବୋଲି କହନ୍ତି; ତତ୍ତ୍ୱାର୍ଥବିଦ୍ ମାନେ 'ପରା' ବୋଲି କହନ୍ତି, ସେହି ବିଶ୍ୱ ଜନନୀ-ସ୍ୱର୍ଗାପବର୍ଗପ୍ରଦା ଦେବୀଙ୍କୁ ଆମେ ପ୍ରଣାମ କରୁଛୁ ।

* E. P. Ind. Vol. XXIV. P. 222. ଦ୍ରଷ୍ଟବ୍ୟ ।

** R. L. Mitra's 'Notices of Sanskrit M. S. S.' 1870 No. 2. P. 203.

ପୂର୍ବରୁ କୁହାଯାଇଛି ଯେ, ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ପ୍ରତିଷ୍ଠିତା ଦେବୀ ସୁଭଦ୍ରା ବାସ୍ତବରେ ବିଶ୍ୱ ଜନନୀ-ଆଦ୍ୟା ପ୍ରକୃତି ସ୍ୱରୂପିଣୀ ରୂପେ ଚିହ୍ନିତ ହୋଇଥିଲେ । ତେଣୁ ତାଙ୍କ ପୂଜାରେ 'ଭୁବନେଶ୍ୱରୀ' ମନ୍ତ୍ର ବ୍ୟବହୃତ ହୁଏ । କିନ୍ତୁ ବୈଷ୍ଣବୀୟ ତନ୍ତ୍ରର ପ୍ରସାର ହେବରୁ ବିମଳାଙ୍କ ଉପାସନା ଦେବୀ ଦୁର୍ଗାଙ୍କ ସ୍ଥାନ ଅଧିକାର କଲା । ଏଣୁ ଉତ୍କଳର ରାଜାମାନେ ଦେବୀଙ୍କ ମନ୍ଦିରରେ ଦଶହରା ପୂଜାର ସମସ୍ତ ବିଧି ବିଧାନ ବ୍ରାହ୍ମଣଙ୍କ ଦ୍ୱାରା ନିଷ୍ଠାର ସହ ପାଳନ କରନ୍ତି । ଦେଶରେ ଶକ୍ତି ବର୍ଦ୍ଧନ ଓ ଶାନ୍ତି ପ୍ରତିଷ୍ଠା ଅଭିଳାଷରେ ଦେବୀଙ୍କ ପୂଜା ସମାପନ କରି ରାଜାମାନେ ପୂର୍ବେ ତାଙ୍କ ରାଜ୍ୟର ସୈନ୍ୟ ସାମନ୍ତମାନଙ୍କୁ 'ଦଶରାପଦା'ରେ ଏକତ୍ରିତ କରି ବଳ ପରୀକ୍ଷା କରୁଥିବା ପ୍ରଥା ପୂର୍ବେ ପ୍ରଚଳିତ ଥିଲା । ସେହି ପରୀକ୍ଷାରେ ଶ୍ରେଷ୍ଠ ବୀରଙ୍କୁ ରାଜା ସମ୍ମାନିତ କରି ଉପାଧି ବିତରଣ କରୁଥିଲେ । ଏହା ପରେ କୁମାର-ପୂର୍ଣ୍ଣିମୀ ଦିନ ଆନନ୍ଦ ଉତ୍ସବ କରି 'ବିଜୟ ଯାତ୍ରା' କରାଯାଉଥିଲା । ଏଣୁ କାର୍ତ୍ତିକ ମାସରେ ଗୃହିଣୀମାନେ ତୁଳସୀଚଉରା ମୂଳରେ ବୈଷ୍ଣବୀୟ ବିଧିରେ ପୂଜା କରି ସେମାନଙ୍କ ଯାତ୍ରାର ଶୁଭ କାମନା କରୁଥିବା ସମ୍ଭବ ।



# ଓଡ଼ିଆର ପ୍ରାଣଚେତନା, ଶ୍ରୀମନ୍ଦିର...
## "ଏକ ଐତିହାସିକ ସମୀକ୍ଷା"

ଶ୍ରୀପୁରୁଷୋତ୍ତମ—ଜଗନ୍ନାଥଙ୍କ ଆଧୁନିକ ମନ୍ଦିର ଗଙ୍ଗବଂଶୀୟ ମହାରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବଙ୍କ କୀର୍ତ୍ତି ଖ୍ରୀ: ୧୨ଶ ଶତାବ୍ଦୀରେ ପୁରୀ ସମୁଦ୍ର କୂଳରେ ବର୍ତ୍ତମାନ ଆକାରରେ ସେ ତାହା ନିର୍ମାଣ କରିଥିଲେ । ଏ କଥା ସର୍ବ ପ୍ରଥମେ ଅନଙ୍ଗଭୀମ ଦେବ (୨ୟ)ଙ୍କ ପୁତ୍ର ରାଜରାଜ ଦେବ (ଖ୍ରୀ: ୧୧୯୮-୧୨୧୧)ଙ୍କ ଦାସ ଗୋବା ତାମ୍ର ଶାସନର ନିମ୍ନୋକ୍ତ ଶ୍ଳୋକରୁ ପ୍ରମାଣିତ ହୁଏ ।

ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିସ୍ତ ସର୍ବାଦିଶଃ
ଶ୍ରୋତ୍ରେ ନେତ୍ର ଯୁଗଂ ରବୀନ୍ଦୁ ଯୁଗଳଂ ମୂର୍ଦ୍ଧାପିଚ ଦ୍ୟୌରସୌ
ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତିଃକୋ ନାମ କର୍ତ୍ତୁଂକ୍ଷମଃ
ତସ୍ୟେତ୍ୟାଦ୍ୟନୃପୈରୁପେକ୍ଷିତମିମଂ ଚକ୍ରେଽଥ ଗଙ୍ଗେଶ୍ୱରଃ ॥
ଲକ୍ଷ୍ମୀ ଜନ୍ମ ଗୃହଂ ପୟୋନିଧିରସୌ ସମ୍ଭାବିତସ୍ୟ ସ୍ଥିରଂ
ନୋ ଧାମ୍ନି ଶ୍ୱଶୁରସ୍ୟ ପୂଜ୍ୟତେ ଇତି କ୍ଷୀରବ୍ଧିବାସ ଧ୍ରୁବମ୍ ।
ନିର୍ବିଣ୍ଣଃ ପୁରୁଷୋତ୍ତମଃ ପ୍ରମୁଦିତ ତଦ୍‌ବାସଲବ୍ଧଭ୍ରମା
ଯେୟତଦ୍‌ଭର୍ତ୍ତୃ ଗୃହଂ ବରଂ ପିତୃ ଗୃହାତ୍ ପ୍ରାପ୍ୟ ପ୍ରମୋଦାନ୍ୱିତା ॥

ଅର୍ଥାତ୍ ଯେଉଁ ବିଶ୍ୱରୂପୀ ପୁରୁଷୋତ୍ତମଙ୍କ ଉଭୟ ପାଦ ସମଗ୍ର ପୃଥିବୀ ଓ ଗଗନ ମଣ୍ଡଳକୁ ଆଚ୍ଛନ୍ନ କରେ ଓ ନାଭି ସର୍ବଦିଗମାନଙ୍କରେ ସୁବିସ୍ତୃତ ଯାହାଙ୍କର ନେତ୍ର ଯୁଗ ସୂର୍ଯ୍ୟ ଓ ଚନ୍ଦ୍ର ତୁଲ୍ୟ ଉଜ୍ଜ୍ୱଳ; ଯାହାଙ୍କର ମୂର୍ଦ୍ଧା ଦ୍ୟୁଲୋକ (ସଦୃଶ ବିସ୍ତାରିତ); ସେହି ଦେବତାଙ୍କ ପ୍ରସାଦ, ଯାହାଙ୍କ ପୂର୍ବ ରାଜାମାନେ (ନିର୍ମାଣ କରିବାକୁ ଅସମର୍ଥ ହୋଇ) ପରିତ୍ୟାଗ କରିଥିଲେ, ତାହା ଗଙ୍ଗେଶ୍ୱର (ଚୋଡ଼ଗଙ୍ଗ) ଙ୍କ ବ୍ୟତୀତ ଅନ୍ୟ କିଏ ବା କରିବାକୁ ସମର୍ଥ ହୋଇ ପାରନ୍ତେ ? ପୂର୍ବେ ବିଷ୍ଣୁ ତାଙ୍କ ପତ୍ନୀ ଲକ୍ଷ୍ମୀଙ୍କ ପିତାଳୟ ମହୋଦଧିରେ ନିବାସ କରୁଥିଲେ । ତାଙ୍କ ସହିତ ଲକ୍ଷ୍ମୀମଧ୍ୟ ସେଠାରେ ରହୁଥିଲେ । କିନ୍ତୁ ବର୍ତ୍ତମାନ ବିରାଟ ଆକାରରେ ବିଷ୍ଣୁଙ୍କ ପ୍ରାସାଦ ନିର୍ମିତ ହେବାରୁ ପିତୃଗୃହ ଅପେକ୍ଷା ଭର୍ତ୍ତୃ ଗୃହରେ ବାସ କରିବା ଶ୍ରେୟସ୍କର ଭାବି, ଲକ୍ଷ୍ମୀ ମଧ୍ୟ ସେହି ନବନିର୍ମିତ ପ୍ରାସାଦରେ ଅବସ୍ଥାନ କରିଅଛନ୍ତି ।

ଉପରୋକ୍ତ ପ୍ରଥମ ଶ୍ଳୋକରେ ବିଷ୍ଣୁଙ୍କର ଯେଉଁ ବିରାଟ ରୂପର ବର୍ଣ୍ଣନା କରାଯାଇଛି, ତାହା ସମ୍ଭବତଃ ରଚନା କରିଥିବା ପ୍ରଶସ୍ତିକାରଙ୍କ 'ପୁରୁଷସୂକ୍ତ'ର ନିମ୍ନୋକ୍ତ ଶ୍ଳୋକାଂଶଟି ପ୍ରଭାବିତ କରିଥିବ—

"ନାଭ୍ୟାଂ ଆସୀଦନ୍ତରୀକ୍ଷଂ
ଶୀର୍ଷ୍ଣୋଦ୍ୟୌଃ ସମବର୍ତ୍ତତ ।
ପଦ୍‌ଭ୍ୟାଂ ଭୂମି ଦିଶଃ ଶ୍ରୋତ୍ରାତ୍
ତଥା ଲୋକାନକଳ୍ପୟନ୍ ॥
(ପୁରୁଷସୂକ୍ତ, ଶ୍ଳୋ ୧୩)

ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀମନ୍ଦିର ନିର୍ମିତ ହେବାର ବହୁକାଳ ପୂର୍ବରୁ ଯେ, ସିନ୍ଧୁକୂଳରେ ମହାଲକ୍ଷ୍ମୀଙ୍କ ସହିତ ଶ୍ରୀପୁରୁଷୋତ୍ତମଙ୍କର ପ୍ରତିମା ପ୍ରତିଷ୍ଠା ଲାଭ କରିଥିଲା, ଏଥିରେ ଆଦୌ ସନ୍ଦେହ ନାହିଁ । କାରଣ ସଂସ୍କୃତ କବି ମୁରାରିଙ୍କ ରଚିତ 'ଅନର୍ଘ-ରାଘବ' ନାଟକର ପ୍ରସ୍ତାବନାରେ ଲେଖା ଅଛି :

"ଭୋ ଭୋ ଲବଣୋଦ ବେଳା ବନାଳୀ ତମାଳ—
ତରୁ କନ୍ଦଳସ୍ୟ ତ୍ରିଭୁବନ ମୌଳି ମଣ୍ଡଳ-ମହା—
ନୀଳମଣେଃ କମଳାକୁଚ କଳଶ କେଳି—
କସ୍ତୁରିକା-ପ୍ରତ୍ରାଙ୍କୁରସ୍ୟ ଭଗବତଃ ପୁରୁଷୋତ୍ତମସ୍ୟ
ଯାତ୍ରାୟାଂ ଉପସ୍ଥାନୀୟାଃ ସଭାସଦଃ..."

ମୁରାରିଙ୍କ କାଳ ନିର୍ଣ୍ଣୟ କରିବାକୁ ଯାଇ ଐତିହାସିକ ପଣ୍ଡିତମାନେ ଖ୍ରୀଷ୍ଟାବ୍ଦ ପ୍ରାୟ ୯୦୦ ବୋଲି ସ୍ଥିର କରି ଅଛନ୍ତି । କେତେକ ଐତିହାସିକ ମଧ୍ୟ ମୁରାରିଙ୍କ କାଳ ଖ୍ରୀ: ୧୧ଶ ବା ୧୨ଶ ଶତାବ୍ଦୀ ବୋଲି ସନ୍ଦେହ କରନ୍ତି । ଉପରୋକ୍ତ ପ୍ରସ୍ତାବନାରୁ ଆହୁ ମଧ୍ୟ ଜଣାଯାଇଛି ଯେ, ପୁରୁଷୋତ୍ତମ ଓ ଲକ୍ଷ୍ମୀ ଏକତ୍ର ପୁରୀ ସମୁଦ୍ର କୂଳରେ କେବଳ ପ୍ରତିଷ୍ଠା ଲାଭ କରି ନଥିଲେ; ତାଙ୍କର କୌଣସି ଯାତ୍ରା ସେଠାରେ ହେଉଥିଲା ଏବଂ ସେଥିରେ ବହୁ ଲୋକଙ୍କର ସମାଗମ ହେଉଥିଲା । ଯେଉଁ ଯାତ୍ରା କଥା ଏଥିରେ ଉଲ୍ଲେଖ ଅଛି, ତାହା ଓଡ଼ିଶାରେ ଶ୍ରୀପୁରୁଷୋତ୍ତମଙ୍କ ସୁପ୍ରସିଦ୍ଧ ରଥ ଯାତ୍ରା କିମ୍ବା ଅନ୍ୟ କେଉଁ ଯାତ୍ରା, ସେ କଥା କହିବା ସମ୍ଭବ ନୁହେଁ । ତେବେ ଯେଉଁ ଉତ୍ସବ (ଯାତ୍ରା)ରେ ବହୁ ଜନସମାଗମ ହୋଇଥିଲା ଏବଂ ସେମାନଙ୍କ ସମ୍ମୁଖରେ 'ଅନର୍ଘ' ରାଘବ, ନାଟକ ପରିବେଷିତ ହୋଇଥିଲା,

ତାହା ଯେ ନିଶ୍ଚିତ ଭାବେ ଏକ ବୈଷ୍ଣବ-ଯାତ୍ରା ହୋଇଥିବ ଏଥିରେ ସନ୍ଦେହ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ପୂର୍ବରେ ଉପେକ୍ଷିତ କିମ୍ବା ଅବହେଳିତ ହୋଇ ଭଗ୍ନ ଅବସ୍ଥାରେ ଗ୍ଙ୍ଗଙ୍ଗଙ୍କ ପୂର୍ବରୁ ଯେଉଁ ବିଷ୍ଣୁ ମନ୍ଦିରଟି ଥିଲା, ସେଥିରେ ବର୍ତ୍ତମାନପରି ତିନୋଟି ଦାରୁ ମୂର୍ତ୍ତି (ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ) ପ୍ରତିଷ୍ଠା ଲାଭ କରିଥିଲେ, ଅଥବା ଏକ ଲକ୍ଷ୍ମୀ ଓ ପୁରୁଷୋତ୍ତମଙ୍କ ପ୍ରତିମା ସେଥିରେ ପୂଜିତ ହେଉଥିଲେ ତାହା ମଧ୍ୟ ସ୍ଥିରକରିବା ସମ୍ଭବ ନୁହେଁ । ଯଦି ତ୍ରିମୂର୍ତ୍ତିଙ୍କୁ ଗଙ୍ଗଙ୍ଗ ପ୍ରତିଷ୍ଠା କରିଥିବେ ତା'ହେଲେ ବଳଭଦ୍ର ଓ ସୁଭଦ୍ରା ନାମ ପୂର୍ବୋକ୍ତଦାସ ଗୋବା ତାମ୍ର ଶାସନରେ ଖୋଦିତ ହୋଇଥିବା ପ୍ରଶସ୍ତି ଶ୍ଳୋକରେ ସ୍ଥାନିତ ନାହିଁ କାହିଁକି ? ଅଣ ମଧ୍ୟ ମୁରାରୀଙ୍କ ଅନର୍ଘ ରାଘବ-ନାଟକରେ ମଧ୍ୟ "କମଳା-କୁଚ-କଳଶ-କେଳି-କସ୍ତୁରିକା-ପତ୍ରାଙ୍କୁର-ମହା ନୀଳମଣି" ବିଶେଷଣ ମଣ୍ଡିତ ବିଷ୍ଣୁଙ୍କର ତଥା ପ୍ରସଙ୍ଗ କ୍ରମେ ଲକ୍ଷ୍ମୀଙ୍କର ଉପସ୍ଥିତି କେବଳ ସିନ୍ଧୁକୂଳରେ ବର୍ଣ୍ଣିତ ହୋଇ, ବଳରାମ ଓ ସୁଭଦ୍ରା ସେଥିରୁ ବିସ୍ମୃତ ହେଲେ କିପରି ? ଏ ରହସ୍ୟ ଅଦ୍ୟାପି ଘୋର ଜଟିଳତା ସୃଷ୍ଟି କରିଛି । ତଥାପି ପୁରୁଷୋତ୍ତମ (ବିଷ୍ଣୁଙ୍କୁ) ବାସୁଦେବ କୃଷ୍ଣ ରୂପରେ ଉପାସନା କରାଯାଉଥିବା ପୁଣି ବ୍ରହ୍ମ ପୁରାଣ, ନାରଦୀୟ ପୁରାଣ ଓ ସ୍କନ୍ଦ ପୁରାଣ ଲେଖା ହେଲା ବେଳେ ତ୍ରିମୂର୍ତ୍ତିଙ୍କ ସମାବେଶ ନୀଳାଚଳରେ ହୋଇଥିବା ପ୍ରମାଣ ମିଳୁଛି । ସ୍କନ୍ଦ ପୁରାଣ, ଉତ୍କଳଖଣ୍ଡରେ ବର୍ଣ୍ଣିତ ଅଛି ଯେ, ବଟ ମୂଳରେ ଇନ୍ଦ୍ରନୀଳମଣି ଦ୍ୟୁତି ସମ୍ପନ୍ନ ଚକ୍ର ଓ ଗଦାଧର ବିଷ୍ଣୁ ପ୍ରତିମା ତାଙ୍କ ବାମ ପାର୍ଶ୍ୱରେ ପଦ୍ମହସ୍ତା ମହାଲକ୍ଷ୍ମୀ ଏବଂ ଅନ୍ୟ ପାର୍ଶ୍ୱରେ ବୀଣାପାଣି (ସରସ୍ୱତୀ) ପ୍ରତିଷ୍ଠା ଲାଭ କରିଥିଲେ ।

"ତତ୍ର ପୂର୍ବଂ ଦେବତା ମଧ୍ୟେ ନ୍ୟଗ୍ରୋଧଚ୍ଛାୟ ଶୀତଳେ ।
ଇନ୍ଦ୍ରନୀଳମୟୋଦେବ ଆସ୍ତେ ଚକ୍ର ଗଦାଧରଃ ॥
ବାମପାର୍ଶ୍ୱଗତା ଲକ୍ଷ୍ମୀସ୍ତିଷ୍ଠା ପଦ୍ମ ପାଣିନା ।
ବଲ୍ଲକୀ-ବାଦନପରା ଭଗବନ୍ ମୁଖ ଲୋକନା ॥

ଐତିହାସିକମାନେ "ସ୍କନ୍ଦ ପୁରାଣ'ର ସମୟ ଖ୍ରୀ: ୧୪ଶ ଶତାବ୍ଦୀ ବୋଲି ସ୍ଥିର କରନ୍ତି । ତେଣୁ ସେତେବେଳକୁ ନିଶ୍ଚିତ ଭାବେ ଶ୍ରୀମନ୍ଦିରରେ ତ୍ରିମୂର୍ତ୍ତି ହୋଇଥିଲେ; କିନ୍ତୁ ସ୍କନ୍ଦ ପୁରାଣରେ ଅନ୍ୟଥା ବିଷ୍ଣୁମୂର୍ତ୍ତି ବିଷୟ ଲେଖାଅଛି । ବ୍ରହ୍ମ ପୁରାଣରେ ସ୍ନାନ-ଯାତ୍ରା ସମ୍ପର୍କରେ ଉଲ୍ଲେଖ ଅଛି—

"ସ୍ନାନ କାଳେ ତୁ ଯେ ମର୍ତ୍ତ୍ୟାଃ ପଶ୍ୟନ୍ତି ପୁରୁଷୋତ୍ତମମ୍ ।
ବଳଭଦ୍ରଂ ସୁଭଦ୍ରାଂଚ ତେ ଯାନ୍ତି ପଦମବ୍ୟୟମ୍ ॥"

'ସ୍କନ୍ଦ ପୁରାଣରେ ମଧ୍ୟ ଲେଖାଅଛି :

ଜଗନ୍ନାଥ ରାମକୃଷ୍ଣେତି ସୁଭଦ୍ରେତି ସକୃନ୍ନରାଃ ।
ବଦନ୍ତି ମାର୍ଜନେ କାଳେ ଯାନ୍ତି ବ୍ରହ୍ମପଦଂ ମମ ॥

କିନ୍ତୁ ବ୍ରହ୍ମ ପୁରାଣ ଓ ସ୍କନ୍ଦ ପୁରାଣରେ ଅର୍ବାଚୀନତା ପ୍ରମାଣିତ ହେଲେ ମଧ୍ୟ ସେଥିରେ ସଠିକ କାଳ ନିର୍ଣ୍ଣୟ କରିବା କଠିନ । ତେବେ ଏହି ଲେଖକ ଦ୍ୱାରା ପଠିତ ଓ ପ୍ରକାଶିତ ସର୍ବପ୍ରଥମ ଶିଳାଲେଖଟି ଯାହିରେକି ପୁରୁଷୋତ୍ତମଙ୍କ ମନ୍ଦିରରେ ଅଖଣ୍ଡବର୍ତ୍ତୀ ଦୀପଦାନ, ଅନନ୍ତବର୍ମା ଚୋଡ଼ଗଙ୍ଗଙ୍କ ୫୭ ଶ୍ରାଦ୍ଧ (ଅଙ୍କ)ରେ ଅର୍ଥାତ୍ ଖ୍ରୀ: ୧୧୩୧-୩୨ ରେ ସମାହିତ ହୋଇଥିଲା, ତାହା ମୂଳ ମନ୍ଦିରସ୍ଥ ମୁକ୍ତିମଣ୍ଡପ ନିକଟରେ ଥିବା ନୃସିଂହ ମନ୍ଦିରର ଭିତ୍ତି ସଂଲଗ୍ନ ଏକ ପ୍ରସ୍ତର ଫଳକରେ ଖୋଦିତ ହୋଇଅଛି । ସେହି ଲିପିରୁ ଆମେ ମନେ କରୁଛୁ ଯେ, ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ ଶେଷ ହେଲା ପରେ ବୋଧହୁଏ ମହାରାଜା ଚୋଡ଼ଗଙ୍ଗ ହିଁ ସର୍ବପ୍ରଥମେ ଏହି ଅଖଣ୍ଡ ଦୀପଟି ଦେବଦେବ ଶ୍ରୀପୁରୁଷୋତ୍ତମଙ୍କ ଉଦ୍ଦେଶ୍ୟରେ ଦାନ କରିଥିଲେ । ଖ୍ରୀ: ୧୧୧୧—୧୨ ପରେ ସେ ଉତ୍କଳ ଜୟ କରି ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିବେ । ତାହା ପୂର୍ଣ୍ଣ କରିବାକୁ ୧୦।୧୫ ବର୍ଷରୁ କମ୍ ସମୟ ଲାଗି ନଥିବ । ଏ ଦୃଷ୍ଟିରୁ ବିଚାର କଲେ, ଶ୍ରୀମନ୍ଦିର ଗଠିତ ହୋଇ ଦେବପ୍ରତିମାଙ୍କ ପ୍ରତିଷ୍ଠା ପରେ ସେଥିରେ 'ଅଖଣ୍ଡ ଦୀପ'ର ଜ୍ୱଳନ ବ୍ୟବସ୍ଥା କରିବା ଆବଶ୍ୟକ ହୋଇଥିବ । ତେଣୁ ଶ୍ରୀମନ୍ଦିରର ପ୍ରତିଷ୍ଠା ଠିକ୍ ସେତିକି ବେଳେ ଅର୍ଥାତ୍ ଖ୍ରୀ: ୧୧୩୧-୩୨ (ଚୋଡ଼ଗଙ୍ଗଙ୍କ ୫୭ ଶ୍ରାଦ୍ଧ)ରେ ସମ୍ପନ୍ନ ହୋଇ ଥିବା ମଧ୍ୟ ଅସମ୍ଭବ ନୁହେଁ ।

ଶ୍ରୀନୃସିଂହଙ୍କ ମନ୍ଦିରଟି କୌଣସି କାରଣରୁ ଭାଙ୍ଗି ପଡ଼ିଥିଲା । ତେଣୁ ସେଥିର ଦ୍ୱାର ସମ୍ମୁଖରେ ଯେଉଁ ଭିତ୍ତିପ୍ରସ୍ତରଗୁଡ଼ିକ ବ୍ୟବହୃତ ହୋଇଛି, ତାହା ଅନ୍ୟ ଏକ ଭଗ୍ନ ମନ୍ଦିରରୁ ସଂଗୃହୀତ ହୋଇ ସେଥିରେ ବ୍ୟବହୃତ ହୋଇଥିବା ଜଣାଯାଏ । କାରଣ ସେହି ଭଗ୍ନ ମନ୍ଦିରରେ ଯେଉଁ ପ୍ରାଚୀନ ଶିଳାଲେଖ-ଗୁଡ଼ିକ ଥିଲା, ତାହା ପ୍ରାଚୀରରେ ଅସଂଲଗ୍ନ ଭାବେ ପରେ ଯୋଡ଼ି ଦିଆଯାଇଛି ଏବଂ ଶିଳାଲେଖର ଖଣ୍ଡଗୁଡ଼ିକ ଅସ୍ତବ୍ୟସ୍ତ କରାଯାଇଥିବା ପରିଲକ୍ଷିତ ହୁଏ । ଅତ୍ୟନ୍ତ ପରିତାପର ବିଷୟ ଏହି ଯେ, ଶ୍ରୀମନ୍ଦିରର ବିଶ୍ୱବ୍ୟାପୀ ପ୍ରାଧାନ୍ୟ ଦୃଷ୍ଟିରୁ ସେଥିର ମୂଲ୍ୟବାନ୍ ଐତିହାସିକ ପ୍ରମାଣଗୁଡ଼ିକ ବର୍ତ୍ତମାନ ନଷ୍ଟ ହେଉଥିଲେ ସୁଦ୍ଧା ସେଥିପ୍ରତି କେହି ଧ୍ୟାନ ଦେଇ ନାହାନ୍ତି । ଆଉ ମଧ୍ୟ ନୃସିଂହ ମନ୍ଦିରର

ଭିତ୍ତିଗାତ୍ରରେ ବହୁ ଶିଳାଲେଖ ଅଦ୍ୟାପି ଚୂନ ପଲସ୍ତରା ଭିତରେ ଆତ୍ମଗୋପନ କରି ରହିଛି । ସେଗୁଡ଼ିକର ପାଠୋଦ୍ଧାର ସକାଶେ ପ୍ରତ୍ନତତ୍ତ୍ୱ ବିଭାଗର ଦୃଷ୍ଟି ବାରମ୍ବାର ଆକର୍ଷଣ କରି ସୁଦ୍ଧା ଆମେ ଅକୃତକାର୍ଯ୍ୟ ହୋଇ ନିରାଶରେ ଫେରୁଛୁ । ବର୍ତ୍ତମାନ ପ୍ରଶ୍ନ ହେଉଛି, ଶ୍ରୀପୁରୁଷୋତ୍ତମକ୍ଷେତ୍ର ଏକ ପୁଣ୍ୟଧାମ ରୂପେ କେଉଁ ସମୟରୁ ଭାରତରେ ପ୍ରସିଦ୍ଧି ଲାଭ କଲା । ଅବଶ୍ୟ ପୁରାଣମାନଙ୍କର ବହୁ ପ୍ରକ୍ଷିପ୍ତାଂଶ ଏବଂ କ୍ଷେତ୍ର ସମ୍ପର୍କରେ କିମ୍ବଦନ୍ତୀଗୁଡ଼ିକ ଐତିହାସିକ ଦୃଷ୍ଟିକୋଣରୁ ସିଦ୍ଧାନ୍ତ ରୂପେ ଗ୍ରହଣ କରିବା ଠିକ୍ ନୁହେଁ । ତେଣୁ ପ୍ରାଚୀନ ଶିଳାଲେଖକୁ ସମ୍ବଳ କରି ଏ ପ୍ରଶ୍ନର ସମାଧାନ କରାଯାଇପାରେ । ମଧ୍ୟପ୍ରଦେଶସ୍ଥ ମୈହାର ଶିଳାଲେଖ, ଯାହାକି ସେଠା ସରସ୍ୱତୀ ମନ୍ଦିର ଗାତ୍ରରେ ସଂଲଗ୍ନ ହୋଇଅଛି, ତାହା ଶ୍ରୀପୁରୁଷୋତ୍ତମକ୍ଷେତ୍ରର ପ୍ରାଧାନ୍ୟ ସ୍ୱୀକାର କରିଥିବା ଜଣାଯାଉଛି । ଡକ୍ଟର ଦୀନେଶ ଚନ୍ଦ୍ର ସର୍କାର ଓ ଭି.ଏସ୍. ସୁବ୍ରମନ୍ୟମ୍ ଲିପିତତ୍ତ୍ୱ ଦୃଷ୍ଟିରୁ ଏଥିର ସମୟ ଖ୍ରୀ: ୧୦ମ ଶତାବ୍ଦୀର ମଧ୍ୟଭାଗ ବୋଲି ନିରୂପଣ କରି ଅଛନ୍ତି (Ep. Ind, Vol. XXXV.) ସେଥିରେ ଲେଖାଅଛି—

"ସମୁଦ୍ରମଜ୍ଜନାନ୍ ନୂନଂ ଓଡ୍ରେଷୁ ପୁରୁଷୋତ୍ତମମ୍ ।
ଦୃଷ୍ଟ୍ୱା ତଦାନ୍ତିକେ ଭୂୟଃ ପୁରାଗଚ୍ଛତ୍ୟସୌ ଶିଶୁ ॥

ଦାମୋଦର ନାମକ ଜଣେ ଷୋଡ଼ଶ ବର୍ଷୀୟ ଯୁବକ ଓଡ୍ରଦେଶସ୍ଥ ପୁରୁଷୋତ୍ତମଙ୍କ ଦର୍ଶନ କରିବାକୁ ଆସି ସମୁଦ୍ରରେ ସ୍ନାନ କଲାବେଳେ ସେଥିରେ ନିମଜ୍ଜିତ ହୋଇଥିଲା । ସେହି ମୃତ ଶିଶୁର ସ୍ମୃତି ଉଦ୍ଦେଶ୍ୟରେ ତାର ନିଜ ଜନ୍ମସ୍ଥାନ ମୈହାର ଗ୍ରାମରେ ସରସ୍ୱତୀଙ୍କ ମନ୍ଦିର ଗଠିତ ହୋଇଥିବା ପ୍ରସଙ୍ଗ ସଂଶିତ ଲେଖରେ ବର୍ଣ୍ଣିତ ହୋଇଅଛି ।

ଯଦି ଲିପିତତ୍ତ୍ୱ ଦୃଷ୍ଟିରୁ ସେଥିର କାଳ ଖ୍ରୀ: ୧୦ମ ଶତାବ୍ଦୀ ବୋଲି ଧରାଯାଏ, ତେବେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ଦୂରଦୂରାନ୍ତର ଯାତ୍ରୀମାନଙ୍କ ନିକଟରେ ପର୍ଯ୍ୟନ୍ତ ଖ୍ୟାତି ବିସ୍ତାର କରିଥିଲା । ତେଣୁ ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ନିଶ୍ଚିତ ଭାବେ ଖ୍ରୀ: ଦଶମ ଶତାବ୍ଦୀ ପୂର୍ବରୁ ଶ୍ରୀକ୍ଷେତ୍ରରେ ସମ୍ପନ୍ନ ହୋଇ ସାରିଥିବା ସୁନିଶ୍ଚିତ ।

ବର୍ତ୍ତମାନ ଅନ୍ୟ ଏକ ପ୍ରଶ୍ନ ହେଉଛି, କିଏ ବା କେଉଁ ରାଜବଂଶ ଓଡ୍ର ଦେଶରେ ସେହିପରି ଖ୍ୟାତି ସମ୍ପନ୍ନ ବିଷ୍ଣୁକ୍ଷେତ୍ରର ପ୍ରତିଷ୍ଠା କରିଥିଲେ ? ମାଦଳା ପାଞ୍ଜିରେ ଲେଖାଅଛି ଯେ, ସୋମବଂଶୀ ମହାରାଜା ଯଯାତି କେଶରୀ ପୁରୀ ଓ ଭୁବନେଶ୍ୱରଠାରେ ପ୍ରତିଷ୍ଠିତ ବିଷ୍ଣୁ ଓ ଶିବଙ୍କ ଉଭୟ ମନ୍ଦିରର ନିର୍ମାଣ

କାର୍ଯ୍ୟ ସମ୍ପନ୍ନ କରିଥିଲେ । ଦ୍ୱିତୀୟୋକ୍ତ ମନ୍ଦିରଟି (ଲିଙ୍ଗରାଜ) ସମ୍ଭବତଃ ଯଯାତିଙ୍କ କୀର୍ତ୍ତି ହୋଇପାରେ । କିନ୍ତୁ ନୀଳାଚଳରେ ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ତାଙ୍କ ଦ୍ୱାରା ସମ୍ପନ୍ନ ହୋଇ ନଥିଲା । ମହାରାଜା ଚୋଡଗଙ୍ଗଙ୍କ ଉତ୍କଳ ବିଜୟବେଳେ ଯେଉଁ ମନ୍ଦିରଟି ଅର୍ଦ୍ଧ ନିର୍ମିତ କିମ୍ବା ଭଗ୍ନ ଅବସ୍ଥାରେ ପୁରୀ ସିନ୍ଧୁକୂଳରେ ଥିଲା, ତାହା ନିର୍ମିତ ହେବେ ସେ ଅଞ୍ଚଳରେ କୌଣସି ବୈଷ୍ଣବ ଧର୍ମାଶ୍ରୟୀ ଶାସକଙ୍କର କୀର୍ତ୍ତି । ଏ ଦୃଷ୍ଟିରୁ ପୁରୀ ଅଞ୍ଚଳର ପ୍ରାଚୀନ ରାଜନୈତିକ ଅବସ୍ଥା ସମ୍ବନ୍ଧରେ ସମ୍ୟକ୍ ବିଚାର କରିବା ଆବଶ୍ୟକ ।

ଖ୍ରୀ: ୭ମ ଶତାବ୍ଦୀରୁ ଆରମ୍ଭ କରି ଯେଉଁ ରାଜବଂଶମାନେ ଏ ଅଞ୍ଚଳ ଅଧିକାର କରି ଶାସନ କାର୍ଯ୍ୟ ଚଳାଉଥିଲେ, ସେହିମାନେ ହେଉଛନ୍ତି, ମୌଦ୍‌ଗଲ, ଶୈଳୋଦ୍‌ଭବ ଏବଂ ଭୌମକର ବଂଶୀୟ ଶୈବ ଓ ବୌଦ୍ଧ ଧର୍ମାବଲମ୍ବୀ ରାଜନ୍ୟବର୍ଗ । ଖ୍ରୀ: ୭ମ ଶତାବ୍ଦୀରୁ ଆରମ୍ଭ କରି ପ୍ରାୟ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ କେହି ହେଲେ ସେ ଅଞ୍ଚଳର ରାଜା ବା ରାଣୀ 'ପରମ ବୈଷ୍ଣବ' କିମ୍ବା 'ପରମବୈଷ୍ଣବୀ' ରୂପେ ପରିଚିତ ହୋଇ ନାହାନ୍ତି । ସେହି ରାଜାମାନଙ୍କ ପ୍ରଦତ୍ତ ଦାନ ଶାସନରେ ଯେଉଁ ବିରୁଦାବଳୀ ଉଲ୍ଲେଖ ହୋଇଛି, ସେଥିରୁ ସେମାନଙ୍କର ଆଶ୍ରିତ ଧର୍ମର ସଂଜ୍ଞା ଜଣାଯାଏ । ଶୈବ ରାଜାମାନେ 'ପରମ ମାହେଶ୍ୱର' ଏବଂ ବୌଦ୍ଧ ରାଜାମାନେ 'ପରମ ସୌଗତ' ବା 'ପରମ ତଥାଗତ' ଉପାଧି ବ୍ୟବହାର କରୁଥିଲେ । ଏଣୁ ସେମାନେ ବୈଷ୍ଣବ-କ୍ଷେତ୍ର ତଥା ବିଷ୍ଣୁ ମନ୍ଦିର ଗଠନ କରିବାକୁ କାହିଁକି ବା ଆଗ୍ରହ ପ୍ରକାଶ କରନ୍ତେ ?

କଳିଙ୍ଗ ଓ ଦକ୍ଷିଣ କୋଶଳରେ, ଅର୍ଥାତ୍ ଆଧୁନିକ ଦକ୍ଷିଣ ଓ ପଶ୍ଚିମ ଓଡ଼ିଶା ଅଞ୍ଚଳରେ ରାଜତ୍ୱ କରୁଥିବା କେତେକ ମାଠର ବଂଶୀୟ ରାଜା ଓ ପାଣ୍ଡବ ବଂଶୀୟ ରାଜା ଖ୍ରୀ: ୬ଷ୍ଠ ଶତାବ୍ଦୀ ପୂର୍ବରୁ 'ପରମ ଭାଗବତ' ସଂଜ୍ଞା ଗ୍ରହଣ କରିଥିଲେ । କିନ୍ତୁ ସେମାନଙ୍କ ପରେ ଯେଉଁ ରାଜବଂଶ ସେହି ଅଞ୍ଚଳଗୁଡ଼ିକ ଅଧିକାର କଲେ, ସେମାନେ ସମସ୍ତେ ପରମ ମାହେଶ୍ୱର ଉପାଧି ବହନ କରି ଶୈବ ଦୀକ୍ଷା ଗ୍ରହଣ କରିଥିବା ପ୍ରସଙ୍ଗ ବହୁ ତାମ୍ରଲେଖରୁ ପ୍ରମାଣିତ ହୋଇଅଛି ।

ମାଠର ଓ ପାଣ୍ଡବ ବଂଶୀୟ ରାଜାମାନଙ୍କ ଅଧିକାର ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟନ୍ତ ବ୍ୟାପୀ ଥିବା ପ୍ରମାଣ ଅଦ୍ୟାପି ଜଣାଯାଇ ନାହିଁ । ଏହା ବ୍ୟତୀତ ସେମାନଙ୍କ ଶାସନ-କେନ୍ଦ୍ର ପୁରୀଠାରୁ ଶତାଧିକ କୋଶ ଦୂରରେ ରହିଥିବାରୁ ପୁରୁଷୋତ୍ତମ-କ୍ଷେତ୍ର ବିଷ୍ଣୁକ୍ଷେତ୍ରରେ ପରିଗଣିତ କରିବା ତାଙ୍କ ପକ୍ଷରେ ଆଦୌ ସମ୍ଭବ ହୋଇ ଜଣାଯାଉ ନାହିଁ ।

ଯେଉଁ ସମୟରେ କଳିଙ୍ଗ ନଗରଠାରୁ ପ୍ରାଚୀନ ଗଙ୍ଗବଂଶୀୟ ରାଜାମାନେ ମହେନ୍ଦ୍ରଗିରିର ଶିଖର ଦେଶରେ ପ୍ରତିଷ୍ଠିତ ଗୋକର୍ଣ୍ଣେଶ୍ୱର ଶିବଙ୍କୁ ତାଙ୍କ ଇଷ୍ଟଦେବତା ରୂପେ ଗ୍ରହଣ କରିଥିଲେ, ସେତେବେଳେ ଋଷିକୂଲ୍ୟାଠାରୁ ବୈତରଣୀ ମଧ୍ୟବର୍ତ୍ତୀ ଅଞ୍ଚଳରେ ଖ୍ରୀ: ୮ମ ଶତାବ୍ଦୀରୁ ଆରମ୍ଭ କରି ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଭୌମ-କର ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ସେମାନେ ବୌଦ୍ଧ ଧର୍ମାବଲମ୍ବନ କରି ବହୁ ବୌଦ୍ଧ-ମନ୍ଦିର ସେ ଅଞ୍ଚଳରେ ସ୍ଥାପନ କଲେ । କଟକ ରତ୍ନଗିରି ଓ ଲଳିତଗିରିର ବୌଦ୍ଧ ସ୍ଥାପତ୍ୟ ତାଙ୍କର କୀର୍ତ୍ତି ପ୍ରଚାର କରୁଛି । ପୁରୁଷୋତ୍ତମକ୍ଷେତ୍ରରେ ବିଷ୍ଣୁମନ୍ଦିରର ଅବସ୍ଥିତି ବିଷୟ ବୋଧହୁଏ ସର୍ବପ୍ରଥମେ କୃଷ୍ଣ ମିଶ୍ରଙ୍କ କୃତ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟକର ନିମ୍ନୋକ୍ତ ପ୍ରାକୃତ ଭାଷାର ସଂଳାପରୁ ସୂଚିତ ହୋଇଅଛି—

"ପୁରୁଷଃ—ହଗ୍ଗେ ଉକ୍କଳ ଦେସଦୋ ଆଗଦୋମ୍ହି ।

ଅତ୍‌ଥି ସା ଅଳଣ୍ଣଳ ସନ୍ନିବେସେ ପୁଲିସୋତ୍ତମ ସଣ୍ଣିଅମ୍ ଦେବଦା ଅଦନମ୍ ।

ମହାମୋହଃ—କୁତୋ ଭବାନ୍ ।
ପୁରୁଷଃ—ହଗ୍ଗେ ପୁଲିସୋତ୍ତମାଦୋ ଆଗତୋମ୍ହି ॥

ଏହି ନାଟକରେ ପୁରୁଷ, ମହାମୋହ ପ୍ରଭୃତି ଭୂମିକାରେ ଯେଉଁ କାଳ୍ପନିକ ଚରିତ୍ରଗୁଡ଼ିକର ଅବତାରଣା କରାଯାଇଛି ସେଥିରୁ 'ପୁରୁଷ' ନାମକ ଚରିତ୍ରର ମୁଖରେ କୁହାଯାଇଛି, "ଉତ୍କଳ ଦେଶରୁ ସେ ସମାଗତ । ସେଠାରେ ସାଗରତଟରେ ପୁରୁଷୋତ୍ତମଠାରେ ଦେବତାଙ୍କ ମନ୍ଦିର (ସଦନ) ବିଦ୍ୟମାନ ଥିବା ପ୍ରସଙ୍ଗ 'ମହାମୋହ' ନାମକ କାଳ୍ପନିକ ବ୍ୟକ୍ତିଙ୍କଠାରେ ପ୍ରକାଶ କରିଛନ୍ତି ।

ଏହି ନାଟକର ରଚୟିତା କୃଷ୍ଣ ମିଶ୍ର ବୁନ୍ଦେଲଖଣ୍ଡର ରାଜା କୀର୍ତ୍ତିବର୍ମା, ଯେ କି କାଳଞ୍ଜରଠାରୁ ଶାସନ ବିସ୍ତାର କରିଥିଲେ, ତାଙ୍କର ଜଣେ ସଭାପଣ୍ଡିତ ବୋଲି ସେହି ନାଟକରେ ବର୍ଣ୍ଣିତ ହୋଇଅଛି । ତେଣୁ ତାଙ୍କର ସମୟ ଖ୍ରୀଃ ୧୧ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବୋଲି ମେକ୍‌ଡୋନାଲ୍ (Macdonnel) ସ୍ଥିର କରିଅଛନ୍ତି । (History of Sanskrit Literature—Macdonnel-1962, P-310) ସୁତରାଂ ପୁରୁଷୋତ୍ତମଙ୍କ ମନ୍ଦିର ଚୋଡ଼ଗଙ୍ଗ ନିର୍ମାଣ କରିବା ଶହେ ବର୍ଷ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରର ପ୍ରାଧାନ୍ୟ ଥିଲା ।

ଭୌମ-କର ବଂଶୀୟ ରାଜାମାନେ ଉତ୍କଳ ଅଧିକାର କରି ଖ୍ରୀ: ୮ମ ଶତାବ୍ଦୀରୁ ରାଜ୍ୟଶାସନ ବିସ୍ତାର କରିବାକୁ ଲାଗିଲେ । ସେହି ରାଜବଂଶର ପ୍ରଥମ ଭାଗରେ ରାଜତ୍ୱ କରିଥିବା ରାଜାମାନେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । କିନ୍ତୁ ପରବର୍ତ୍ତୀ ରାଜାମାନେ ଶୈବଧର୍ମରେ ଦୀକ୍ଷିତ ହୋଇ 'ପରମ ମାହେଶ୍ୱର' ଉପାଧି ବହନ କଲେ । ତାନ୍ତ୍ରିକ ଶୈବ ଧର୍ମରେ ସେମାନେ ଶିବଙ୍କୁ ଆରାଧନା କରୁଥିବା ପ୍ରସଙ୍ଗ ଶାନ୍ତିକର ଦେବଙ୍କ ଅନୁଗୁଳ ତାମ୍ର ଶାସନରେ ଖୋଦିତ ହୋଇଅଛି । (O. H. R. J. Vol. XII, No. I)

ନିମ୍ନୋକ୍ତ ମଙ୍ଗଳ ଶ୍ଳୋକରୁ ତାହା ପ୍ରମାଣିତ ହୁଏ—

"ନାଡ଼ୀଚକ୍ରୋଦରସ୍ଥ କ୍ଷିତିଜଲଦହନସ୍ପର୍ଶନା କାଶଧାମା
ସର୍ବାତ୍ମା ସର୍ବଶକ୍ତଃ ଶଶିତରଣିଗତିର୍ବିଶ୍ୱମୂର୍ତ୍ତିଃ ପୁରାଣଃ ।
ଯୋଽସୌ ଦେବାତିଦେବୋ ସ ଜୟତି ଭଗବାନ୍ ଦେହିନୋ ଦେହ ମଧ୍ୟେ
ଆଦୌ ହଂସାଭିଧାନୋ ସ ଜୟତ୍ୟତିତରାଂ ପ୍ରାଣଭୃତୋ ମହେଶଃ" ॥

ଶାନ୍ତିକରଙ୍କ ପରେ ସେହି ବଂଶର ଅନ୍ୟ ରାଜାମାନେ 'ପରମ ମାହେଶ୍ୱର' ପଦବୀ ଗ୍ରହଣ କରିଥିବା ପ୍ରସଙ୍ଗ ସେମାନଙ୍କ ଦାନ ଶାସନ ଗୁଡ଼ିକରୁ ପ୍ରମାଣିତ ହୁଏ । କିନ୍ତୁ ଭୌମାବ୍ଦ ୧୫୮ (ଖ୍ରୀ: ୮୯୪)ରେ ତ୍ରିଭୁବନ ମହାଦେବୀ ଓରଫ୍ ପୃଥ୍ୱୀ ମହାଦେବୀଙ୍କ ବୌଦରୁ ପ୍ରାପ୍ତ ଦୁଇଟି ତାମ୍ର ଶାସନରେ ସେ ନିଜକୁ 'ପରମ ବୈଷ୍ଣବୀ' ଉପାଧିରେ ଭୂଷିତ କରି ଅଛନ୍ତି । ଏଣୁ ଉତ୍କଳରେ ରାଜତ୍ୱ କରୁଥିବା ପ୍ରାଚୀନତମ ବୈଷ୍ଣବଧର୍ମାବଲମ୍ବିନୀ ରୂପେ ସେ ଇତିହାସରେ ପରିଚିତ ହୁଅନ୍ତି ।

ଖ୍ରୀ: ୧୦ମ ଶତାବ୍ଦୀରେ ତାନ୍ତ୍ରିକ ବିଧିର ପଞ୍ଚୋପାସକର ବହୁଳ ଭାବେ ବିସ୍ତାର ଓ ପ୍ରାଧାନ୍ୟ ଲାଭ କରି ଶୈବ ଓ ବୈଷ୍ଣବ ଧର୍ମ ମଧ୍ୟରେ ସମନ୍ୱୟ ରକ୍ଷା କରିବାକୁ ସମର୍ଥ ହୋଇଥିଲା । 'ତୋଡ଼ଲ ତନ୍ତ୍ରୋକ୍ତ' ନାମରେ ଉଦ୍ଧୃତ ଅଂଶରୁ ସେଥିର ପ୍ରମାଣ ମିଳୁଛି—

"ଶ୍ରୀଶିବ ଉବାଚ :

ତାରଦେବୀ ମୀନ (ମୀନ) ରୂପାଂ ବଗଳା କୂର୍ମମୂର୍ତ୍ତିକା ।
ଧୂମାବତୀ ବରାହଃସ୍ୟାତ୍ ଛିନ୍ନମସ୍ତା ନୃସିଂହକା ॥
ଭୁବନେଶ୍ୱରୀ ବାମନଃସ୍ୟାନ୍ ମାତଙ୍ଗୀ ରାମ ମୂର୍ତ୍ତିକା ।
ତ୍ରିପୁରା ଜାମଦଗ୍ନ୍ୟଃସ୍ୟାତ୍ ବଳଭଦ୍ରସ୍ତୁ ଭୈରବୀ ॥

ମହାଲକ୍ଷ୍ମୀ ଭବେଦ୍ ବ୍ରହ୍ମେ ଦୁର୍ଗାସ୍ୟାତ୍ କଲ୍କି ରୂପିଣୀ ।
ସ୍ୱୟଂ ଭଗବତୀ କାଳୀ କୃଷ୍ଣମୂର୍ତ୍ତିଃ ସମୁଦ୍ଭବ ।।
ଇତି ତେ କଥିତଂ ଦେବ୍ୟାବତାରଂ ଦଶଏବହି ।
ଏତାସାଂ ପୂଜନାଦେବ ମହାଦେବ ସମୋଭବେତ୍" ।।
(ତୋଡଲତନ୍ତ୍ର, ୧୦ମ ଉଲ୍ଲାସ)

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ତାନ୍ତ୍ରିକ ଉପାସନା ଶାକ୍ତ, ଶୈବ ଏବଂ ବୈଷ୍ଣବମାନଙ୍କର ଏକ ମହାମିଳନ କ୍ଷେତ୍ରରେ ପରିଣତ ହେଲା । ବିଷ୍ଣୁଙ୍କର ଦଶାବତାର ସଙ୍ଗେ ଶକ୍ତି ଉପାସକମାନେ ମଧ୍ୟ ଦେବୀଙ୍କର ଦଶ ଅବତାର କଳ୍ପନା କରି ହରି-ହର ପୂଜା ବିଧି ପ୍ରବର୍ତ୍ତିତ କରିବାକୁ ଲାଗିଲେ । ତେଣୁ ଶ୍ରୀପୁରୁଷୋତ୍ତମଙ୍କୁ ବୌଦ୍ଧ ରୂପେ ମହାଲକ୍ଷ୍ମୀଙ୍କ ସଙ୍ଗେ ସମାନ କରି ତାନ୍ତ୍ରିକ ବିଧିରେ ତାଙ୍କର ପୂଜାବିଧି ନିର୍ଣ୍ଣିତ ହୋଇଥିଲା । ସୁଭଦ୍ରାଙ୍କୁ ମଧ୍ୟ ଭୁବନେଶ୍ୱରୀ ମନ୍ତ୍ରରେ ତାଙ୍କ ପୂଜାବିଧିର ନିର୍ଦ୍ଦେଶ କରାଯାଇଛି । ସ୍ନାନ ବେଦୀରେ ଜ୍ୟୈଷ୍ଠ ପୂର୍ଣ୍ଣିମା ଦିନ ଦେବ ସ୍ନାନ ପରେ ସୁଭଦ୍ରାଙ୍କୁ ପୁଷ୍ପାଞ୍ଜଳି ଦେଲାବେଳେ 'ସପ୍ତଶତି-ଚଣ୍ଡୀ'ରୁ କେତୋଟି ବନ୍ଦନା ଶ୍ଳୋକ ପାଠ କରାଯାଇଥାଏ । ଯଥା—

ସର୍ବ ମଙ୍ଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣୀ ନମୋଽସ୍ତୁତେ । ଇତ୍ୟାଦି

ସୁଭଦ୍ରାଙ୍କ ପୂଜାରେ ମଧ୍ୟ 'ଦେବୀସୂକ୍ତ' ପାଠ କରାଯାଏ ।

ଖ୍ରୀ: ୧୦ମ ଶତାବ୍ଦୀ ଆରମ୍ଭରେ କିମ୍ବା ୯ମ ଶତାବ୍ଦୀ ଶେଷରେ ସମ୍ଭବତଃ ଭୌମକର ବଂଶୀୟ ଯେଉଁ ଶୈବ ରାଜାମାନେ ସେ ଅଞ୍ଚଳରେ ରାଜତ୍ୱ କରୁଥିଲେ, ସେମାନଙ୍କ ଦ୍ୱାରା ପୁରୀର ଶ୍ରୀମନ୍ଦିର ଗଠିତ ହେବା ପୂର୍ବରୁ କେତୋଟି ଶିବ ମନ୍ଦିର ଖ୍ରୀ: ୯ମ ଶତାବ୍ଦୀରେ ନିର୍ମିତ ହୋଇଥିଲା । ମାର୍କଣ୍ଡେଶ୍ୱର, ଜମ୍ବେଶ୍ୱର, ଲୋକନାଥ ମନ୍ଦିରମାନଙ୍କରେ ଯେଉଁ ଶିବଲିଙ୍ଗ ସ୍ଥାପିତ ହୋଇଅଛନ୍ତି, ତାହା ଆଧୁନିକ ଭୂପୃଷ୍ଠର ବହୁ ନିମ୍ନସ୍ତରରେ ଥିବା ଦେଖାଯାଏ । ସେହିପରି ଶ୍ରୀମନ୍ଦିରର ଉତ୍ତରାଂଶରେ ବଳିପାତାଳ ତଥା ଈଶାନେଶ୍ୱରଙ୍କ ଲିଙ୍ଗ ବହୁ ତଳ ସ୍ତରରେ ଥିବାରୁ ସେ ସମସ୍ତେ ଖ୍ରୀ: ୧୦ମ ଶତାବ୍ଦୀ ପୂର୍ବରୁ ଅର୍ଥାତ୍ ପୃଥ୍ୱୀ ମହାଦେବୀଙ୍କ ସମୟରେ ଶ୍ରୀପୁରୁଷୋତ୍ତମ ପ୍ରତିଷ୍ଠା ପୂର୍ବରୁ ତାହା ଏକ ଶୈବ କେନ୍ଦ୍ରରେ ପରିଣତ ହୋଇଥିବା ସମ୍ଭବ । ତାପରେ ଖ୍ରୀ: ୯ମ ଶତାବ୍ଦୀରେ ପରମବୈଷ୍ଣବୀ ପୃଥ୍ୱୀ ମହାଦେବୀଙ୍କ ଉଦ୍ୟମରେ ସେଠାରେ ବିଷ୍ଣୁଙ୍କ ପ୍ରତିମା କିମ୍ବା ଶ୍ରୀପୁରୁଷୋତ୍ତମ ଓ ଲକ୍ଷ୍ମୀଙ୍କ ମନ୍ଦିର ଗଠିତ ହେଲା । କିନ୍ତୁ

ରାଜନୈତିକ ଘଟଣା ଚକ୍ରରେ ପଡ଼ି ଭୌମକର ବଂଶର ଅବସାନ ପରେ ଯେତେବେଳେ ବାହ୍ୟ ଶତ୍ରୁମାନଙ୍କ ଆକ୍ରମଣରୁ ଉତ୍କଳକୁ ସୁରକ୍ଷିତ କରିବା ସକାଶେ ଖଣ୍ଡପାଳ ଓ ସାମନ୍ତ ରାଜାମାନଙ୍କ ଆମନ୍ତ୍ରଣ କ୍ରମେ ସୋମବଂଶୀ ମହାରାଜା ଯଯାତି (୨ୟ) ଉତ୍କଳର ଶାସନଭାର ବହନ କଲେ, ଏବଂ ତାଙ୍କ ରାଜଧାନୀ ମହାନଦୀ ତଟସ୍ଥ ଯଯାତିନଗରରେ ସ୍ଥାପନ କଲେ ସେତେବେଳେ ତାଙ୍କର ଶୈବ ଗୁରୁପୀଠ ଭୁବନେଶ୍ୱରଠାରେ ବିରାଟ ଆକାରରେ କୃତ୍ତିବାସ (ଲିଙ୍ଗରାଜ)ଙ୍କ ମନ୍ଦିର ନିର୍ମାଣ କରିଥିବା ଜଣାଯାଏ । ତାଙ୍କ ରାଣୀ କୋଲାବତୀ ମଧ୍ୟ ସ୍ୱାମୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ମେଘେଶ୍ୱରଙ୍କ ମନ୍ଦିର ନିର୍ମାଣ କରି ସେଥିରେ ସ୍ୱୀୟ ବଂଶର କୀର୍ତ୍ତି ବର୍ଣ୍ଣନା କରି ଗୋଟିଏ ଶିଳାଲିପି ସଂଯୁକ୍ତ କରିଥିଲେ । ସେହି ସମୟରେ ତ୍ରିଭୁବନ ମହାଦେବୀ-ପୃଥ୍ୱୀ-ମହାଦେବୀ ପ୍ରତିଷ୍ଠା କରିଥିବା ନୀଳାଚଳର ପୁରୁଷୋତ୍ତମ ମନ୍ଦିର ତ୍ୟକ୍ତ ହୋଇ ରହିଲା, ଯାହା କି ଖ୍ରୀ: ୧୨ଶ ଶତାବ୍ଦୀ ଆରମ୍ଭ କାଳରେ ଗଙ୍ଗବଂଶୀୟ ମହାରାଜା ଚୋଡ଼ଗଙ୍ଗଦେବ ବିରାଟ ଆକାରରେ ବିଷ୍ଣୁ ମନ୍ଦିର ନିର୍ମାଣ କଲେ ଏବଂ ରାମାନୁଜଙ୍କ ପ୍ରବର୍ତ୍ତିତ ଶ୍ରୀବୈଷ୍ଣବ ସମ୍ପ୍ରଦାୟରୁ ତାଙ୍କର ବୈଷ୍ଣବ ଗୁରୁ ନିର୍ବାଚନ କରି ବିଷ୍ଣୁ-ଶିବ-ଶକ୍ତିଙ୍କୁ ସମ୍ମିଳିତ ଭାବେ ମନ୍ଦିରରେ ସ୍ଥାପନ କଲେ, ଏହା ଫଳରେ ନୀଳାଚଳ ଧାମର ବୈଶିଷ୍ଟ୍ୟ ଓ ମାହାତ୍ମ୍ୟ ଭାରତର ସର୍ବତ୍ର ପ୍ରସାର ଲାଭ କଲା । ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କୁ ସ୍ପର୍ଶ କରିବା ଆଚଣ୍ଡାଳବ୍ରହ୍ମ ପର୍ଯ୍ୟନ୍ତ ସମସ୍ତଙ୍କର ଅଧିକାର ରହିଲା । ଏ ସମ୍ପର୍କରେ ଗୋଟିଏ ପ୍ରାଚୀନ ତାଳପତ୍ର ପୋଥି 'ବ୍ରହ୍ମ ପୁରାଣ'ରୁ ସଂଗୃହୀତ ନିମ୍ନୋକ୍ତ ଶ୍ଳୋକଟି ଉଦ୍ଧାର କରାଯାଇପାରେ—

ତତ୍ର ନାନା ବିଧୈର୍ବାଦ୍ୟୈଃ କୃଷ୍ଣଂ ନୀଳାମ୍ବରଂ ଦ୍ୱିଜାଃ ।
ସ୍ନାପୟିନଂ ଚ ସୁଭଦ୍ରାଂ ଚ ଜୟ ମଙ୍ଗଳ ନିସ୍ୱନୈଃ ॥
ବ୍ରାହ୍ମଣୈଃ କ୍ଷତ୍ରିୟୈର୍ବୈଶ୍ୟୈଃ ଶୂଦ୍ରୈରନ୍ୟୈଶ୍ଚ ଜାତିଭିଃ ।
ଅନେକ ଶତସାହସ୍ରୈ ବୃତଂ ସ୍ତ୍ରୀପୁରୁଷୈର୍ଦ୍ୱିଜାଃ ॥
ଗୃହସ୍ଥାଃ ସ୍ନାତକାଶ୍ଚୈବ ଯତୟୋ ବ୍ରହ୍ମଚାରିଣଃ ।
ସ୍ନାପୟନ୍ତି ତଦା କୃଷ୍ଣଂ ମଞ୍ଚସ୍ଥଂ ସହଳାୟୁଧମ୍ ॥

ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହେଉଛି ଯେ, ଜାତିଭେଦ ପ୍ରଥା ପୁରୁଷୋତ୍ତମ-କ୍ଷେତ୍ରରେ ଛିନ୍ନ ହୋଇଥିଲା । ତେଣୁ ଏହା ବୌଦ୍ଧଧର୍ମ ପ୍ରଭାବିତ ରାଜା ବା ଗୁରୁମାନଙ୍କ ସଂସ୍କୃତି ବୋଲି ନିଶ୍ଚିତ ଭାବେ ବୁଝାଯାଇପାରେ । ଭାରତର ଅନ୍ୟ କୌଣସି ଦେବ ସ୍ଥାନରେ ଏପରି ସର୍ବଧର୍ମର ସମନ୍ୱୟ ଘଟି ନାହିଁ ।



# ଶ୍ରୀଜଗନ୍ନାଥଧାମ ଓ ଉତ୍କଳର ରାଜନୈତିକ ଧର୍ମସଂସ୍ଥା

ପୁରୁଷୋତ୍ତମକ୍ଷେତ୍ରରେ ଶ୍ରୀଜଗନ୍ନାଥ ମନ୍ଦିର ଭାରତର ଚାରୋଟି ମୁଖ୍ୟତୀର୍ଥ ମଧ୍ୟରୁ ଅନ୍ୟତମ । ଅନ୍ୟ ତିନୋଟି ତୀର୍ଥ ହେଉଛନ୍ତି, ରାମେଶ୍ୱର, ଦ୍ୱାରକାନାଥ ଓ ବଦ୍ରିନାଥ । ଏହା ଭାରତର ଚାରୋଟି ଦିଗରେ ସଂସ୍ଥାପିତ, ହିନ୍ଦୁମାନଙ୍କ ମହାପୁଣ୍ୟ ଭୂମି । ପୁରାଣମାନଙ୍କରେ ଲେଖାଅଛି ଯେ ପୁରୁଷୋତ୍ତମକ୍ଷେତ୍ର ସମାନ ପୁଣ୍ୟଭୂମି ପୃଥିବୀରେ ବିରଳ । ନିମ୍ନୋକ୍ତ ଶ୍ଳୋକରୁ ଏହା ପ୍ରତିପାଦିତ ହୁଏ ।

ବାରାଣସ୍ୟାଃ ସମଂ ଅସ୍ତି କ୍ଷେତ୍ରମେକାମ୍ରକାନନମ୍ ।
ପୁରୁଷାଖ୍ୟସମଂ କ୍ଷେତ୍ରଂ ନାସ୍ତି ତ୍ରୈଲୋକ୍ୟମଣ୍ଡଳେ ॥

ଅର୍ଥାତ୍, ଏକାମ୍ରକାନନ ବା ଭୁବନେଶ୍ୱରକୁ ପୁଣ୍ୟକ୍ଷେତ୍ର ବାରାଣସୀ ସଙ୍ଗେ ସମାନ କରାଯାଇପାରେ । କିନ୍ତୁ ପୁରୁଷୋତ୍ତମକ୍ଷେତ୍ର ତ୍ରୈଲୋକ୍ୟମଣ୍ଡଳରେ ଅତୁଳନୀୟ । ଏ ମହତ୍ତ୍ୱ ଓ ଗୌରବ ଶ୍ରୀମନ୍ଦିରର ନିର୍ମାଣରେ ଓଡ଼ିଶା ଭାଗ୍ୟରେ ସମ୍ଭବ ହେଲା । ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ କିମ୍ବା ତତ୍ପୂର୍ବରୁ ନୀଳାଚଳଧାମର ଖ୍ୟାତି ରହିଥିଲେ ସୁଦ୍ଧା ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ ପରେହିଁ ଏଥିର ମାହାତ୍ମ୍ୟ ବୃଦ୍ଧିଲାଭ କରିଅଛି ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଶ୍ରୀମନ୍ଦିରର ନିର୍ମିତା କିଏ ଏବଂ କେଉଁ ସମୟରେ ଓ କି ପରିସ୍ଥିତିରେ ତାହା ନିର୍ମିତ ହେଲା ? ଓଡ଼ିଶାର ଗୋଟିଏ ଲୋକ ପ୍ରଚଳିତ କିମ୍ବଦନ୍ତୀରୁ ସମସ୍ତେ ଜାଣନ୍ତି ଯେ, ଇନ୍ଦ୍ରଦ୍ୟୁମ୍ନ ନାମକ ଜଣେ ରାଜା ପ୍ରଥମେ ଏ ମନ୍ଦିର ନିର୍ମାଣ କରିଥିଲେ । ସେ ଥିଲେ ମାଳବ ଅର୍ଥାତ୍ ରାଜସ୍ଥାନର ଜଣେ ରାଜା । ଏହି କିମ୍ବଦନ୍ତୀର ସପକ୍ଷରେ ଅଦ୍ୟାପି କୌଣସି ଐତିହାସିକ ପ୍ରମାଣ ମିଳିନାହିଁ । 'ମାଦଳାପାଞ୍ଜି' ଓ କେତେକ ପ୍ରାଚୀନ ଗ୍ରନ୍ଥରେ ଲେଖାଅଛି ଯେ, କେଶରୀ ବଂଶରେ ଯଯାତିକେଶରୀ ନାମକ ଜଣେ ରାଜା ଏ ମନ୍ଦିରର ନିର୍ମାଣକର୍ତ୍ତା । ଓଡ଼ିଶା ଇତିହାସରେ ଯଯାତି-ମହାଶିବଗୁପ୍ତ ନାମକ ଦୁଇଜଣ ରାଜାଙ୍କର ନାମ ଦେଖିବାକୁ ମିଳେ । ସେମାନେ ଥିଲେ ସୋମବଂଶୀୟ ଦକ୍ଷିଣ କୋଶଳର ରାଜା । ସେମାନଙ୍କ ରାଜଧାନୀ ସୁବର୍ଣ୍ଣପୁର ବା ଆଧୁନିକ 'ସୋନପୁର' ଠାରେ ପ୍ରଥମେ ସ୍ଥାପିତ ହୋଇଥିଲା । ଯଯାତି ୨ୟଙ୍କ ରାଜଧାନୀ

'ଯଯାତିନଗର' ନାମକ ସ୍ଥାନରେ ପ୍ରତିଷ୍ଠା ଲାଭକଲା । ସେହି ରାଜଧାନୀ ମହାନଦୀ କୂଳରେ ଥିଲାବୋଲି ତାଙ୍କ ତାମ୍ରଶାସନରେ ବର୍ଣ୍ଣିତ ଅଛି । ଏଣୁ ଏହାକୁ ଆଧୁନିକ ଯାଜପୁର, (ଯାହାକି ବୈତରଣୀ କୂଳରେ ଅବସ୍ଥିତ), ସଙ୍ଗେ ସମାନ କରିବା ଠିକ୍ ନୁହେଁ । ଅବଶ୍ୟ କିମ୍ବଦନ୍ତୀ ଅନୁଯାୟୀ, ରାଜା ଯଯାତି ଯାଜପୁରଠାରେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରି ଗୋଟିଏ ଯୂପସ୍ତମ୍ଭ ନିର୍ମାଣ କରିଥିଲେ ଏବଂ କାନ୍ୟକୁବ୍ଜରୁ ବହୁ ବ୍ରାହ୍ମଣ ପରିବାରଙ୍କୁ ଆଣାଇ ସେଠାରେ ଗ୍ରାମ ଦାନ କରିଥିଲେ । ଏହି କିମ୍ବଦନ୍ତୀକୁ ମଧ୍ୟ ବିଶ୍ୱାସ କରିବା ପାଇଁ ଐତିହାସିକ ଉପାଦାନ ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କର ହସ୍ତଗତ ହୋଇନାହିଁ । ମହାରାଜା ଯଯାତି ଦ୍ୱିତୀୟ ହିଁ ସର୍ବପ୍ରଥମେ ଦକ୍ଷିଣ କୋଶଳ ସହିତ ଉତ୍କଳର ସମ୍ମିଶ୍ରଣ କରି ରାଜତ୍ୱ କରିଥିବା ଦୃଷ୍ଟିରୁ ଉପରୋକ୍ତ କିମ୍ବଦନ୍ତୀଗୁଡ଼ିକୁ ମିଶାଇ ଯଦି ଅମ୍ଭେ ସ୍ଥିର କରୁଁ ଯେ, ମାଦଳାପାଞ୍ଜି-ବର୍ଣ୍ଣିତ ଯଯାତିକେଶରୀ, ଅର୍ଥାତ୍ ମହାଶିବଗୁପ୍ତ ଯଯାତି ଦ୍ୱିତୀୟ ଶ୍ରୀମନ୍ଦିରର ପ୍ରଥମ ନିର୍ମାତା, ତା'ହେଲେ ସ୍ପଷ୍ଟ ଜଣାଯିବ ଯେ, ଖ୍ରୀଷ୍ଟୀୟ ୧୦ମ ବା ୧୧ ଶତାବ୍ଦୀରେ ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିର ନିର୍ମାଣର ଅଳ୍ପକାଳ ପରେ ହିଁ ଶ୍ରୀଜଗନ୍ନାଥଙ୍କର ଏକ ମନ୍ଦିର କାର୍ଯ୍ୟ ଆରମ୍ଭ ହୋଇଥିଲା । ସମ୍ଭବତଃ କୌଣସି ଐତିହାସିକ କାରଣରୁ ସୋମବଂଶୀ ରାଜାମାନଙ୍କର ରାଜତ୍ୱକାଳରେ ଶ୍ରୀମନ୍ଦିରର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ନ ହୋଇ ତାହା ବହୁକାଳ ପର୍ଯ୍ୟନ୍ତ ଉପେକ୍ଷିତ ହୋଇଥିଲା ।

ଯେଉଁ ସମୟରେ ସୋମବଂଶୀ ରାଜାମାନେ ଉତ୍କଳ ଅଧିକାର କରି ପୂର୍ବରେ ଗଙ୍ଗା ବା ହୁଗୁଳିଠାରୁ ଦକ୍ଷିଣରେ ଋଷିକୁଲ୍ୟା ପର୍ଯ୍ୟନ୍ତ ଏବଂ ସମୁଦ୍ରଠାରୁ ପଶ୍ଚିମ ଓଡ଼ିଶାରେ ଆଧିପତ୍ୟ ବିସ୍ତାର କରିଥିଲେ, ସେତେବେଳେ ଦକ୍ଷିଣ-ଓଡ଼ିଶା (କଳିଙ୍ଗ) ଗଙ୍ଗବଂଶୀୟ ରାଜାମାନଙ୍କ ଅଧୀନସ୍ଥ ଥିଲା । ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ଶେଷଭାଗରେ ସେହି ବଂଶରେ ରାଜରାଜ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କ ସମୟରେ ସୁଦୂର ଦକ୍ଷିଣରୁ ଚୋଳମାନେ ଏବଂ ବଙ୍ଗଳାରୁ ପାଳବଂଶୀୟ ରାଜାମାନେ ଏ ସାମ୍ରାଜ୍ୟ ଅଧିକାର କରିବାକୁ ବାରମ୍ବାର ଯୁଦ୍ଧ କରୁଥିଲେ । ଚୋଳରାଜ ରାଜେନ୍ଦ୍ର ଚୋଳଙ୍କ ସଙ୍ଗେ କଳିଙ୍ଗର ଗଙ୍ଗବଂଶୀୟ ରାଜା ରାଜରାଜଙ୍କ ଘୋର ଯୁଦ୍ଧ ଅନୁଷ୍ଠିତ ହେଲା । ସେଥିରେ ରାଜରାଜ ବିଜୟ ଲାଭକରି ଚୋଳ ରାଜକନ୍ୟା ରାଜସୁନ୍ଦରୀଙ୍କ ପାଣିଗ୍ରହଣ କଲେ । ତାଙ୍କ ଗର୍ଭରୁ ଓଡ଼ିଶାର ସ୍ୱନାମଧନ୍ୟ ପରାକ୍ରମଶାଳୀ ମହାରାଜ ଚୋଡ଼ଗଙ୍ଗଦେବ ଜନ୍ମଗ୍ରହଣ କରି, ଅଳ୍ପ ବୟସରେ ପିତାଙ୍କ ମୃତ୍ୟୁ ହେବାରୁ କଳିଙ୍ଗର ସିଂହାସନ

୧୦୭୭ ଖ୍ରୀଷ୍ଟାବ୍ଦରେ ଅଧିକାର କଲେ । ଏହି ଘଟଣାର କିଛିକାଳ ପରେ ବଙ୍ଗଦେଶର ପାଲବଂଶୀୟ ରାଜା ରାମପାଳ ଉତ୍କଳର ତତ୍‌କାଳୀନ ସୋମବଂଶୀୟ ରାଜା କର୍ଣ୍ଣଦେବଙ୍କ ସଙ୍ଗେ ସହଯୋଗକରି କଳିଙ୍ଗ ରାଜାଙ୍କ ବିପକ୍ଷରେ ଘୋର ଯୁଦ୍ଧ କଲେ । ସେହି ଯୁଦ୍ଧ ବହୁକାଳ ପର୍ଯ୍ୟନ୍ତ ଉଭୟ ରାଜବଂଶରେ ଲାଗି ରହିଥିଲା । କିନ୍ତୁ ପାଲବଂଶର ଅବସାନ ପରେ ଉତ୍କଳୀୟ ସୋମବଂଶର ମଧ୍ୟ ଅବସାନ ଘଟିଲା । ଗଙ୍ଗଗଙ୍ଗଙ୍କ ଅପାର ସୈନ୍ୟ ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହୋଇ ଉତ୍କଳର ସୋମବଂଶୀୟ ରାଜତ୍ୱ ନିର୍ମୂଳ କରିଦେଲେ । ଏହାପରେ କଳିଙ୍ଗ ସଙ୍ଗେ ଉତ୍କଳ ଏବଂ ଦକ୍ଷିଣ କୋଶଳର ମିଶ୍ରଣ ସମ୍ଭବ ହେଲା । ସେହିକବେଳେ ମଧ୍ୟ ଭାରତରୁ ଚେଦିବଂଶୀୟ ରାଜାମାନେ ପଶ୍ଚିମ ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଘନ ଘନ ଆକ୍ରମଣ କରିଥିଲେ । ବହୁ ଯୁଦ୍ଧରେ ଗଙ୍ଗଗଙ୍ଗ ଲିପ୍ତ ହୋଇ ମଧ୍ୟ ତାଙ୍କର ସ୍ୱାଭାବିକ ଧର୍ମପ୍ରାଣତା ଯୋଗୁଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଦେବମନ୍ଦିରମାନଙ୍କରେ ଅକୁଣ୍ଠ ଦାନକରି ହିନ୍ଦୁଧର୍ମର ଅଭ୍ୟୁଥାନ ସଙ୍ଗେ ଉତ୍କଳକୁ ଗୋଟିଏ ପବିତ୍ରଧାମରେ ପରିଣତ କରିବା ଉଦ୍ଦେଶ୍ୟରେ ସୋମବଂଶୀ ମହାରାଜ ଯଯାତିଙ୍କ ସମୟରୁ ପରିତ୍ୟକ୍ତ ଶ୍ରୀମନ୍ଦିରର ନିର୍ମାଣକାର୍ଯ୍ୟ ସମ୍ପନ୍ନ କଲେ । ଏହି ବିରାଟ ମନ୍ଦିର ପାଇଁ ଯେଉଁ ଅପାର ଧନ ବିନିଯୋଗ ହୋଇଥିଲା, ତାହା ତାଙ୍କର ପରରାଷ୍ଟ୍ର ବିଜୟରୁ ସମ୍ପାଦିତ ବିପୁଳ ଅର୍ଥହିଁ କାରଣ ବୋଲି ମନେହୁଏ । ଆମ୍ଭ ମତରେ ଖ୍ରୀଷ୍ଟୀୟ ୧୧୧୧ କିମ୍ବା ୧୧୧୨ରେ ଉତ୍କଳ ଜୟକରି ଅଳ୍ପ କେତେକ ବର୍ଷ ପରେହିଁ ମନ୍ଦିର ନିର୍ମାଣ କାର୍ଯ୍ୟରେ ସେ ହସ୍ତକ୍ଷେପ କରିଥିଲେ । ତାଙ୍କ ବଂଶର ପରବର୍ତ୍ତୀ ରାଜାମାନେ ଯେଉଁ ତାମ୍ରଶାସନ ଦାନ କରିଯାଇଛନ୍ତି ସେଥିରେ ବର୍ଣ୍ଣିତ ପ୍ରଶସ୍ତି ଶ୍ଲୋକମାନଙ୍କ ମଧ୍ୟରୁ ନିମ୍ନୋକ୍ତ ଶ୍ଲୋକଟି ପ୍ରଣିଧାନଯୋଗ୍ୟ—

ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିସ୍ତୁ ସର୍ବା ଦିଶଃ
ଶ୍ରୋତ୍ରେ ନେତ୍ରଯୁଗଂ ରବୀନ୍ଦୁଯୁଗଳଂ—
ମୂର୍ଦ୍ଧାପି ଚ ଦ୍ୟୌରସୌ ।
ପ୍ରାସାଦଂ ପୁରୁଷୋତ୍ତମସ୍ୟ
ନୃପତେ କୋ ନାମକର୍ତ୍ତୁଂ କ୍ଷମଃ ।
ତସ୍ୟେତ୍ୟାଦ୍ୟନୃପୈରୁପେକ୍ଷିତମୟଂ
ଚକ୍ରେଽଥ ଗଙ୍ଗେଶ୍ୱରଃ ॥

ଅର୍ଥାତ୍, ଯେଉଁ ଶ୍ରୀମନ୍ଦିରର ପାଦଦ୍ୱୟ ସମଗ୍ର ଧରାପୃଷ୍ଠୋପରେ ସୁବିସ୍ତୀର୍ଣ୍ଣ, ନାଭିମଣ୍ଡଳ ଅନ୍ତରୀକ୍ଷ ପରି ପ୍ରସାରିତ, ଶ୍ରବଣ ଯୁଗଳ ଦିଗମାନଙ୍କପରି ବିସ୍ତୀର୍ଣ୍ଣ,

ନେତ୍ରଦ୍ୱୟ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ପରି ପ୍ରଦୀପ୍ତ, ପୁଣି ମୂର୍ତ୍ତି ନ୍ୟାୟଧର୍ମଙ୍କ ଆକାଶପରି ନିର୍ମଳ, ଏପରି ଯେଉଁ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ, ତାଙ୍କ ପାଇଁ ପୂର୍ବରୁ ଉପେକ୍ଷିତ ହୋଇଥିବା ସୁବିଶାଳ ମନ୍ଦିରର କାର୍ଯ୍ୟ ସମ୍ପନ୍ନ କରିବାକୁ ଗଙ୍ଗେଶ୍ୱର ଅର୍ଥାତ୍ ଚୋଡଗଙ୍ଗଙ୍କ ବ୍ୟତୀତ ଅନ୍ୟ କେଉଁ ରାଜା ବା ସମର୍ଥ ହୋଇ ପାରନ୍ତେ ? ବର୍ତ୍ତମାନ ପ୍ରଶ୍ନ ହେଉଛି, ୧୧୪୮ ଖ୍ରୀଷ୍ଟାବ୍ଦରେ (ଶକାବ୍ଦ ୧୧୨୦) ରାଜରାଜଦେବ ୩ୟଙ୍କ ଦାସଗୋବାରୁ ପ୍ରାପ୍ତ ତାମ୍ରଶାସନରେ ଉପରୋକ୍ତ ଶ୍ଳୋକଟି ରହିଥିବାରୁ ସେ ମନ୍ଦିର କାର୍ଯ୍ୟର ପୂର୍ଣ୍ଣତା ଉପରୋକ୍ତ ସମୟ ପୂର୍ବରୁହିଁ ସାଧିତ ହୋଇଥିଲା । ଏଣୁ ଶ୍ରୀମନ୍ଦିର ନିର୍ମାଣର ମହାଗୌରବ ପରବର୍ତ୍ତୀ ରାଜା ଅନଙ୍ଗଭୀମଙ୍କୁ ଦେବା ସମୀଚୀନ ନୁହେଁ । ଅନଙ୍ଗଭୀମଙ୍କ 'ନଗରୀ' ତାମ୍ରଶାସନ ୧୨୩୦ ଖ୍ରୀଷ୍ଟାବ୍ଦରେ ଖୋଦିତ ହୋଇ, ସେଥିରେ ଯେଉଁ ଜଗନ୍ନାଥଙ୍କ କଥା ଉଲ୍ଲେଖ ରହିଛି, ତାହା ପୁରୀ ଜଗନ୍ନାଥଙ୍କ ପ୍ରତି ପ୍ରଯୁଜ୍ୟ ହୋଇ ନ ପାରେ—ଏ ଦୃଷ୍ଟିରୁ ବିଚାର କଲେ ମାଦଳାପାଞ୍ଜି ବର୍ଣ୍ଣିତ କିମ୍ବଦନ୍ତୀ ସମ୍ଭବତଃ ୨ୟ ଅନଙ୍ଗଭୀମ (୧୨୧୧-୧୨୩୮)ଙ୍କ ସମୟରେ ମନ୍ଦିରର ପୂଜା ଓ ପରିଚାଳନାର ବ୍ୟବସ୍ଥାକୁ ନେଇ ସୃଷ୍ଟି ହୋଇଥିଲା ।

ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀର ପ୍ରାନ୍ତଭାଗରେ ଭାରତରେ ଗୋଟିଏ ବିରାଟ ଧର୍ମ ବିପ୍ଳବ ଦେଖାଗଲା । ରାମାନୁଜଙ୍କ ପ୍ରବର୍ତ୍ତିତ ବିଶିଷ୍ଟାଦ୍ୱୈତମତ ସେତିକିବେଳେ ପ୍ରାଧାନ୍ୟ ବିସ୍ତାର କରି ବହୁ ରାଜପରିବାରଙ୍କୁ ସେହି ଧର୍ମପ୍ରତି ଆକୃଷ୍ଟ କରିଥିଲା । ସେତେବେଳେ ଚୋଡଗଙ୍ଗ ଏବଂ ତାଙ୍କ ପରବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନେ "ପରମ ବୈଷ୍ଣବ" ଉପାଧି ଗ୍ରହଣ କରିଥିବା ପ୍ରମାଣ ମିଳେ । ଠିକ୍ ସେତିକି-ବେଳେ ଜଗନ୍ନାଥ ମନ୍ଦିରର ଭିତ୍ତିସ୍ଥାପନ ହୋଇ ଉତ୍କଳର ଜାତୀୟଦେବତା ରୂପେ ତାଙ୍କପ୍ରତି ରାଜାର ଭକ୍ତି ଓ ସମ୍ମାନ ପ୍ରଦର୍ଶିତ ହେବାରୁ ବହୁ ଦୂର ଦେଶରୁ ଆଗତ ଯାତ୍ରୀମାନଙ୍କର ସମାଗମ ହେତୁ ମନ୍ଦିର ବ୍ୟବସ୍ଥାରେ ଯେଉଁ ଶୃଙ୍ଖଳା ରକ୍ଷା କରିବାର ବ୍ୟବସ୍ଥା ଗ୍ରହଣ କରାଗଲା, ତାହା ସଙ୍ଗେ ଓଡ଼ିଶାର ଗୋଟିଏ ରାଜନୈତିକ ସଂସ୍କାର ଭିତ୍ତି ପତନ ହୁଏ । ଏହି ସଂସ୍ଥାଟି ସେତେବେଳେ ଓଡ଼ିଶାର ଅର୍ଥନୈତିକ ଓ ରାଜନୈତିକ ଦୃଢ଼ତା ସମ୍ପାଦନ କରିଥିବାର ପ୍ରମାଣ ମିଳେ । ମହାରାଜା ଅନଙ୍ଗଭୀମ ନିଜର ସୂକ୍ଷ୍ମ ବୁଦ୍ଧି ପ୍ରୟୋଗ କରି ତାଙ୍କ ରାଜନୀତି ସଙ୍ଗେ ଧର୍ମନୀତି ଏବଂ ଅର୍ଥନୀତିକୁ ଏପରି କୌଶଳରେ ସଂଶ୍ଳିଷ୍ଟ କରିଥିଲେ ଯେ, ଓଡ଼ିଶାର ବହିଃଶତ୍ରୁ ଏ ଦେଶ ଆକ୍ରମଣ କରିବାକୁ ଆଦୌ ସମର୍ଥ ହେଲେ ନାହିଁ । ସେହି ସମୟର ଇତିହାସ ପ୍ରତି ଧ୍ୟାନଦେଲେ ଆମେ ଦେଖି ପାରିବୁ ଯେ, ପଶ୍ଚିମ ଓ ଦକ୍ଷିଣ ଦିଗରୁ ଯଥାକ୍ରମେ ହୈହୟବଂଶୀୟ ଏବଂ ଚାଳୁକ୍ୟ ବଂଶୀୟ

ରାଜାମାନେ ଘନ ଘନ ଆକ୍ରମଣ କରି ଓଡ଼ିଶାର ଉପାନ୍ତ ଅଞ୍ଚଳରେ ବିଦ୍ରୋହ ସୃଷ୍ଟି କରୁଥିଲେ । ଠିକ୍ ସେହି ସମୟରେ ସମଗ୍ର ବଙ୍ଗଦେଶ ବିଧର୍ମୀ ପଠାଣମାନଙ୍କ ଶାସନାଧୀନ ଥିଲା । ସେମାନେ ମଧ୍ୟ ଓଡ଼ିଶାର ପୂର୍ବୋତ୍ତର ସୀମାରେ ବିପ୍ଳବ ସୃଷ୍ଟି କରୁଥିବାରୁ ଏ ରାଜ୍ୟର ସ୍ଥାୟିତ୍ୱ ଓ ସ୍ୱାଧୀନତା ପ୍ରତି ଘୋର ବିପଦ ଦେଖାଦେଲା । ଏପରି ଚତୁର୍ଦ୍ଦିଗରେ ଶତ୍ରୁସମାକ୍ରାନ୍ତ ସାମ୍ରାଜ୍ୟକୁ ନିରାପଦ ରଖିବାପାଇଁ ମହାରାଜା ଅନଙ୍ଗଭୀମ ସମ୍ଭବତଃ ହଠାତ୍ ଘୋଷଣା କଲେ ଯେ, "ଉତ୍କଳର ସମ୍ରାଟ ସ୍ୱୟଂ ପୁରୁଷୋତ୍ତମଦେବ । ସେ ନିଜେ ତାଙ୍କର ପୁତ୍ରତୁଲ୍ୟ ଜଣେ ପ୍ରତିନିଧିମାତ୍ର ।" ସେହିଦିନଠାରୁ ପୁରୁଷୋତ୍ତମଙ୍କ ଅଙ୍କ ହିଁ ଓଡ଼ିଶାରେ ସର୍ବତ୍ର ପ୍ରଚଳିତ ହେଲା । ଏ ଦେଶଟି ଭଗବାନଙ୍କ ସମ୍ପତ୍ତି; ଏ ଦେଶର ରାଜା ସ୍ୱୟଂ ଶ୍ରୀଜଗନ୍ନାଥ; ତେଣୁ ଏ ଦେଶ ଆକ୍ରମଣ କରିବା ଘୋର ପାପ କର୍ମ, ଏହି ଜ୍ଞାନ ହୈହୟ ଓ ଚାଲୁକ୍ୟ ବଂଶୀୟ ହିନ୍ଦୁ ରାଜାମାନଙ୍କ ମନରେ ଉଦ୍ରେକ ହେଲା । ଫଳରେ ଓଡ଼ିଶାର ପଶ୍ଚିମ ଓ ଦକ୍ଷିଣାଞ୍ଚଳ ନିରାପଦ ହେବାରୁ ଅନଙ୍ଗଭୀମ ତାଙ୍କର ସମସ୍ତ ସୈନ୍ୟ-ସାମନ୍ତ ଓ ସମର ବିଶାରଦମାନଙ୍କୁ ପୂର୍ବୋତ୍ତର ସୀମାରେ ହିଁ ସ୍ଥାପିତ କଲେ । ତେଣୁ ଶତଚେଷ୍ଟା ସତ୍ତ୍ୱେ ବଙ୍ଗଳାର ପଠାଣମାନେ ଏ ଦେଶ ଆକ୍ରମଣ କରିବାକୁ ଅପାରଗ ହେଲେ । ଏ ଅବସ୍ଥା ବହୁକାଳ ପର୍ଯ୍ୟନ୍ତ ରହିଥିବାରୁ ଉତ୍କଳ ବହିଃଶତ୍ରୁମାନଙ୍କ କବଳରୁ କେବଳ ଉଦ୍ଧାର ହୋଇ ନଥିଲା ବରଂ ଯେଉଁ ପଡ଼ୋଶୀ ଦେଶରେ ହିନ୍ଦୁମାନେ ନିଜର ଧର୍ମ ଓ ସମ୍ମାନ ସୁରକ୍ଷା କରିବାକୁ ସମର୍ଥ ହେଉ ନ ଥିଲେ, ସେମାନଙ୍କୁ ମଧ୍ୟ ଏଠାରେ ନିରାପଦରେ ରହିବାକୁ ସ୍ଥାନ ମିଳିଥିଲା । ବହୁ ପଣ୍ଡିତ, ଜ୍ଞାନୀ ଓ ଧର୍ମପ୍ରାଣବ୍ୟକ୍ତି ବିଭିନ୍ନ ଦେଶରୁ ଉଠିଆସି ଓଡ଼ିଶାରେ ସ୍ଥାୟୀ ଭାବରେ ବସବାସ କରିବା ହେତୁ ଏ ଦେଶର ସାଂସ୍କୃତିକ ଉନ୍ନତି ଯଥେଷ୍ଟ ପରିମାଣରେ ବର୍ଦ୍ଧିତ ହେଲା ।

ଶ୍ରୀମନ୍ଦିରରେ ଯେଉଁ "ପଣ୍ଡା-ନିଯୋଗ" ରହିଛି, ସେ ସମ୍ବନ୍ଧେ ଯଦି ବିଚାର କରାଯାଏ, ତାହେଲେ ଜଣାଯିବ ଯେ, ଏଥିରେ ଗୋଟିଏ ପ୍ରଚ୍ଛନ୍ନ ରାଜନୈତିକ ଉଦ୍ଦେଶ୍ୟ ରହିଥିଲା । ପଣ୍ଡାମାନଙ୍କୁ ଭାରତର ବିଭିନ୍ନ ଅଞ୍ଚଳରେ ପ୍ରତିପତ୍ତି ବିସ୍ତାର କରିବା କ୍ଷମତା ଦେଇ ମହାରାଜା ଅନଙ୍ଗଭୀମ ସେମାନଙ୍କୁ ମହାପାତ୍ର ବା ମନ୍ତ୍ରୀ ଉପାଧିରେ ଭୂଷିତ କରିଥିଲେ । ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ଭାରତର ବିଭିନ୍ନ ଅଞ୍ଚଳରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ସେବକ ବା ପଣ୍ଡାମାନଙ୍କ ପ୍ରତିନିଧି ସଂସ୍ଥାପିତ ହୋଇ ପ୍ରତ୍ୟେକ ଦେଶରେ ଉତ୍କଳବାସୀ ଏବଂ ଶ୍ରୀଜଗନ୍ନାଥଙ୍କ ମହିମା ଘୋଷଣା କରୁଥିଲେ । ଏହିପରି ଭକ୍ତିମୂଳକ ପ୍ରଚାର ସଙ୍ଗେ ଉତ୍କଳବାସୀମାନଙ୍କ ପ୍ରତି ଗଭୀର ଭକ୍ତି ଓ ସମ୍ମାନ ହିନ୍ଦୁମାନଙ୍କ ମଧ୍ୟରେ ସୃଷ୍ଟି କରାଗଲା । କେବଳ

ହେଉଛି ନୁହେଁ, ବିଭିନ୍ନ ଦେଶର ରାଜନୈତିକ ଓ ସାମାଜିକ ତଥ୍ୟ ଆଣିଦେବା କାର୍ଯ୍ୟ ମଧ୍ୟ ସେହି ପଣ୍ଡା ଅଧୀନସ୍ଥ କର୍ମଚାରୀମାନଙ୍କଦ୍ୱାରା ସମ୍ଭବ ହେଉଥିଲା । ବିଦେଶରୁ ସମାଗତ ଯାତ୍ରୀମାନେ ଏ ଦେଶରେ ବିପୁଳ ଧନସମ୍ପଦ ବିତରଣ କରିଯାଉଥିଲେ । ଜଗନ୍ନାଥଙ୍କ ମନ୍ଦିରରେ ମହାପ୍ରସାଦ ଓ କୈବଲ୍ୟ ବିକ୍ରିଠାରୁ ଆରମ୍ଭ କରି ସାଧାରଣ ବେତ, ସୂତାର ମାଳା, ଦସ୍ତୁଣା ଓ ପୁଷ୍ପମାଳା ଜଗନ୍ନାଥଙ୍କ ନାମରେ ନାମିତ କରି ବ୍ୟବସାୟ ସୂତ୍ରରେ ଯେଉଁ ବିପୁଳ ଅର୍ଥ ସଂଗୃହୀତ ହେଉଥିଲା, ତାହା ମଧ୍ୟ ସେହି ପଣ୍ଡା ଓ ସେବକମାନଙ୍କ ଜୀବିକା ନିର୍ବାହରେ ଯଥେଷ୍ଟ ସାହାଯ୍ୟ କରୁଥିଲା । ଏପରି ଗୋଟିଏ ଅଦ୍ଭୁତ ଧର୍ମସଂସ୍ଥା ଭାରତର ଅନ୍ୟ କୌଣସି ଅଞ୍ଚଳରେ ଦେଖିବାକୁ ମିଳେ ନାହିଁ । ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ପ୍ରଚାର କରିବା ଉଦ୍ଦେଶ୍ୟରେ ବହୁ ଗ୍ରନ୍ଥ ଏ ଦେଶରେ ପ୍ରଣୀତ ହୋଇ ଜାତୀୟ ସାହିତ୍ୟକୁ ଯଥେଷ୍ଟ ସମୃଦ୍ଧ କରି ପାରିଛି । ଶ୍ରୀଜଗନ୍ନାଥଙ୍କୁ ଜଣେ ସମ୍ରାଟ ରୂପେ ଏ ଦେଶବାସୀ ଯେଉଁ ସମ୍ମାନ ଦେଇଥିଲେ ସେଥିର ସାର୍ଥକତା ରାଜନୈତିକ କ୍ଷେତ୍ରରେ କେତେଦୂର ସାଧିତ ହୋଇଥିଲା, ତାହା ଗୋଟିଏ ପ୍ରଧାନ ବିଚାରଯୋଗ୍ୟ ବିଷୟ । କାଞ୍ଚିରାଜାଙ୍କ ବିପକ୍ଷରେ ଯେତେବେଳେ ଏ ଦେଶର ରାଜା ଯୁଦ୍ଧ ଘୋଷଣା କରନ୍ତି, ତତ୍ପୂର୍ବରୁ ସର୍ବତ୍ର ପ୍ରଚାର କରିଦିଆଗଲା ଯେ ସ୍ୱୟଂ ଜଗନ୍ନାଥ ଯୋଦ୍ଧୃ ବେଶରେ କଳା ଓ ଧଳା ଘୋଡ଼ାରେ ଚଢ଼ି ଅସ୍ତ୍ରଶସ୍ତ୍ର ସହ ସୈନ୍ୟମାନଙ୍କ ପୁରୋଭାଗରେ ଯାତ୍ରା କରୁଛନ୍ତି । ଏହି ସମ୍ବାଦ ପାଇ କାଞ୍ଚିରାଜା ଏବଂ ତାଙ୍କର ସୈନ୍ୟସାମନ୍ତଙ୍କ ମନରେ କେତେଦୂର ଭୀତି ସଞ୍ଚାର ହୋଇଥିବ, ତାହା କଳ୍ପନା କରାଯାଇ ପାରେ । ସାଧାରଣତଃ ଧର୍ମବିଶ୍ୱାସ ଓ ଦୈବୀଶକ୍ତିର ପ୍ରଭାବ ପ୍ରତି ଯେଉଁ ସମୟରେ ଲୋକଙ୍କ ଗଭୀର ଆସ୍ଥା ଓ ବିଶ୍ୱାସ ରହୁଥିଲା, ସେତେବେଳେ ଏପରି ପ୍ରଚାର ନିଶ୍ଚୟ କାର୍ଯ୍ୟକାରୀ ହେବା ସମ୍ଭବ । ପ୍ରାଚୀନ ଧର୍ମଶାସ୍ତ୍ରମାନଙ୍କରେ ଉଲ୍ଲେଖ ଥିଲା ଯେ, ବିନ୍ଧ୍ୟର ଦକ୍ଷିଣଭାଗ ଆର୍ଯ୍ୟମାନଙ୍କ ବାସ ପକ୍ଷେ ଅପବିତ୍ର; ସେଠାକୁ ଯାତ୍ରା କରିବା ବ୍ରାହ୍ମଣ ଓ ଉଚ୍ଚଶ୍ରେଣୀସ୍ଥ ହିନ୍ଦୁ ଜାତି ପକ୍ଷରେ ନିଷିଦ୍ଧ । ତେଣୁ ବହୁକାଳ ପର୍ଯ୍ୟନ୍ତ ଏ ଦେଶକୁ ଉଚ୍ଚଶ୍ରେଣୀସ୍ଥ ପଣ୍ଡିତ ଓ ଜ୍ଞାନୀ ଲୋକେ ଆର୍ଯ୍ୟାବର୍ତ୍ତରୁ ଉଠି ଆସିବାକୁ କୁଣ୍ଠାବୋଧ କରୁଥିଲେ । କିନ୍ତୁ ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ ପରେ ବୈଦେଶିକମାନଙ୍କ ଆଗମନ ଏବଂ ହିନ୍ଦୁଧର୍ମର ପ୍ରତିକୂଳ ଆକ୍ରମଣ ହେତୁ ବାଧ୍ୟହୋଇ ବହୁସଂଖ୍ୟକ ବ୍ରାହ୍ମଣ ଓ ପଣ୍ଡିତ ନିଜପଦ ସ୍ଥାନମାନଙ୍କୁ ଛାଡ଼ିଯାଇ ବସବାସ ସ୍ଥାପନ କଲେ । ଠିକ୍ ସେତିକିବେଳେ ଶ୍ରୀଜଗନ୍ନାଥଙ୍କ ବିରାଟ ମନ୍ଦିର ନିର୍ମିତ ହେବାରୁ ଉତ୍କଳ ଗୋଟିଏ ପବିତ୍ର ଧାମରେ ପରିଣତ ହେଲା । ଏଣୁ ମାହାତ୍ମ୍ୟମାନଙ୍କରେ ଏଥିର ପ୍ରଶଂସା ଯଥେଷ୍ଟ ପରିମାଣରେ ଦେଖିବାକୁ ମିଳେ । ସେଥିରେ ଲେଖାଅଛି—

"ପୁରୁଷୋତ୍ତମାଖ୍ୟ ପରମଂ କ୍ଷେତ୍ରଂନାସ୍ତି ତ୍ରୈଲୋକ୍ୟ ମଣ୍ଡଳେ"

ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ପ୍ରାରମ୍ଭରେ ଭାରତରେ ନୀଳାଚଳଧାମର ମାହାତ୍ମ୍ୟ ଏତେଦୂର ପ୍ରଚାରିତ ହୋଇଥିଲା ଯେ, ତତ୍କାଳୀନ ହିନ୍ଦୁ ଜଗତରେ ଦୁଇଟି ମାତ୍ର ପ୍ରସିଦ୍ଧ ତୀର୍ଥକ୍ଷେତ୍ର ମହାପୁଣ୍ୟ ସ୍ଥାନ ରୂପେ ଲୋକେ ଗ୍ରହଣ କରୁଥିଲେ । ସେଥିମଧ୍ୟରୁ ସିନ୍ଧୁକୂଳବର୍ତ୍ତୀ ପୁରୁଷୋତ୍ତମଧାମ ବିଷ୍ଣୁକ୍ଷେତ୍ର ରୂପେ ଏବଂ ଉତ୍ତର ଭାରତୀୟ ବାରାଣସୀ ଓ ତ୍ରିବେଣୀ ଶିବକ୍ଷେତ୍ର ରୂପେ ଗୃହୀତ ହୋଇଥିଲା । ତତ୍କାଳୀନ ଜଣେ ବଙ୍ଗଦେଶୀୟ ସେନବଂଶୀୟ ରାଜା ବିଶ୍ୱରୂପ ସେନଙ୍କ ମଦନପଡାରୁ ପ୍ରାପ୍ତ ଗୋଟିଏ ତାମ୍ରଶାସନରେ ନିମ୍ନୋକ୍ତ ଶ୍ଳୋକ ଏଥିର ଜ୍ୱଳନ୍ତ ଉଦାହରଣ ରୂପେ ଉଲ୍ଲେଖ କରାଯାଇପାରେ—

ବେଲାୟାଂ ଦକ୍ଷିଣାବ୍ଧେର୍ମୁଷଲଧର-ଗଦାପାଣିସଂବାସବେଦ୍ୟାଂ
କ୍ଷେତ୍ରେ ବିଶ୍ୱେଶ୍ୱରସ୍ୟ ସ୍ଫୁରଦସି ବରଣାଶ୍ଳେଷ ଗଙ୍ଗୋର୍ମିଗର୍ଭେ ;
ତୀରୋତ୍ସଙ୍ଗେ ତ୍ରିବେଣ୍ୟାଃ କମଳଭବ-ମଖାରମ୍ଭ ନିର୍ବ୍ୟାଜପୂତେ
ଯେନୋଚ୍ଚୈର୍ଯଜ୍ଞଯୂପୈଃ ସହ ସମରଜୟସ୍ତମ୍ଭମାଲାନ୍ୟଧାୟି ॥

ବଳରାମ ଓ ଜଗନ୍ନାଥଙ୍କ ମଧ୍ୟରେ ଏକାନଂଶା ରୂପିଣୀ ସୁଭଦ୍ରାଙ୍କର ଅବସ୍ଥିତି ଦେବୀ ଭାଗବତ, ହରିବଂଶ ପ୍ରଭୃତି ପୁରାଣରେ ଉଲ୍ଲେଖ ଅଛି । ଏସମ୍ବନ୍ଧରେ ବିଚାର କରିବାକୁ ଯାଇ କେହି କେହି ତାନ୍ତ୍ରିକ ମତାବଲମ୍ବୀ ଭୈରବଙ୍କୁ ଜଗନ୍ନାଥ ରୂପେ ଏବଂ ବିମଳାଙ୍କୁ ତାଙ୍କ ଶକ୍ତିରୂପେ ଗ୍ରହଣ କରିଅଛନ୍ତି ।

ଉତ୍କଳେ ଯଜ୍ଞଦେଶସ୍ତୁ ବିରଜାକ୍ଷେତ୍ର ଉଚ୍ୟତେ ।
ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ॥

ଅର୍ଥାତ୍ ଯେଉଁ ଉତ୍କଳସ୍ଥ କ୍ଷେତ୍ର ମଧ୍ୟରେ ବିରଜା ଗୋଟିଏ ତନ୍ତ୍ର-ପୀଠ ଏବଂ ଯେଉଁଠାରେ ଜଗନ୍ନାଥ ସ୍ୱୟଂ ଭୈରବ ଓ ତାଙ୍କ ମହାଦେବୀ ବିମଳା ବିଦ୍ୟମାନ । ଦେବୀ ଭାଗବତରେ ଆହୁରିମଧ୍ୟ ବର୍ଣ୍ଣିତ ଅଛି ଯେ—

"ଗୟାୟାଂ ମଙ୍ଗଳାପ୍ରୋକ୍ତା ବିମଳା ପୁରୁଷୋତ୍ତମେ ।"

କିନ୍ତୁ ବିମଳା ଶକ୍ତି ସ୍ୱରୂପିଣୀ ଦେବୀରୂପେ ପ୍ରତିଷ୍ଠା ଲାଭ କରି ସୁଦ୍ଧା ମୂଳ ମନ୍ଦିରଠାରୁ ସ୍ୱତନ୍ତ୍ର ସ୍ଥାନରେ ପ୍ରତିଷ୍ଠାଲାଭ କରିଥିବାରୁ ଏବଂ ସୁଭଦ୍ରାରୂପିଣୀ ଅନ୍ୟ ଏକ ଶକ୍ତି (ଯେ କି ଏକାନଂଶା ରୂପେ ପରିଚିତା) ମୂଳ ମନ୍ଦିରରେ ସ୍ଥାପିତ ହୋଇଥିବାରୁ, ତାନ୍ତ୍ରିକବିଧି ସଙ୍ଗେ ଭାଗବତର ଯେଉଁ ସମ୍ମିଶ୍ରଣ ହରିବଂଶ ପ୍ରଭୃତି ବୈଷ୍ଣବ ଗ୍ରନ୍ଥରେ ପ୍ରଦର୍ଶିତ ହୋଇଅଛି, ତାହା ସ୍ପଷ୍ଟତଃ ପ୍ରମାଣିତ ହୁଏ । ସଂକ୍ଷେପରେ କହିବାକୁ ଗଲେ, ସମସ୍ତ ମତବାଦକୁ ନେଇ ଜଗନ୍ନାଥଙ୍କ ପ୍ରତିଷ୍ଠା ମୂଳରେ ସର୍ବଧର୍ମ ସମନ୍ୱିତ ଭାବ ପ୍ରକାଶ କରି ଉତ୍କଳର ଗଙ୍ଗବଂଶୀୟ ରାଜାମାନେ ଅତ୍ୟନ୍ତ କୌଶଳରେ ତାଙ୍କ ସାମ୍ରାଜ୍ୟରେ ତଥା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଦେଖା ଦେଇଥିବା ଧର୍ମାନ୍ଧତା ଓ ଧର୍ମବିଦ୍ୱେଷ ଦୂର କରିବାକୁ ସମର୍ଥ ହୋଇଥିଲେ ।



# ଶ୍ରୀମନ୍ଦିରର ଶିଳ୍ପକଳାରେ ବୈଷ୍ଣବ ସଂସ୍କୃତି

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ କେବେ ଓ କେଉଁ ରାଜାଙ୍କ ରାଜତ୍ୱ କାଳରେ ଶ୍ରୀମନ୍ଦିର ନିର୍ମିତ ହୋଇ ସେଥିରେ ଶ୍ରୀପୁରୁଷୋତ୍ତମ, ଶ୍ରୀସଙ୍କର୍ଷଣ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଦାରୁମୂର୍ତ୍ତି ପ୍ରତିଷ୍ଠିତ ହେଲେ, ଏ ସମ୍ପର୍କରେ ବହୁ ପଣ୍ଡିତଙ୍କ ମଧ୍ୟରେ ଭିନ୍ନ ଭିନ୍ନ ମତ ସୃଷ୍ଟି ହୋଇଛି । କିନ୍ତୁ ଏଥିର ପ୍ରକୃତ ରହସ୍ୟ ଅଦ୍ୟାପି ଅନ୍ଧକାର ଗର୍ଭରେ ଲୁଚି ରହିଛି । ତେଣୁ ଏଥିର ଅଧିକ ଗବେଷଣା ଆବଶ୍ୟକ ।

ଖ୍ରୀଷ୍ଟୀୟ ପ୍ରାୟ ୯ମ ଶତାବ୍ଦୀ ପୂର୍ବରୁ ମହାପ୍ରଭୁ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ସିନ୍ଧୁକୂଳରେ ପ୍ରତିଷ୍ଠିତ ହୋଇଥିଲେ । ଏ ପ୍ରସଙ୍ଗ ମୁରାରୀଙ୍କ ରଚିତ 'ଅନର୍ଘରାଘବ-ନାଟକ'ରେ ସ୍ପଷ୍ଟ ଲେଖା ହୋଇଛି । କିନ୍ତୁ ପରବର୍ତ୍ତୀ କାଳରେ, ସମ୍ଭବତଃ ଖ୍ରୀ: ୧୧ଶ ଶତାବ୍ଦୀରେ ସେହି "ତ୍ରିଭୁବନ ମୌଳିମଣ୍ଡନ-ମହାନୀଳମଣି" ବିଗ୍ରହଙ୍କୁ ସୋମବଂଶୀ ମହାରାଜା ଯଯାତିକେଶରୀ ସେଠାରୁ ଉଠାଇ ପଶ୍ଚିମ ଦିଗରେ ଥିବା ଏକ ଉଚ୍ଚ ନିରାପଦ ସ୍ଥାନରେ କ୍ଷୁଦ୍ର ମନ୍ଦିରଟିଏ ଗଠନ କରାଇ ସେଥିରେ ସ୍ଥାପନ କଲେ ! ଏବେ ସେହି କ୍ଷୁଦ୍ର ମନ୍ଦିରଟି ମୁକ୍ତିମଣ୍ଡପର ପଶ୍ଚିମରେ ଅବସ୍ଥିତ ଓ ନୃସିଂହମନ୍ଦିର ନାମରେ ଆଖ୍ୟାତ ହେଉଛି । ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷରୁ ସେଥିରୁ ଚୂନ ପଲସ୍ତରା ଛଡାଇଲା ପରେ ସେଥିର ଭିତ୍ତିଗାତ୍ରରେ ବହୁ ସଂଖ୍ୟାରେ ପ୍ରସ୍ତରଲିପି ଖୋଦିତ ହୋଇଥିବା ଦେଖାଯାଏ । କିନ୍ତୁ ସେଥିମଧ୍ୟରୁ କେତେକ ଲିପି ମନ୍ଦିରର ଉତ୍ତର ଓ ଦକ୍ଷିଣ ପାର୍ଶ୍ୱ କାନ୍ଥରେ ଭାଙ୍ଗି ଯାଇଥିବା ଅଂଶରେ ସଂଲଗ୍ନ ଥିବା ଦେଖାଯାଏ । ଭଗ୍ନ ଅଭିଲେଖର କିଛି ଅଂଶ ମଧ୍ୟ ଭିତ୍ତି ଗାତ୍ରରେ ଯୋଡ଼ିଦେଇ ଦେଉଳଟି ପୁନଃ ନିର୍ମାଣ କରାଯାଇଥିବା ପରିଲକ୍ଷିତ ହୁଏ । ଏହା ବ୍ୟତୀତ ପୂର୍ବଦିଗର କାନ୍ଥରୁ ପଶ୍ଚିମଦିଗର କାନ୍ଥ ପର୍ଯ୍ୟନ୍ତ ପ୍ରଦର୍ଶିତ ହୋଇଥିବା ବିଷ୍ଣୁଙ୍କ ଦଶଅବତାରଙ୍କ ମଧ୍ୟରୁ ପର୍ଯ୍ୟାୟକ୍ରମେ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ ଓ ବାମନଙ୍କ ମୂର୍ତ୍ତିଗୁଡ଼ିକ ନିୟମାନୁସାରେ ରହିଥିଲେ ହେଁ ପରବର୍ତ୍ତୀ ପର୍ଶୁରାମ, ଶ୍ରୀରାମ, ବଳରାମ, ବୁଦ୍ଧ ଓ କଲ୍କୀଙ୍କ ମୂର୍ତ୍ତିଗୁଡ଼ିକ ଭିତ୍ତିଗାତ୍ରରେ ବିପର୍ଯ୍ୟସ୍ତ ଭାବେ ଏଣେତେଣେ ସଂଲଗ୍ନ ହୋଇଥିବା ଦେଖାଯାଏ । ଏଥିରୁ ସ୍ପଷ୍ଟ ଜଣାଗଲା ଯେ, କୌଣସି ଏକ ସମୟରେ ମନ୍ଦିରର ପଶ୍ଚିମ ଏବଂ ଉତ୍ତରପାର୍ଶ୍ୱ କାନ୍ଥ ଭାଙ୍ଗି ଯାଇଥିଲା । ସେଥିର ସଂସ୍କାର କାର୍ଯ୍ୟରେ ଯେଉଁ

ଶିଳ୍ପୀମାନେ ନିଯୁକ୍ତ ହୋଇଥିଲେ ସେମାନେ ଅଭିଲେଖଗୁଡ଼ିକର ଉପାଦେୟତା କିମ୍ବା ଦଶାବତାର ବିଗ୍ରହର କ୍ରମପର୍ଯ୍ୟାୟ ସମ୍ପର୍କୀୟ ବିଷୟ ଜାଣି ନଥିବାରୁ ଏପରି ବିପର୍ଯ୍ୟୟ ସୃଷ୍ଟି ହୋଇଥିଲା ।

ସେହି ମନ୍ଦିରରୁ ପ୍ରାପ୍ତ ଯେଉଁ ଲିପିଗୁଡ଼ିକ ପାଠଯୋଗ୍ୟ ବୋଲି ମୁଁ ମନେକରୁଛି ତାହା ମୋର Inscriptions of Puri Temples and Origin of Sri Purusottama-Jagannatha" ନାମକ ପୁସ୍ତକର ଦୁଇ ଭାଗରେ ପ୍ରତ୍ୟେକ ଶିଳାଲେଖର ପାଠ ଉଦ୍ଧାର କରି ସେଥିର ସାରାଂଶମାନ ସେଥିରେ ଆଲୋଚନା କରିଛି । ଏହା ଫଳରେ ଶ୍ରୀପୁରୁଷୋତ୍ତମଙ୍କ ସମ୍ପର୍କରେ କେତେକ ନୂତନ ତଥ୍ୟ ଆବିଷ୍କୃତ ହୋଇପାରିଛି । ଯଥା—

(୧) ନୃସିଂହ ମନ୍ଦିରରେ ପୂର୍ବେ ଯେଉଁ ମୂର୍ତ୍ତି ସ୍ଥାପିତ ହୋଇଥିଲେ ସେ ନିଶ୍ଚିତଭାବେ "ମହାନୀଳମଣି" ସଦୃଶ ପ୍ରସ୍ତର ନିର୍ମିତ ହସ୍ତପଦଯୁକ୍ତ ଶ୍ରୀପୁରୁଷୋତ୍ତମ ନାମରେ ପୂଜିତ ହେଉଥିଲେ, କାରଣ ତାଙ୍କ ନାମରେ ସେଠାରେ ଦାନସାମଗ୍ରୀ ସମର୍ପଣ କରୁଥିଲେ ।

(୨) ଉତ୍ତର-ପୂର୍ବ ଭାରତରୁ ଓ ଦକ୍ଷିଣାତ୍ୟରୁ ଭକ୍ତମାନେ ଆସି ଯେଉଁ ଦାନସାମଗ୍ରୀ ମହାପ୍ରଭୁଙ୍କ ସମ୍ମୁଖରେ ଦେଉଥିଲେ, ସେମାନଙ୍କର ନାମ ଓ ଦାନ-ସମସ୍ତ ପ୍ରଚଳିତ ଉତ୍ତର-ପୂର୍ବ ଭାରତୀୟ ଲିପିରେ ଏବଂ ଦକ୍ଷିଣ-ଭାରତର ପ୍ରଚଳିତ ଲିପିରେ ପ୍ରସ୍ତର ଗାତ୍ରରେ ଖୋଦିତ ହେଉଥିଲା ।

(୩) ନୃସିଂହ ମନ୍ଦିରରେ ଖୋଦିତ ଅଭିଲେଖଗୁଡ଼ିକ ମଧ୍ୟରେ ସର୍ବପ୍ରଥମ ଅଭିଲେଖ ୧୧୧୩ ଖ୍ରୀଷ୍ଟାବ୍ଦରେ ଖୋଦିତ ହୋଇଥିଲା ।

ଓଡ଼ିଶାରେ ଗଙ୍ଗବଂଶର ଇତିହାସରୁ ଜଣାଯାଇଛି ଯେ ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ଉତ୍କଳର ସୋମବଂଶୀୟ ମହାରାଜା କର୍ଣ୍ଣଦେବଙ୍କୁ ଯୁଦ୍ଧରେ ନିହତ କରି ୧୧୧୨ ଖ୍ରୀଷ୍ଟାବ୍ଦରେ କଳିଙ୍ଗ ସଙ୍ଗେ ଉତ୍କଳକୁ ଏକତ୍ରିତ କରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାରିତ କଲେ । ତାଙ୍କର ପୈତୃକ ରାଜଧାନୀ ବଂଶଧାରା ନଦୀତଟରୁ ଉଠାଇ ନେଇ ମହାନଦୀ ତଟସ୍ଥ ବାରାଣସୀ-କଟକରେ ସ୍ଥାପନ କଲେ । ସେ ଉତ୍କଳ ଜୟ କରିସାରି ପଶ୍ଚିମଦିଗରେ ଥିବା ବେଙ୍ଗି (ତେଲଙ୍ଗାନା)ର ଚାଲୁକ୍ୟ ବଂଶୀୟ ରାଜାଙ୍କୁ ଯୁଦ୍ଧରେ ଜୟ କରି ଉଭୟ ରାଜ୍ୟର ରାଜଭଣ୍ଡାରରୁ ପ୍ରଚୁର ପରିମାଣ ଧନରତ୍ନ (ଲକ୍ଷ୍ମୀ) ପାଇଥିଲେ । ତାଙ୍କ କୋର୍ନି ତାମ୍ରଶାସନରେ ନିମ୍ନୋକ୍ତ ଶ୍ଲୋକଟି ଲେଖାହୋଇଛି—

"ପୂର୍ବସ୍ୟାଂ ଦଶି ପୂର୍ବମୁତ୍କଳ ପତିଂ ରାଜ୍ୟେ ନିଧାୟାଦ୍‌ଭୁତଂ"
ପଶ୍ଚାତ୍ ପଶ୍ଚିମଦିକ୍‌ତଟେ ବିଘଟିତଂ ବେଙ୍ଗୀଶମପ୍ୟେତୟୋଃ
ଲକ୍ଷ୍ମୀ-ବନ୍ଧନମାଳିକାମିବ ଜୟ ଶ୍ରୀତୋରଣସ୍ତମ୍ଭୟୋ-
ବଧ୍ନାତି ସ୍ମ ସମିଦ୍ଧ କୀର୍ତ୍ତିବିଭବଃ ଶ୍ରୀଗଙ୍ଗଚୂଡ଼ାମଣିଃ ।"

ନୃସିଂହ ମନ୍ଦିରରୁ ପ୍ରାପ୍ତ ଗୋଟିଏ ଦୀର୍ଘ ଶିଳାଲେଖରେ ଚୋଡ଼ଗଙ୍ଗଙ୍କ ପ୍ରଶସ୍ତିରେ ଲେଖାଅଛି ଯେ, ଅଶେଷ ବିଦ୍ୟାରେ ସେ ପାରଦର୍ଶିତା ଲାଭ କରିଥିଲେ—

"ଶ୍ରୀପରମମାହେଶ୍ୱର ପରମଭଟ୍ଟାରକ ଗଙ୍ଗାକୁଳତିଳକ-ତ୍ରିକଳିଙ୍ଗାଧିପତି, ବିଗ୍ରହାରଦଳଦର୍ପଦଳନଃ ପରମେଶ୍ୱର ସଖ୍ୟ, ସାଙ୍ଖ୍ୟୋପକାଂକ୍ଷ ଗଣ ପ୍ରାତର୍ବନ୍ଦ୍ୟ ବିପକ୍ଷବାଦ ବାରଣକେଶରୀ ତ୍ରିକଲ୍ପ ମୀମାଂସା କଳାକଲାପ ବିଚରଣାନଭିନବ ଜଗଦେକପୂର୍ଣ୍ଣାବତାରଃ; ସକଳ କାବ୍ୟକଳା ମଧୁରାଳାପ କଳାପରୂପ (ନିପୁଣ) କପଟ କାଳିଦାସ ରାଜନୀତି ନବ ନିରୂପଣ କଳିକାଳାବତାର ବର୍ଣ୍ଣାଶ୍ରମୋଶ୍ରିରକୋପାଧି ବିହିତ ଶ୍ରୌତ-ସ୍ମାର୍ତ୍ତ-କର୍ମାଦୃଷ୍ଟଦିକ୍‌ପାଳ ତନୟାବତାର ପ୍ରଷ୍ଟତୋଜଜ୍ୱଳ କୀର୍ତ୍ତି ସମ୍ପାଦନ ଦାଶରଥି ଭଗୀରଥ୍ୟାଦି ମହାକ୍ଷତ୍ରୀଞ୍ଜ ସୀମାନ୍ତନ୍ୟା ମକରଧ୍ୱଜେତର ନବ ତରୁଣୀ ତନୁତ ଶ୍ରୀଚୋଡ଼ଗଙ୍ଗଦେବଃ ମହାପତି……

(I. P. T. OPJ : Vol. 1, p.52)

ଏହି ଦୀର୍ଘ ପ୍ରଶସ୍ତିରୁ ସ୍ପଷ୍ଟ ଜଣାଯାଉଛି ଯେ, ଚୋଡ଼ଗଙ୍ଗ କେବଳ ବୀର ନଥିଲେ, ସେ ବହୁ ଶାସ୍ତ୍ରରେ ଯଥା, ତ୍ରିକଲ୍ପ ମୀମାଂସାଦି ବୈଦିକ ଧର୍ମଶାସ୍ତ୍ର ତଥା ସଂସ୍କୃତ କାବ୍ୟ ସାହିତ୍ୟରେ ମହାକବି କାଳିଦାସଙ୍କ ପରି ପ୍ରତିଭା ଲାଭ କରିଥିଲେ । (ତେଣୁ ଯେଉଁ ଶତ୍ରୁ ରାଜାମାନଙ୍କୁ ଜୟ କରି ସେମାନଙ୍କୁ ରାଜକୋଷରୁ ପ୍ରଚୁର ପରିମାଣରେ ଧନରତ୍ନ ଅପହରଣ କରିଥିଲେ, ତାହା ଶାସ୍ତ୍ରୋକ୍ତ ନିୟମାନୁସାରେ ନିଜ ଭଣ୍ଡାରକୁ ନ ନେଇ ଧର୍ମ କୀର୍ତ୍ତିରେ ବ୍ୟୟ କରିଥିଲେ । ସୁତରାଂ ଆମେ ମନେକରୁଛୁ ଯେ ସେହି ଧନ ହିଁ ପୁରୀର ବଡ଼-ଦେଉଳ ନିର୍ମିତ କାର୍ଯ୍ୟରେ ଲଗାଇଥିବା ସମ୍ଭବ । ତେଣୁ ତାଙ୍କର ପଣନାତି ରାଜରାଜଦେବ (ତୃତୀୟ)ଙ୍କ ତାମ୍ର ଶାସନରେ ଲେଖା ହୋଇଥିଲା :

ଚୋଡ଼ଗଙ୍ଗଦେବ ବଡ଼ଦେଉଳ ନିର୍ମାଣ ପୂର୍ବରୁ ନୃସିଂହ ମନ୍ଦିରରେ ତିନମୂର୍ତ୍ତି, ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର-ସଙ୍କର୍ଷଣ ଓ ଦେବୀ ସୁଭଦ୍ରାଙ୍କୁ ସ୍ଥାପନ କରିଥିଲେ । କିନ୍ତୁ ପୂର୍ବରୁ ସେହି କ୍ଷୁଦ୍ର ମନ୍ଦିରଟି ଶ୍ରୀପୁରୁଷୋତ୍ତମଙ୍କ ପାଇଁ

ଉଦ୍ଦିଷ୍ଟ ଥିଲା । ସେଥିର ଆକାର ପ୍ରକାରରୁ ଏହାହିଁ ଜଣାଯାଉଛି । କିନ୍ତୁ କୌଣସି ଅଜ୍ଞାତ କାରଣରୁ ସେହି ମନ୍ଦିରରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମ ଭଗବାନଙ୍କୁ ସ୍ଥାନାନ୍ତରିତ କରି ଦିଆଯାଇଥିଲା ।

ବଡ଼ଦେଉଳରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପ୍ରତିଷ୍ଠା କରିବା ସକାଶେ ଅସ୍ଥାୟୀ ଭାବେ ଚୋଡ଼ଗଙ୍ଗ ଉକ୍ତ ଭଗବାନଙ୍କୁ ପ୍ରଥମେ ନୃସିଂହ ମନ୍ଦିରରେ ସ୍ଥାପନ କରିଥିଲେ । ସେତେବେଳେ ତାଙ୍କର ବୟସ ଅନ୍ୟୁନ ୭୫ ବର୍ଷ ହୋଇଥିବା ସମ୍ଭବ ।

ଏଠାରେ ଉଲ୍ଲେଖ କରିବା ଆବଶ୍ୟକ ଯେ, ଚୋଡ଼ଗଙ୍ଗଙ୍କ ପିତା ରାଜ-ରାଜ ଦେବ (୧ମ)ଙ୍କ ମୃତ୍ୟୁ ବେଳକୁ ସେ ପାଞ୍ଚବର୍ଷର ଶିଶୁ ହୋଇଥିଲେ, ତଥାପି କଳିଙ୍ଗ ରାଷ୍ଟ୍ରକୁ ଅରାଜକ ନ କରିବା ଦୃଷ୍ଟିରୁ ତାଙ୍କର ମାମୁଁ ରାଜେନ୍ଦ୍ର ଚୋଡ଼ ୧୦୭୭ ଖ୍ରୀଷ୍ଟାବ୍ଦ (୯୯୯ ଶକାବ୍ଦରେ) ଚୋଡ଼ଗଙ୍ଗଙ୍କ ରାଜ୍ୟାଭିଷେକ କଳିଙ୍ଗନଗରରେ ସମ୍ପନ୍ନ କରି ବିଶିଷ୍ଟ ପଣ୍ଡିତମାନଙ୍କୁ ଅଣାଇ ତାଙ୍କ ଶିକ୍ଷାର ବ୍ୟବସ୍ଥା କରିଥିଲେ ଏବଂ ନିଜେ ମାମୁଁ (ରାଜେନ୍ଦ୍ର ଚୋଡ଼) କଳିଙ୍ଗର ଶାସନକାର୍ଯ୍ୟ ନିର୍ବାହ କରୁଥିଲେ । ଚୋଡ଼ଗଙ୍ଗଙ୍କ ଯୌବନ କାଳରେ କଳିଙ୍ଗର ଚତୁର୍ଦ୍ଦିଗ ଶତ୍ରୁ ରାଜାମାନେ ସୀମାନ୍ତ ଅଞ୍ଚଳରେ ଉପଦ୍ରବ ସୃଷ୍ଟି କରିବାରୁ ସେ କଳିଙ୍ଗର ସାମରିକ ପରାକ୍ରମ ଯଥେଷ୍ଟ ପରିମାଣରେ ଉନ୍ନତ କରି ପ୍ରଥମେ ପୂର୍ବାଞ୍ଚଳର ସୋମବଂଶୀ ରାଜା କର୍ଣ୍ଣଦେବଙ୍କୁ ଉତ୍କଳରେ ପରାହତ କରି ଉତ୍କଳ ଓ କଳିଙ୍ଗକୁ ଏକତ୍ରିତ କରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟ ସୃଷ୍ଟି କଲେ । ଏହା ୧୧୧୨ ଖ୍ରୀଷ୍ଟାବ୍ଦରେ ସମ୍ପନ୍ନ ହୋଇଥିଲା । ତେଣୁ ସେତେବେଳକୁ ଚୋଡ଼ଗଙ୍ଗଙ୍କର ବୟସ ଥିଲା ୪୦ ବର୍ଷ । ଏହା ପରେ ସେ ବେଙ୍ଗିର ରାଜା ବିକ୍ରମାଦିତ୍ୟଙ୍କୁ ଯୁଦ୍ଧରେ ଜୟ କରିଥିବା ଜଣାଯାଇଛି । ଅନ୍ତତଃ ୧୧୩୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ରରେ ବଡ଼ଦେଉଳ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇନଥିଲା । ତଥାପି ପୁରୀ ଏକ ପୁଣ୍ୟକ୍ଷେତ୍ର ହୋଇଥିବାରୁ ଶ୍ରୀପୁରୁଷୋତ୍ତମଙ୍କ ଦର୍ଶନ ପାଇଁ ବିଭିନ୍ନ ଅଞ୍ଚଳରୁ ଭକ୍ତମାନେ ଏଠାକୁ ଆସୁଥିଲେ । ଉଦାହରଣସ୍ୱରୂପ, ୧୧୩୭ ଖ୍ରୀଷ୍ଟାବ୍ଦରେ ଖୋଦିତ ଗୋବିନ୍ଦପୁର ଅଭିଲେଖଟି ପ୍ରକାଶ କରିବାକୁ ଯାଇ ପ୍ରଫେସର କିଲ୍‌ହର୍ଣ୍ଣ (Prof. Kielhorn) କହିଛନ୍ତି ଯେ, ସେହି ଅଭିଲେଖରେ ଲେଖାଅଛି, ମନୋରଥ ନାମକ ଜଣେ ଭକ୍ତ ପୁରୁଷୋତ୍ତମକ୍ଷେତ୍ରକୁ ଯାତ୍ରା କଲାବେଳେ ସେଠାରେ ଶ୍ରୀପୁରୁଷୋତ୍ତମଙ୍କ ଭଗବାନଙ୍କୁ ଯେ ଦର୍ଶନ କରିଥିଲେ ସିନା ବଡଦେଉଳର ଅସ୍ତିତ୍ୱ ସେଥିରୁ ଜଣାଯାଉନଥିଲା । (J. A. S. B. I. Vol. LXVII, P. 330) ଏହି ମତକୁ ଆମେ ଠିକ୍ ବୋଲି କହିପାରୁ । ମନମୋହନ ଗାଙ୍ଗୁଲି ମଧ୍ଯ ତାଙ୍କର "Orissa And Her Remains" ନାମକ ପୁସ୍ତକରେ ଏକଥା

ଲେଖିବାକୁ ଯାଇ ପ୍ରଫେସର କାଲ୍ ହର୍ଣ୍ଣଙ୍କ ମତକୁ ସମର୍ଥନ କରିଅଛନ୍ତି । ସେତେବେଳେ ଅର୍ଥାତ୍ ଖ୍ରୀ: ୧୧୩୭ରେ ଚୋଡ଼ଗଙ୍ଗଙ୍କ ବୟସ ନିଶ୍ଚିତରୂପେ ୭୫ ବର୍ଷ ହୋଇଥିଲା । ତେଣୁ ସେ କୌଣସି ସାମରିକ ବ୍ୟାପାରରେ ଲିପ୍ତ ନହୋଇ ରାଜସଭାରେ ପଣ୍ଡିତମାନଙ୍କ ସଙ୍ଗେ ଶାସ୍ତ୍ରାଳାପ କରୁଥିବା ସମ୍ଭବ । ପଣ୍ଡିତମାନଙ୍କ ମଧ୍ୟରେ ବାଦବିବାଦରେ ମଧ୍ୟ ସେ ଅଂଶଗ୍ରହଣ କରୁଥିବା ପ୍ରସଙ୍ଗ ତାଙ୍କ ପ୍ରଶସ୍ତିରେ ସୂଚିତ ହୋଇଛି ।

ବଡ଼ଦେଉଳ ନିର୍ମାଣ ସକାଶେ କର୍ମକାର କୁଳସୁନ୍ଦ ପଲ୍ଲି ନାମକ ଉତ୍କଳର ଜଣେ ଶିଳ୍ପୀକୁ ଭାର ଦିଅଥିଲେ । ବୋଧହୁଏ ପଲ୍ଲିଙ୍କର ପିତୃପିତାମହ ସୋମବଂଶୀ ମହାରାଜାଙ୍କ ନିର୍ଦ୍ଦେଶରେ ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିର ରେଖଦେଉଳ ଛାଞ୍ଚାରେ ଗଠନ କରିଥିଲେ । ତେଣୁ ତାଙ୍କର ବଂଶଧର ପଲ୍ଲି ସେମାନଙ୍କ ପଦାଙ୍କ ଅନୁସରଣ କରି ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ନିମନ୍ତେ ସେପରି ଏକ ରେଖଦେଉଳ ପୁରୀରେ ନିର୍ମାଣ କରିବାକୁ ଗୋଟିଏ ନକ୍ସା ପ୍ରସ୍ତୁତ କଲେ । ତାଙ୍କର ସେହି ନକ୍ସା ପ୍ରଥମେ ରାଜା ଓ ତାଙ୍କ ଗୁରୁଙ୍କ ଦ୍ୱାରା ସମର୍ଥିତ ହେବାରୁ ରାଜାଙ୍କଠାରୁ ସେ ବୋଧହୁଏ ଶାଢୀ ପାଇ ଉତ୍ସାହିତ ହୋଇଥିବେ । ତେଣୁ ନୃସିଂହ ମନ୍ଦିରସ୍ଥ ଶ୍ରୀପୁରୁଷୋତ୍ତମଙ୍କ ପାଇଁ ଏକ ଅଖଣ୍ଡ ଦୀପ ଜାଳିବା ସକାଶେ ଆବଶ୍ୟକୀୟ ପରିମାଣରେ ତୈଳ ଯୋଗାଇ ଦେବାକୁ ମାସ ପ୍ରତି ୭ପୁଟି ଧାନ ବ୍ୟୟ କରି ଗୋଟିଏ ଶିଳାଲେଖ ସେହି ମନ୍ଦିରଗାତ୍ରରେ ଖୋଦିତ କରାଇଥିଲେ "(ନବ) ପୁରୁଷୋତ୍ତମ ନିଲସ୍ୟସ୍ୟ କରମକାର କୁଳସୁନ୍ଦ ପଲ୍ଲି ପଞ୍ଚବିଂଶ ବୃଦ୍ଧି ଘଟିକା ତୈଲେନ ମାସଂ ପ୍ରତି + + + ସପ୍ତତି ପୁଟି ଧାନ୍ୟ ବ୍ୟୟ ଇତି ।"

**(I. P. T.O.P.J. Vol. II to be published)**

ଏହି ଶିଳାଲେଖଟି ତତ୍କାଳୀନ ଉତ୍କଳରେ ବ୍ୟବହୃତ ଲିପିରେ ଖୋଦିତ ହୋଇଥିବାରୁ ସେ (ପଲ୍ଲି) ନିଶ୍ଚିତରୂପେ ଉତ୍କଳ ନିବାସୀ ବୋଲି କୁହାଯାଇ-ପାରିବ ।

ଉପରେ କୁହାଯାଇଛି ଯେ, ଚୋଡ଼ଗଙ୍ଗଦେବ ୭୫ ବର୍ଷ ବୟସରେ ଯୁଦ୍ଧାଦି ରାଜନୈତିକ ବ୍ୟାପାରକୁ ଅବ୍ୟାହତ ନେଇ ସ୍ୱୀୟ ରାଜଧାନୀ ବାରାଣସୀକଟକରେ ବହୁ ପଣ୍ଡିତମାନଙ୍କ ସଙ୍ଗେ ଶାସ୍ତ୍ରାଳାପରେ ସମୟ ଅତିବାହିତ କରୁଥିଲେ । ସେହି ପଣ୍ଡିତମାନଙ୍କ ମଧ୍ୟରେ ଶୈବ, ଶାକ୍ତ, ବୈଷ୍ଣବଧର୍ମାବଲମ୍ବୀ ପଣ୍ଡିତମାନେ ରହି କିଏ ଅଦ୍ୱୈତବାଦ, କିଏ ବିଶିଷ୍ଟାଦ୍ୱୈତବାଦ, କିଏ ବା ଦ୍ୱୈତଦ୍ୱୈତବାଦରେ ବାଦବିବାଦ ସୃଷ୍ଟି କରୁଥିଲେ । ତେଣୁ ସୁପଣ୍ଡିତ ରାଜା ଚୋଡ଼ଗଙ୍ଗ ସେମାନଙ୍କୁ

ପ୍ରତିଷ୍ଠା କରିବା ପରାଣେ ଶ୍ରୀକ୍ଷେତ୍ରରେ ଶ୍ରୀପୁରୁଷୋତ୍ତମ (ବିଷ୍ଣୁ)ଙ୍କ ସଙ୍ଗେ ସଙ୍କର୍ଷଣ (ଶିବ) ଓ ଶକ୍ତି ସ୍ୱରୂପିଣୀ ସୁଭଦ୍ରାଙ୍କୁ ଏକତ୍ରିତ କରି ନୃସିଂହ ମନ୍ଦିରରେ ସ୍ଥାପନ କରିଥିବା ସମ୍ଭବ । ସେଠାରେ ଗୋଟିଏ ଅଭିଲେଖରେ ସେହି ତ୍ରିମୂର୍ତ୍ତିଙ୍କ ନାମ ଖୋଦିତ ହୋଇଥିବା ଦେଖାଯାଏ ।

(I. P. T.O. P.J. Vol. II)

ଏହା କରିସାରି ସେ (ଚୋଡ଼ଗଙ୍ଗ) ରାଜନୀତିରୁ ଅବ୍ୟାହତି ନେଇ ଶ୍ରୀକ୍ଷେତ୍ରରେ ବାସକରିବା ଉଦ୍ଦେଶ୍ୟରେ ତାଙ୍କ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବଙ୍କର ମୂର୍ଦ୍ଧାଭିଷେକ ଶ୍ରୀସର୍ବଲୋକନାଥ (ଶ୍ରୀପୁରୁଷୋତ୍ତମ ? )ଙ୍କ ସମ୍ମୁଖରେ ସମ୍ପନ୍ନ କରିଥିଲେ । ଏହା ୧୦୬୪ ଶକାବ୍ଦ (ଖ୍ରୀ: ୧୧୪୨)ରେ ହୋଇଥିଲା । ସେତେବେଳକୁ ଚୋଡ଼ଗଙ୍ଗଙ୍କ ବୟସ ଥିଲା ୭୦ବର୍ଷ । ଗଙ୍ଗ ରାଜାମାନଙ୍କ ପ୍ରଶସ୍ତିରେ ଏ ସମ୍ପର୍କରେ ଗୋଟିଏ ଶ୍ଳୋକ ଲେଖାଅଛି—

"ବେଦର୍ତ୍ତୁ-ବ୍ୟୋମ-ଚନ୍ଦ୍ରପ୍ରମିତ ଶକସମାଃ ପ୍ରାପ୍ତ କାଳେ ଧନେଶେ
ଚାପସ୍ଥେଽନ୍ୟଗ୍ରହୌଘେ ବଳବତି ରିପୁଷୁ ପ୍ରକ୍ଷୟଂ ପ୍ରାପ୍ତବତ୍ସୁ ।
ଅସ୍ମିନ୍ ମୂର୍ଦ୍ଧାଭିଷିକ୍ତେ ନୃପବରତନୟେ ସର୍ବ-ଲୋକୈକନାଥେ
ଶ୍ରୀମତ୍କାମାର୍ଣ୍ଣବେଶେ ଜଗଦଭବଦିଦଂ ତତ୍ତଦାନନ୍ଦପୂର୍ଣ୍ଣମ୍" ॥

ଅର୍ଥାତ୍‌-୧୦୬୪ ଶକାବ୍ଦ (ଖ୍ରୀ: ୧୧୪୨) ଧନୁ ମାସରେ ସର୍ବଲୋକୈକନାଥଙ୍କ କ୍ଷେତ୍ରରେ କାମାର୍ଣ୍ଣବଙ୍କର ମୂର୍ଦ୍ଧାଭିଷେକ ସମ୍ପନ୍ନ ହୋଇଥିଲା । ସେତେବେଳେ ବଳବାନ୍ ଶତ୍ରୁରାଜାମାନେ ସମସ୍ତେ କ୍ଷୟପ୍ରାପ୍ତ ହୋଇଥିଲେ ଓ ରାଜ୍ୟରେ ଶାନ୍ତି ଓ ଆନନ୍ଦ ପୂର୍ଣ୍ଣ ହୋଇଥିଲା ।

ନୃସିଂହ ମନ୍ଦିରର ଯେଉଁ ଅଭିଲେଖରେ ପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରାଙ୍କ ନାମ ଖୋଦିତ ହୋଇଛି, ସେଥିରେ ମାଳାକାର ଜୟରାଜଙ୍କ ନାମ ମଧ୍ୟ ଖୋଦିତ ହୋଇଥିବା ଦେଖାଯାଏ । ସେହି ମାଳାକାର ଜୟରାଜଙ୍କ ନାମ ଅନ୍ୟ ଏକ ଲିପିରେ କାମାର୍ଣ୍ଣବଙ୍କ ୫ମ ଅଙ୍କରେ ଖୋଦିତ ହୋଇଥିବା ଦେଖାଯାଏ । ତେଣୁ ପଞ୍ଚ (ଶିଳ୍ପୀ), ଯେ କି ଶ୍ରୀମନ୍ଦିର ଗଠନ କାର୍ଯ୍ୟରେ ଅଗ୍ରଣୀ ଥିଲେ ସେ ନିଶ୍ଚିତଭାବେ ଚୋଡ଼ଗଙ୍ଗଙ୍କ ବୃଦ୍ଧ ବୟସରେ ଜୀବିତ ଥିଲେ । ଚୋଡ଼ଗଙ୍ଗ ଶ୍ରୀକ୍ଷେତ୍ରରେ ୭୦ ବର୍ଷ ବୟସରେ ରହି ଶ୍ରୀମନ୍ଦିର କାର୍ଯ୍ୟରେ ପଞ୍ଚଙ୍କୁ ନିଯୁକ୍ତ କରିଥିବାରୁ ଏବଂ ପ୍ରାୟ ୭୫ ବା ୭୬ ବୟସରେ ସେ ଇହଧାମ ତ୍ୟାଗ କରିଥିବାରୁ ଏତେ ବଡ଼ ବ୍ୟୟବହୁଳ ମନ୍ଦିର ତାଙ୍କ ଜୀବିତକାଳ ମଧ୍ୟରେ ପୂର୍ଣ୍ଣ ହୋଇଥିବ

ବୋଲି ଆମେ ବିଶ୍ୱାସ କରିପାରିବୁ ନାହିଁ । ତଥାପି ବଡ଼ଦେଉଳ ନିର୍ମାଣ ସକାଶେ ସେଥିର ପ୍ରାଥମିକ ଶୁଭକର୍ମସବୁ ଚୋଡ଼ଗଙ୍ଗ ସମ୍ପାଦନ କରି ନିର୍ମାଣ ପାଇଁ ଆବଶ୍ୟକ ଅର୍ଥ ନିଜ ପୁଅଙ୍କୁ ଅର୍ପଣ କରିଥିବା ସମ୍ଭବ ।

ଯେଉଁ କାଳମର ପଥରରେ ବଡ଼ଦେଉଳ ନିର୍ମିତ ହୋଇଛି, ସେପରି ପଥର ପୁରୀ ବା ସେଥିର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ମିଳେନାହିଁ । ବୋଧହୁଏ ସୁଦୂର ତାପଙ୍ଗ ପାହାଡ଼ରୁ ବଡ ବଡ ଚିମା ପଥରଖଣ୍ଡମାନ ହସ୍ତୀ ଦ୍ୱାରା ଅଣାଇ ପୁରୀରେ ପ୍ରଥମେ ଜମା କରି ରଖାଯାଇଥିଲା । ତା'ପରେ ମନ୍ଦିର ଯେଉଁଠାରେ ନିର୍ମାଣ କରାଯାଇଛି, ସେହି ସ୍ଥାନଟି ଓ ସେଥିର ଚତୁଃପାର୍ଶ୍ୱ ସୁଦୃଢ଼ କରାଯାଇଥିଲା । ଏ ସମସ୍ତ ଆୟୋଜନ ପରେ ଯଜ୍ଞାଦି କରି ମନ୍ଦିରର ଶୁଭ ଦିଆହେବା ବିଧି ସମ୍ପନ୍ନ ହୋଇଥିବା ସୁନିଶ୍ଚିତ । ଏ ସମସ୍ତ କାର୍ଯ୍ୟ ପାଇଁ ଅନ୍ୟୁନ ତିନିଚାରି ବର୍ଷ ବିତି ଯାଇଥିବ ।

ଅଭିଲେଖମାନଙ୍କରୁ ଜଣାଯାଇଛି ଯେ, କାମାର୍ଣ୍ଣବଙ୍କର ମୂର୍ଦ୍ଧାଭିଷେକ ୧୧୪୨ ଖ୍ରୀଷ୍ଟାବ୍ଦରେ ସମ୍ପନ୍ନ କରି ଚୋଡ଼ଗଙ୍ଗ ଆଉ ମାତ୍ର ୪।୫ ବର୍ଷ ଜୀବିତ ଥିଲେ । ୭୫ ବର୍ଷ ବୟସରେ ତାଙ୍କର ଦେହାନ୍ତ ହୋଇଥିଲା । ତାଙ୍କ ମୃତ୍ୟୁ ପରେ ଶତ୍ରୁ ରାଜାମାନେ ସାମ୍ରାଜ୍ୟର ସୀମାନ୍ତ ଅଞ୍ଚଳରେ ବିଦ୍ରୋହ ସୃଷ୍ଟି କଲେ । ପଶ୍ଚିମ-ଦିଗରୁ ରତ୍ନପୁରର ଚେଦୀବଂଶୀୟ ରାଜା ବାବଲ୍ଲଦେବଙ୍କର (ଖ୍ରୀ: ୧୧୬୦-୧୧୭୮)ଙ୍କର ମଲ୍ଲାର ଅଭିଲେଖ (ଖ୍ରୀ: ୧୧୬୭-୧୧୭୮)ରେ ଲେଖାଅଛି ।

"ତଦ୍‌ବଂଶେ ନୃପ ଚୋଡ଼ଗଙ୍ଗ ବିସରତ୍ତୁ ପ୍ରୌଢ଼ ପ୍ରତାପାନଳ
ଜ୍ୱାଳା ସଂତତି ଶାନ୍ତି ଚଣ୍ଡ ଜଳଦଃ ଶ୍ରୀରତ୍ନ ଦେବୋଽଭବତ୍‌" ॥

(E. I. Vol. I., P. 40)

ଅର୍ଥାତ୍‌ ସେହି ବଂଶରେ ରାଜା ଚୋଡ଼ଗଙ୍ଗ ଯେଉଁ ଜ୍ୱାଳାଗ୍ନି ଲଗାଇଥିଲେ ତାହା ନିର୍ବାପିତ କରିବାକୁ ପ୍ରବଳ ଘନ ମେଘମାଳା ପରି ଶ୍ରୀରତ୍ନଦେବ ସମର୍ଥ ହୋଇଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ଚୋଡ଼ଗଙ୍ଗଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ରତ୍ନପୁରର ରାଜା ରତ୍ନଦେବ ଗଙ୍ଗ ସାମ୍ରାଜ୍ୟର ପଶ୍ଚିମଦିଗରୁ ପ୍ରତିଶୋଧ ନେବାକୁ ଉଦ୍ୟତ ହେଲେ । ଏଣୁ କାମାର୍ଣ୍ଣବଙ୍କ ସୈନ୍ୟମାନେ ସେହି ସୀମାନ୍ତ ଅଞ୍ଚଳର ସୁରକ୍ଷା ସକାଶେ ନିଯୁକ୍ତ ହୋଇଥିଲେ । ଏପରି ପ୍ରେକ୍ଷୀରେ ବିଚାର କଲେ ସ୍ପଷ୍ଟ ଜଣାପଡୁଛି ଯେ, ଚୋଡ଼ଗଙ୍ଗଙ୍କ ମୃତ୍ୟୁ ପରେ ଶତ୍ରୁମାନଙ୍କ ଆକ୍ରମଣରୁ ଦେଶକୁ ରକ୍ଷାକରିବା ଉତ୍କଳର ମୁଖ୍ୟ କାର୍ଯ୍ୟ ହୋଇଥିଲା । ଫଳରେ ଶ୍ରୀମନ୍ଦିର ନିର୍ମାଣରେ ବାଧା ସୃଷ୍ଟି ହୋଇ ମନ୍ଦିର କାର୍ଯ୍ୟ ପୂର୍ଣ୍ଣ ହୋଇପାରି ନଥିଲା ।

ଖ୍ରୀ: ୧୨୩୦ ମସିହାରେ ମହାରାଜା ଅନଙ୍ଗଭୀମଦେବ (୩ୟ)ଙ୍କ ରାଜତ୍ୱ କାଳରେ ଶ୍ରୀମନ୍ଦିର ପ୍ରତିଷ୍ଠା ହୋଇଥିବା ପ୍ରସଙ୍ଗ ନଗରୀ ତାମ୍ରଶାସନରେ ଉଲ୍ଲେଖ ହୋଇଛି । କେହି କେହି ଐତିହାସିକ ସେହି ପ୍ରତିଷ୍ଠା କାର୍ଯ୍ୟ ବାରାଣସୀ କଟକରେ ନିର୍ମିତ ହୋଇଥିବା ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିର ବୋଲି କହନ୍ତି । କିନ୍ତୁ ସେହି ତାମ୍ରଶାସନର ପୂର୍ବାପର ସଙ୍ଗତିକୁ ମିଶାଇ ବିଚାର କଲେ ଜଣାଯିବ, ଯେଉଁ ପୁରୁଷୋତ୍ତମ ମନ୍ଦିର ପ୍ରତିଷ୍ଠା କରି ଅନଙ୍ଗଭୀମ ସେଥିରେ ତିନିମୂର୍ତ୍ତିଙ୍କୁ ସ୍ଥାପନ କରିଥିଲେ ଓ ବ୍ରାହ୍ମଣମାନଙ୍କୁ ଭୂଦାନ ଦେଇଥିଲେ ତାହା କଳ୍ପିତ ସିନ୍ଧୁକୂଳରେ ଥିବା ପୁରୁଷୋତ୍ତମ କ୍ଷେତ୍ରସ୍ଥ ଶ୍ରୀମନ୍ଦିର । ସେହି ମନ୍ଦିରର ପ୍ରତିଷ୍ଠା ପରେ ସୂର୍ଯ୍ୟ-ପରାଗ ହେବାରୁ ଅନଙ୍ଗଭୀମଦେବ (୩ୟ) ସମୁଦ୍ରକୂଳରେ ମଧ୍ୟ ବ୍ରାହ୍ମଣମାନଙ୍କୁ ଦାନଦେବା ପ୍ରସଙ୍ଗ ସେହି ତାମ୍ରଶାସନରେ ଲେଖାଅଛି । ଏ ସମସ୍ତ ଦାନକର୍ମ ପୁରୀରେ ସମ୍ପନ୍ନ କରିସାରି ଶେଷରେ ସେ ତାଙ୍କ ରାଜଧାନୀ ବାରାଣସୀ-କଟକକୁ ଯାଇ ସେଠାରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କ ପ୍ରୀତି ବର୍ଦ୍ଧନ ପାଇଁ ଆଶେ ଅନ୍ୟ କେତେକ ବ୍ରାହ୍ମଣଙ୍କୁ ମଧ୍ୟ ଭୂମିଦାନ କରିଥିଲେ ।

(E. I., Vol. XXVIII. PP, 235-353,)

ବର୍ତ୍ତମାନ ପ୍ରଶ୍ନ ହେଉଛି ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର (ଶଙ୍କର୍ଷଣ ଓ ଦେବୀ ସୁଭଦ୍ରାଙ୍କ ମୌଳିକ ମୂର୍ତ୍ତି ଚୋଡ଼ଗଙ୍ଗ କେଉଁ ପଦ୍ଧତି ଅନୁସାରେ ଗଠନ କରାଇ ପ୍ରଥମେ ନୃସିଂହ ମନ୍ଦିରରେ ସ୍ଥାପନ କରିଥିଲେ ? ପୂର୍ବରୁ କୁହାଯାଇଛି ଯେ, ବୈଷ୍ଣବ, ଶୈବ ଓ ଶାକ୍ତ ସମ୍ପ୍ରଦାୟମାନଙ୍କୁ ସନ୍ତୁଷ୍ଟ କରିବା ଲକ୍ଷ୍ୟରେ ସେହି ତିନିମୂର୍ତ୍ତିଙ୍କୁ ଏକତ୍ର ସ୍ଥାପନ କରିବା ଆବଶ୍ୟକ ହୋଇଥିଲା । ଆଉ ମଧ୍ୟ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତବାଦ, ରାମାନୁଜଙ୍କ ବିଶିଷ୍ଟାଦ୍ୱୈତବାଦ, ନିମ୍ବାର୍କଙ୍କ ଦ୍ୱୈତାଦ୍ୱୈତବାଦ ପ୍ରଭୃତି ଦାର୍ଶନିକ ପଦ୍ଧତିକୁ ଅନୁସରଣ କରୁଥିବା ପଣ୍ଡିତମାନେ ରାଜସଭାରେ ବହୁ ବାଦାନୁବାଦ ସୃଷ୍ଟି କରୁଥିବା ହେତୁ ସେଥିର ସମାଧାନ କରି ଚୋଡ଼ଗଙ୍ଗ ତିନିମୂର୍ତ୍ତିଙ୍କୁ ଏକତ୍ରରେ ସ୍ଥାପନ କରିବା ପଦ୍ଧତି ଅନୁସରଣ କଲେ । ଯେଉଁ ସମୟରେ ପଣ୍ଡିତମାନେ ଶାସ୍ତ୍ରୋକ୍ତ ପ୍ରମାଣ ବିନା ଧର୍ମକାର୍ଯ୍ୟରେ କୌଣସି ବ୍ୟତିକ୍ରମକୁ ସ୍ୱୀକାର କରୁନଥିଲେ, ସେହି ସମୟରେ ଉପରୋକ୍ତ ମୂର୍ତ୍ତିମାନଙ୍କୁ ଶାସ୍ତ୍ରୋକ୍ତ ମୂର୍ତ୍ତିତତ୍ତ୍ୱ ଅନୁସାରେ ହିଁ ଗଠିତ କରାଯାଇଥିଲା । ସେହି ଶାସ୍ତ୍ରଗୁଡ଼ିକ ହେଲା ; (୧) ବରାହମିହିରଙ୍କ 'ବୃହତ୍ ସଂହିତା (୨୪-୫୭). (୨) ମତ୍ସ୍ୟ ପୁରାଣ (୨୫) ଅଧ୍ୟାୟ, ୧୦ ଶ୍ଲୋକ), (୩) ଅଗ୍ନି ପୁରାଣ (୪୪ ଅଧ୍ୟାୟ, ୫୩ ଶ୍ଲୋକ), (୪) ପଦ୍ମପୁରାଣ ପାତାଳଖଣ୍ଡ (୭) ଅଧ୍ୟାୟ, ୧୬-୧୭ ଶ୍ଲୋକ), (୫) ସୂତ୍ରଧାର ମଣ୍ଡନଙ୍କ 'ମାନସାର' । ସେହି ଗ୍ରନ୍ଥମାନଙ୍କରେ ବିଷ୍ଣୁଙ୍କର ଚବିଶ ପ୍ରକାର

ମୂର୍ତ୍ତିଙ୍କ ନାମ ଓ ବର୍ଣ୍ଣନା ଉଲ୍ଲେଖ ଅଛି । ଯଥା. (୧) କେଶବ, (୨) ନାରାୟଣ, (୩) ମାଧବ, (୪) ଗୋବିନ୍ଦ, (୫) ବିଷ୍ଣୁ, (୬) ମଧୁସୂଦନ, (୭) ତ୍ରିବିକ୍ରମ, (୮) ବାମନ, (୯) ଶ୍ରୀଧର, ୧୦) ହୃଷୀକେଶ, (୧୧)ପଦ୍ମନାଭ, (୧୨) ଦାମୋଦର, (୧୩) ଶଙ୍କର୍ଷଣ, (୧୪) ବାସୁଦେବ, (୧୫) ପ୍ରଦ୍ୟୁମ୍ନ, (୧୬) ଅନିରୁଦ୍ଧ, (୧୭) ପୁରୁଷୋତ୍ତମ, (୧୮) ଅଧୋକ୍ଷଜ, (୧୯) ନରସିଂହ, (୨୦) ଅଚ୍ୟୁତ (୨୧) ଜନାର୍ଦ୍ଦନ, (୨୨) ଉପେନ୍ଦ୍ର, (୨୩) ହରି ଏବଂ (୨୪) ଶ୍ରୀକୃଷ୍ଣ । ଏହି ମୂର୍ତ୍ତିମାନଙ୍କୁ ଚିହ୍ନିତ କରିବାପାଇଁ ସେମାନେ ତାଙ୍କ ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା, ଓ ପଦ୍ମ ବିଭିନ୍ନ ହସ୍ତରେ ଭିନ୍ନ ଭିନ୍ନ ରୂପେ ଧାରଣ କରିଥିବା ପ୍ରଦର୍ଶିତ କରାଯାଇଛି । ଖ୍ରୀ: ୫ମ. ଶତାବ୍ଦୀରେ ବରାହମିହିରଙ୍କ ରଚିତ ଗ୍ରନ୍ଥରେ ଯେଉଁ ମୂର୍ତ୍ତିମାନଙ୍କ ସ୍ୱରୂପ ବର୍ଣ୍ଣିତ ହୋଇଥିଲା, ତାହାହିଁ ପରବର୍ତ୍ତୀ ପୁରାଣ ଓ ଗ୍ରନ୍ଥମାନଙ୍କରେ ଅବିକଳ ବର୍ଣ୍ଣିତ ହୋଇଥିବା ଦେଖାଯାଏ । ସୁତରାଂ ସେହି ମୂର୍ତ୍ତିତତ୍ତ୍ୱାନୁସାରେ ବିଷ୍ଣୁଙ୍କ ପ୍ରତିମାମାନ ବିଭିନ୍ନ ମନ୍ଦିରରେ ପ୍ରତିଷ୍ଠାଲାଭ କରିଥିଲେ । ଏଣୁ ଖ୍ରୀ: ୧୨ଶ ଶତାବ୍ଦୀରେ ଯେଉଁ ପୁରୁଷୋତ୍ତମ ଓ ଶଙ୍କର୍ଷଣ (ବଳଭଦ୍ର)ଙ୍କ ମୂର୍ତ୍ତି ଚୋଡ଼ଗଙ୍ଗଦେବ ନୃସିଂହ ମନ୍ଦିରରେ ସ୍ଥାପନ କରିଥିଲେ, ତାହା ନିଶ୍ଚିତ ଭାବେ ଶାସ୍ତ୍ରୋକ୍ତ ମୂର୍ତ୍ତି ହୋଇଥିବେ । ଚୋଡ଼ଗଙ୍ଗ ପରି ଜଣେ ସୁପ୍ରସିଦ୍ଧ ଶାସ୍ତ୍ରଜ୍ଞ ରାଜା, ଯେ କି ଶିଳ୍ପକଳା ମୀମାଂସାରେ ପାରଦର୍ଶିତା ଲାଭ କରିଥିଲେ, ସେ ତାଙ୍କର ପ୍ରତିଷ୍ଠିତ ବିଗ୍ରହମାନଙ୍କୁ ହସ୍ତପଦହୀନ କରି ଗଠନ କରାଇଥିଲେ ବୋଲି କହିବା ଆଦୌ ସଙ୍ଗତ ନୁହେଁ ।

ଖ୍ରୀ: ୨୧ଶ ଶତକ ପରେ 'ଭାଗବତ ପୁରାଣୋକ୍ତ କୃଷ୍ଣଙ୍କୁ ବୈଷ୍ଣବ ସମ୍ପ୍ରଦାୟ ରାଧାକୃଷ୍ଣ ଯୁଗଳ ରୂପରେ ଧ୍ୟାନ କରି ମଧ୍ୟ କୃଷ୍ଣଙ୍କୁ ଚତୁର୍ଭୁଜ ରୂପରେ ଧ୍ୟାନ କରୁଥିଲେ । ତେଣୁ ପରବର୍ତ୍ତୀ କାଳରେ ଶ୍ରୀଜଗନ୍ନାଥଙ୍କ ଦାରୁବିଗ୍ରହ-ପ୍ରତିଷ୍ଠାରେ ନିମ୍ନୋକ୍ତ ଧ୍ୟାନ ପୂର୍ବେ ପ୍ରଚଳିତ ହେଉଥିଲା—

"ନିଷ୍ଟାମ୍ବୁକଣ୍ଠ ସନ୍ନିଭଂ ଚତୁର୍ବାହୁଂ ସ୍ମିତାନନମ୍
ଲକ୍ଷ୍ମୀନିବାସସଂରମ୍ୟ କୋଡ଼ଦେଶଂ ମହେଶ୍ୱରମ୍ ॥
ଶଙ୍ଖଚକ୍ରଗଦାପଦ୍ମ ଧାରିଣଂ ବନମାଳିନମ୍
ପୀତଚେଳଧରଂ ଦେବଂ ଶ୍ରୀବତ୍ସକୌସ୍ତୁଭାନ୍ୱିତମ୍ ॥
ସ୍ତୂୟମାନମ୍ମୁନିଗଣୈ ର୍ଦେବୈର୍ବ୍ରହ୍ମ ପୁରୋ ଗମୈଃ
ଏବଂ ଧ୍ୟାତ୍ୱାର୍ଚ୍ଚକଃ ଶ୍ରୀମନ୍ ତନ୍ତ ଦାରୁସ୍ୱରୂପିଣମ୍" ॥

(ସ୍କନ୍ଦ ପୁରାଣ-ପୁରୁଷୋତ୍ତମ ମହାତ୍ମ୍ୟମ୍) ।

ବର୍ତ୍ତମାନ କଲୁ ଏହି ଧ୍ୟାନକୁ ବର୍ଜନ କରାଯାଇଛି । ନୃସିଂହ ମନ୍ଦିରରେ ପ୍ରତିଷ୍ଠା ଲାଭ କରିଥିବା ଚତୁର୍ଭୁଜ ବିଶିଷ୍ଟ ଶ୍ରୀପୁରୁଷୋତ୍ତମଙ୍କ ଦର୍ଶନ ପାଇଁ ବିଭିନ୍ନ ଅଞ୍ଚଳରୁ ଭକ୍ତମାନେ ଶ୍ରୀକ୍ଷେତ୍ରକୁ ଆସୁଥିଲେ । ନୃସିଂହ ମନ୍ଦିରର ଗୋଟିଏ ଶିଳାଲେଖରେ ଖୋଦିତ ଅଛି ଯେ କଳିଙ୍ଗର ମହାକବି ନାରାୟଣ ସ୍ୱମତିବର ୧୧୧୩ ଖ୍ରୀଷ୍ଟାବ୍ଦରେ ମହାଦ୍ୱାଦଶୀ (କାର୍ତ୍ତିକ-ଶୁକ୍ଳ ଦ୍ୱାଦଶୀ) ଦିନ ଶ୍ରୀପୁରୁଷୋତ୍ତମଙ୍କ ସମ୍ମୁଖରେ ଗୋଟିଏ ଅଖଣ୍ଡ ଦୀପ ସମର୍ପଣ କରିଥିଲେ ।

(I. P. T. O. P. J , Vol.I, PP. 16-17)

ଆମର ମନେହୁଏ ସେହି ମହାକବି ଉପାଧ୍ୟାୟ ନାରାୟଣ (ସୁଧୀବର) ବେଣୀ ସଂହାର ନାଟକର ରଚୟିତା ନାରାୟଣ ଭଟ୍ଟ ହୋଇଥିବେ । କାରଣ ଜୀବିତ କାଳ ସଙ୍ଗେ ଉକ୍ତ ଅଭିଲେଖର କାଳ ସମାନ ହୋଇଥିବା ସମ୍ଭବ । କେତେକ ପଣ୍ଡିତ ମନେକରନ୍ତି ତାଙ୍କର ଜୀବିତ କାଳ ବହୁ ପୂର୍ବବର୍ତ୍ତୀ ହୋଇଥିବ । ଏଣୁ ଏହା ଗବେଷଣା ସାପେକ୍ଷ । ସେ ତାଙ୍କ ନାଟକର ମଙ୍ଗଳାଚରଣ ଶ୍ଳୋକରେ ବର୍ଣ୍ଣନା କରିଛନ୍ତି, ରାସକ୍ରୀଡ଼ା ବେଳେ ଅଭିମାନିନୀ ରାଧା ଅନ୍ୟତ୍ର ପଳାଇବାରୁ କୃଷ୍ଣ ତାଙ୍କ ପଛରେ ଯାଇ ପ୍ରବୋଧ କରି ଫେରାଇଥିଲେ ।

ଏଠାରେ କହିବା ବାହୁଲ୍ୟ ଯେ, ଚୋଡ଼ଗଙ୍ଗଦେବ ୧୧୧୨ ଖ୍ରୀଷ୍ଟାବ୍ଦରେ ଉତ୍କଳ ଜୟ କଲାପରେ ତାଙ୍କ ସାଥିରେ ଦକ୍ଷିଣରୁ କେତେକ ବୈଷ୍ଣବଧର୍ମାବଲମ୍ବୀ କବି ଓ ପଣ୍ଡିତ ମଧ୍ୟ ଉତ୍କଳକୁ ଆସି ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ରକୁ ଯାତ୍ରା କରିଥିଲେ । ସେମାନଙ୍କ ମଧ୍ୟରେ ମହାକବି ନାରାୟଣ (ସୁଧୀବର) ସ୍ୱସ୍ତିକ ଆସିଥିବା ଦୁଇଟି ଶିଳାଲେଖରୁ ପ୍ରକଟିତ ହୋଇଛି । ସେହି ଶିଳାଲେଖର ସମୟ ୧୧୧୩ ଖ୍ରୀଷ୍ଟାବ୍ଦ, ଅର୍ଥାତ୍ ଚୋଡ଼ଗଙ୍ଗଙ୍କ ଉତ୍କଳ ଜୟର ପରବର୍ଷ । ସେତେବେଳେ ଶ୍ରୀପୁରୁଷୋତ୍ତମଙ୍କୁ ନିମ୍ବାର୍କପନ୍ଥୀମାନେ ଗୋପାଳକୃଷ୍ଣ ରୂପେ ଆରାଧନା କରୁଥିଲେ । ତେଣୁ ମହାକବି ନାରାୟଣ ଭଟ୍ଟ ତାଙ୍କୁ ଗୋପାଳକୃଷ୍ଣ ରୂପେ ଧ୍ୟାନ କରି ରାଧାଙ୍କ ପ୍ରେମିକ ରୂପେ ବନ୍ଦନା କରିଅଛନ୍ତି । ବାସ୍ତବରେ ଖ୍ରୀ. ୧୦ମ ଶତାବ୍ଦୀ ବେଳକୁ ରାଧାଙ୍କର ନାମ ଓ କୃଷ୍ଣଙ୍କ ସଙ୍ଗେ ତାଙ୍କ କେଳି ପ୍ରସଙ୍ଗ ଭକ୍ତମାନେ ଗ୍ରହଣ କରୁଥିଲେ । ଖ୍ରୀ: ୯୮୧ ମସିହାରେ ଖୋଦିତ ବାକ୍‌ପତି ପ୍ରାଥଙ୍କ (ରାଜସ୍ଥାନ) ଅଭିଲେଖରେ ନିମ୍ନୋକ୍ତ ଶ୍ଲୋକରୁ ଏହା ପ୍ରମାଣିତ ହୁଏ—

"ଯଲ୍ଲକ୍ଷ୍ମୀବଦନେନ୍ଦୁନା ନ ସୁଖିତଂ ଯନ୍ନାର୍ଦ୍ରିତଂବାରିଧେ-
× × × × × ନିଜେନ ନାଭିସରସୀ ପଦ୍ମେନ ଶାନ୍ତିଂ ଗତମ୍ ।

ଯତ୍ ଶେଷାହ୍ୱ ଫଣାସହସ୍ର ମଧୂରଶ୍ଵାସୌଚ୍ଚ ତାଶ୍ୱାସିତଂ
ତଦ୍ରାଧାଧରଧାରୁରଂ ମୁରରିପୋଲ୍ ସଦ୍‌ବପୁଃ ପାତୁ ବଃ'' ॥
(R. G. Bhandarkar, E. I., Vol. V, P. 192)

ଶ୍ରୀକ୍ଷେତ୍ରରେ ବଡଦେଉଳ ହତା ମଧ୍ୟରେ ଥିବା କଳ୍ପବଟ ମୂଳରେ ବାଳକୃଷ୍ଣଙ୍କ ଶ୍ରୀମୂର୍ତ୍ତିଙ୍କୁ ସ୍ଥାପନ କରାଯାଇଛି । ଭକ୍ତମାନେ ସେହି ଦିବ୍ୟମୂର୍ତ୍ତିଙ୍କୁ ପ୍ରଥମେ ଦର୍ଶନ କରିସାରି ଶ୍ରୀମନ୍ଦିର ପ୍ରଦକ୍ଷିଣ କରନ୍ତି । ସେହି ବାଳକୃଷ୍ଣଙ୍କୁ ନିମ୍ନ-ପ୍ରକାରେ ଧ୍ୟାନ କରାଯାଏ---

"ରମ୍ୟେ ବୃନ୍ଦାବନେ କନକସ୍ଥଲୀଂ ବିଚିନ୍ତ୍ୟ ତତ୍ର
କଳ୍ପଦ୍ରୁମମୂଳେ ରତ୍ନକୁଟ୍ଟିମ ମଧ୍ୟେ ଯୋଗପୀଠଂ
ବିଚିନ୍ତ୍ୟ ତତ୍ରାଷ୍ଟଦଳାରୁଣପଙ୍କଜୋପରି ଦେବତାଂ ବିଚିନ୍ତୟେତ୍ ।"

ମହାରାଜା ଚୋଡ଼ଗଙ୍ଗଦେବ, ଶୈବ, ଶାକ୍ତ ଓ ବୈଷ୍ଣବ ସମ୍ପ୍ରଦାୟମାନଙ୍କୁ ଏକତ୍ରିତ କରିବାକୁ ଯାଇ ତ୍ରିମୂର୍ତ୍ତିଙ୍କ ଆରାଧନା ପଦ୍ଧତି ପ୍ରଚଳନ କରିଥିଲେ । ତଥାପି ତତ୍କାଳୀନ ବୈଷ୍ଣବସମ୍ପ୍ରଦାୟଙ୍କ ପ୍ରାଧାନ୍ୟ ହେତୁ ଶ୍ରୀପୁରୁଷୋତ୍ତମ (କୃଷ୍ଣ)ଙ୍କୁ ଅଷ୍ଟାଦଶାକ୍ଷରୀ ମନ୍ତ୍ରରେ (କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନବଲ୍ଲଭାୟ ସ୍ୱାହା") ମନ୍ତ୍ରରେ ପୂଜା କରାଯାଉଛି । ଆଉ ମଧ୍ୟ ଦ୍ୱାଦଶାକ୍ଷରୀ ବାସୁଦେବ ମନ୍ତ୍ରରେ ("ଓଁ ନମୋ ଭଗବତେ ବାସୁଦେବାୟ") ବୋଲି ତାଙ୍କର ପୂଜା କରାଯାଉଛି । ସେପରି ଭୁବନେଶ୍ୱରୀ-ମନ୍ତ୍ରରେ ଅର୍ଥାତ୍ ଏକାକ୍ଷରୀ "ହ୍ରୀଂ" ବୋଲି ପୂଜା କରିବା ବିଧି ପ୍ରଚଳିତ ଅଛି । ସେହି ମନ୍ତ୍ରରେ ଦେବୀ ବିମଳାଙ୍କ ପୂଜା ମଧ୍ୟ ସମ୍ପନ୍ନ ହୁଏ ।

ଏଠାରେ କହିବା ଆବଶ୍ୟକ ଯେ, ଆଦ୍ୟ-ଶଙ୍କରଙ୍କ ଅଦ୍ୱୈତବାଦ ଓ ମାୟାବାଦ ଭାରତରେ ସର୍ବତ୍ର ପ୍ରସାରଲାଭ କଲା । ତାଙ୍କ ପରେ ଖ୍ରୀ: ୧୧ଶ ଶତାବ୍ଦୀରେ ରାମାନୁଜଙ୍କ ବିଶିଷ୍ଟାଦ୍ୱୈତବାଦ ଦକ୍ଷିଣ-ଭାରତରେ ପ୍ରବର୍ତ୍ତିତ ହୋଇ ଭାରତରେ ଅଦ୍ଭୁତ ହେଲା । ସେଥିର କେତେକ ବିକଳ୍ପ ଚିନ୍ତା ହେତୁ ନିମ୍ବାର୍କଙ୍କ ମତରେ ଅଧିକାଂଶ ବୈଷ୍ଣବ ଅନୁପ୍ରବେଶ କରିଥିଲେ । ସେତିକିବେଳେ ମହାକବି ଜୟଦେବଙ୍କ ରଚିତ "ଗୀତଗୋବିନ୍ଦ" ନାଟ୍ୟ ମାଧ୍ୟମରେ ଜନସାଧାରଣଙ୍କୁ ଅଭିଭୂତ କରିଦେଲା ଯେହେତୁ ସେଥିରେ ରାଧାକୃଷ୍ଣଙ୍କ ମଧୁର ପ୍ରେମଲୀଳା ଅତି ଲଳିତ ଭାଷା ଓ ସଙ୍ଗୀତରେ ପ୍ରକଟିତ ହୋଇଛି । ଓଡ଼ିଶାରେ ତାହା କେବଳ ଜନସାଧାରଣଙ୍କୁ ନୁହେଁ, ମହାରାଜା ଚୋଡଗଙ୍ଗଙ୍କୁ ମଧ୍ୟ ମୁଗ୍ଧ କରିଥିଲା । ତେଣୁ ସେ ତାଙ୍କର ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କ ସମ୍ମୁଖରେ

'ଗୀତଗୋବିନ୍ଦ'ର ସଙ୍ଗୀତ ନୃତ୍ୟ ପରିବେଷଣ କରିବା ନିୟମ ପ୍ରବର୍ତ୍ତିତ କଲେ । ଏଥିପାଇଁ 'ଦେବଦାସୀ'ମାନଙ୍କୁ ନିଯୁକ୍ତ କରିଗଲେ ।

ଚୋଡ଼ଗଙ୍ଗଙ୍କ ପିତା ଓ ପିତାମହଙ୍କ ରାଜତ୍ୱ କାଳରେ ଯେଉଁ ନର୍ତ୍ତକୀମାନେ କଳିଙ୍ଗର ବିଷ୍ଣୁ ଓ ଶିବ ମନ୍ଦିରମାନଙ୍କରେ ସଙ୍ଗୀତ ପରିବେଷଣ କରୁଥିଲେ, ଠିକ୍ ସେହିମାନ ଯେ ଚୋଡଗଙ୍ଗଦେବ ଉତ୍କଳରେ ପ୍ରବର୍ତ୍ତିତ କରିଥିବେ, ଏଥିରେ ଆଦୌ ସନ୍ଦେହ ନାହିଁ । ତେଣୁ ସେ କଳିଙ୍ଗରୁ 'ସାନି' (ନର୍ତ୍ତକୀ) ମାନଙ୍କୁ ଅଣାଇ ଶ୍ରୀକ୍ଷେତ୍ର (ପୁରୀ)ର ଚୂଡ଼ଙ୍ଗ ସାହିରେ ସେମାନଙ୍କ ରହିବା ବ୍ୟବସ୍ଥା କରିଥିଲେ । ତଦବଧି 'ଗୀତଗୋବିନ୍ଦ'ର ଆଦର ବଢ଼ିବା ସଙ୍ଗେ ସଙ୍ଗେ ରାଧା-କୃଷ୍ଣଙ୍କ ପ୍ରେମଲୀଳା ଓଡ଼ିଶାରେ ପ୍ରତ୍ୟେକ ପୁରପଲ୍ଲୀରେ ମଧ୍ୟ ପରିବେଶିତ ହେଲା ।

ଖ୍ରୀ: ୧୪୭୫ରେ ସୂର୍ଯ୍ୟବଂଶୀୟ ମହାରାଜା କପିଳେନ୍ଦ୍ରଙ୍କ ରାଜତ୍ୱ କାଳରେ ତାଙ୍କର ଜଣେ ସେନାଧ୍ୟକ୍ଷ କଟକ ଜିଲ୍ଲା ଗୋପୀନାଥପୁରରେ ଶ୍ରୀଗୋପୀନାଥଙ୍କ ମନ୍ଦିର ଗଠନ କରି ସେଥିରେ ଏକ ଶିଳାଲେଖର ବନ୍ଦନାଶ୍ଳୋକଟି ନିମ୍ନପ୍ରକାରେ ବାଳକୃଷ୍ଣଙ୍କ ରୂପ ବର୍ଣ୍ଣନା କରିଛନ୍ତି—

"ମୌଳୌ ଚଞ୍ଚଳ ଚୂଳନୀ ତିଳକନୀ ଭାଲେମୁଖେ ହାସିନୀ
କଣ୍ଠେ ମୌକ୍ତିକମାଳିନୀ ମଳୟଜୈଃ ପ୍ରତ୍ୟଙ୍ଗମାଲେପିନୀ ।
ହସ୍ତାବ୍ଜେ ନବନୀତିନୀ ଚରଣୟୋଃ କ୍ରୀଡାରସାନ୍ନର୍ତ୍ତିନୀ
ଜୀୟାତ୍ତୁ ଶୈଶବ ଶୋଭିନୀ ତଦମଳଗୋପାଙ୍ଗନାଲିଙ୍ଗିନୀ" ॥

(I. A. S. B , Vol. LXIX, 1900, P. 175)

ବାଳଗୋପାଳଙ୍କ ପୂର୍ଣ୍ଣ ସ୍ୱରୂପ ଏଥିରେ ବର୍ଣ୍ଣିତ ହୋଇଛି । ଯଥା ମସ୍ତକରେ ମୟୂରଚୂଳ, କପାଳରେ ତିଳକ, ମୁଖରେ ହାସ, ଗଳାରେ ମୁକ୍ତାମାଳା, ଅଙ୍ଗରେ ଚନ୍ଦନ ଲେପନ, ହସ୍ତରେ ଲବଣୀ, ଚରଣରେ ନୃତ୍ୟପାଇଁ ନୂପୁର, ଏପରି ଶିଶୁ (ଶ୍ରୀକୃଷ୍ଣ)ଙ୍କର ଶୋଭା ବିସ୍ତାର କରି ସେ ଗୋପାଙ୍ଗନାମାନଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରିଥିଲେ ।

ବଡ଼ଦେଉଳରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥଙ୍କ ରୂପ ସେତେବେଳେ ଦାରୁରେ ନିର୍ମିତ ହୋଇ ଭିନ୍ନ ସ୍ୱରୂପରେ ପୂଜିତ ହେଉଥିଲେ । ତଥାପି ତତ୍କାଳୀନ ବୈଷ୍ଣବ ସମ୍ପ୍ରଦାୟ ବଲ୍ଲଭାଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରି ରାଧା-କୃଷ୍ଣଙ୍କୁ ହିଁ ଜଗନ୍ନାଥ ରୂପରେ ଆରାଧନା କରିବାକୁ ଲାଗିଲେ । ମହାରାଜା ପ୍ରତାପରୁଦ୍ର ଚୈତନ୍ୟଙ୍କ

ଶିଷ୍ୟତ୍ୱ ଗ୍ରହଣ କରି ରାଧା-କୃଷ୍ଣ ଆରାଧନା ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କ ଆରାଧନାକୁ ମାନ୍ୟ କରିବାକୁ ଲାଗିଲେ । ଶ୍ରୀଧର ଦାସଙ୍କ ମତରେ 'ଜ୍ଞାନ' ଓ 'ତତ୍ତ୍ୱ' ମିଶି କୃଷ୍ଣ ତତ୍ତ୍ୱର ବିକାଶ ସମ୍ଭବ ହୋଇଛି । ଚୈତନ୍ୟ ନିଜେ ରାଧା ରୂପରେ ଶ୍ରୀକୃଷ୍ଣ ସ୍ୱରୂପୀ ଶ୍ରୀଜଗନ୍ନାଥଙ୍କୁ ବହ୍ୱଳଭାବେ ନୃତ୍ୟ କରୁଥିଲେ ।

ବାସ୍ତବରେ କହିବାକୁ ଗଲେ, 'ଭାଗବତ ପୁରାଣ'କୁ ଭିତ୍ତି କରି ଖ୍ରୀ: ୧୨ଶ ଶତାବ୍ଦୀରୁ ପୁରୀର ବଡ଼ଦେଉଳକୁ ୨୧୫ ଫୁଟ ଉଚ୍ଚରେ ନିର୍ମିତ କରାଇ ସେଥିରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ସମ୍ପର୍କରେ କେତେକ ସ୍ଥାପତ୍ୟ ଗଙ୍ଗବଂଶୀୟ ରାଜାମାନେ ଶିଳ୍ପୀମାନଙ୍କ ଦ୍ୱାରା ପ୍ରସ୍ତୁତ କରି ମନ୍ଦିରଗାତ୍ରରେ ସଂଲଗ୍ନ କରାଇଥିଲେ । ଉପର୍ଯ୍ୟୁକ୍ତ ସ୍ଥାପତ୍ୟଗୁଡ଼ିକ ବଡଦେଉଳରୁ ଚୂନ ପଲସ୍ତରା ଛଡ଼ାଯିବା ପରେ ଏବେ ସ୍ପଷ୍ଟ ଦେଖାଯାଉଛି—

(୧) ରାଧା ଓ କୃଷ୍ଣଙ୍କ ସହ ଗୋରୁପଲ ।
(୨) ପ୍ରତ୍ୟେକ ପୀଢ଼ରେ ବିଷ୍ଣୁଙ୍କ ଦଶଟି ଅବତାର ।
(୩) ବଂଶୀବାଦନରତ ତ୍ରିଭଙ୍ଗ ଗୋପାଳକୃଷ୍ଣ ।
(୪) ଶ୍ରୀକୃଷ୍ଣଙ୍କ ଗୋବର୍ଦ୍ଧନଗିରି ଧାରଣ ।
(୫) ଧେନୁକାସୁର ବଧ ।
(୬) ଗୋପୀମାନଙ୍କ ସଙ୍ଗରେ କୃଷ୍ଣଙ୍କର କେଳି ।
(୭) ରଥରେ କୃଷ୍ଣ ଓ ବଳରାମଙ୍କ ମଥୁରା ଯାତ୍ରା ଇତ୍ୟାଦି ।

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ପୂର୍ବେ ଯେଉଁ ବିଷ୍ଣୁମୂର୍ତ୍ତି ଚତୁର୍ଭୁଜ ପୁରୁଷୋତ୍ତମ ରୂପେ ଶ୍ରୀମନ୍ଦିରରେ ସ୍ଥାପିତ ହୋଇଥିଲେ, କାଳକ୍ରମେ ସେ ବାଳ-କୃଷ୍ଣରୂପୀ ଶ୍ରୀଜଗନ୍ନାଥଙ୍କ ନାମରେ ମଧ୍ୟ ପୂଜିତ ହେଲେ ।



# ଶ୍ରୀଜଗନ୍ନାଥ ଓ ବୈଷ୍ଣବ ଧର୍ମ

ଉତ୍କଳରେ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କୁ ଅବଲମ୍ବନ କରି ଯୁଗେ ଯୁଗେ ରାଜଧର୍ମ ପରିବର୍ତ୍ତିତ ହେବା ଫଳରେ ସେହି ଜାତୀୟ ଦେବତାଙ୍କ ପୂଜା-ପଦ୍ଧତିରେ ବିଭିନ୍ନଧର୍ମଭିତ୍ତିକ ପଦ୍ଧତିର ସଙ୍କେତ ଦେଖିବାକୁ ମିଳେ । ଜୈନ, ବୌଦ୍ଧ, ଶୈବ, ବୈଷ୍ଣବ, ଶାକ୍ତ, ଗାଣପତ୍ୟ, ସୌର ପ୍ରଭୃତି ବିଭିନ୍ନଧର୍ମ ଓ ସମ୍ପ୍ରଦାୟ ମଧ୍ୟରୁ ଯେତେବେଳେ ଯେଉଁ ଧର୍ମାବଲମ୍ବୀ ରାଜବଂଶ ଓଡ଼ିଶାରେ ଆଧିପତ୍ୟ ବିସ୍ତାର କରି ଶାସନକାର୍ଯ୍ୟ ସଙ୍ଗେ ସାମାଜିକ କ୍ରିୟାକଳାପ ତଥା ଧର୍ମ ସଂକ୍ରାନ୍ତ ଉତ୍ସବାଦି ପାଳନ କରୁଥିଲେ, ସେମାନେ ଶ୍ରୀପୁରୁଷୋତ୍ତମଙ୍କୁ ହିଁ ସ୍ୱୀୟ ଗୁରୁମାନଙ୍କ ଉପଦେଶ-କ୍ରମେ ଇଷ୍ଟଦେବତା ରୂପେ ଆରାଧନା କରୁଥିଲେ । ଉଦାହରଣ ସ୍ୱରୂପ, ଉତ୍କଳରେ ଖ୍ରୀ: ୮ମ ଶତାବ୍ଦୀରୁ ଆରମ୍ଭକରି ପ୍ରାୟ ୨୦୦ ବର୍ଷ ବୌଦ୍ଧ ଧର୍ମାବଲମ୍ବୀ ରାଜାମାନେ ରାଜତ୍ୱ କରୁଥିଲା ବେଳେ ଜାତୀୟ ଦେବତା ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କୁ ବୁଦ୍ଧଙ୍କ ପ୍ରତୀକ ମହାଯାନ-ସଂପ୍ରଦାୟର 'ଜଗନ୍ନାଥ' (ବୁଦ୍ଧ)ରୂପେ ଆରାଧନା କରାଗଲା । ସୁତରାଂ ବୌଦ୍ଧ ମନ୍ଦିରମାନଙ୍କରେ ଯେପରି 'ଥେରି' ବା 'ଦେବଦାସୀ'ଙ୍କ ସେବା ପ୍ରଚଳିତ ଥିଲା, ସେପରି ପ୍ରଥା ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରରେ 'ମହାରି-ସେବା' ନାମରେ ପରିବର୍ତ୍ତିତ ହେଲା । ଶ୍ରୀଜଗନ୍ନାଥଙ୍କ ଭୋଗ ମହାପ୍ରସାଦକୁ ସ୍ପର୍ଶାସ୍ପର୍ଶ ଦୋଷରୁ ମୁକ୍ତ କରାଗଲା । ଶ୍ରୀଜଗନ୍ନାଥଙ୍କ 'ରଥ-ଯାତ୍ରା' ମଧ୍ୟ ପ୍ରାଚୀନ ବୌଦ୍ଧଧର୍ମରୁ ଗୃହୀତ ହେଲା ।

ଶ୍ରୀମନ୍ଦିରରେ 'ହାଡ଼ି' ମଧ୍ୟ ସେବକରୂପେ ନିଯୁକ୍ତହେଲେ । ସଂକ୍ଷେପରେ କହିବାକୁ ଗଲେ, ବ୍ରାହ୍ମଣ-ଧର୍ମରେ ପ୍ରଚଳିତ 'ଚତୁର୍ବର୍ଣ୍ଣ' ଜାତି-ପ୍ରଥା ଶ୍ରୀମନ୍ଦିରରୁ ନିର୍ମୂଳ ହୋଇଥିଲା । ଶ୍ରୀବିଗ୍ରହମାନ କାଳକ୍ରମେ ଜୀର୍ଣ୍ଣ-ଭଗ୍ନ ଅବସ୍ଥାରେ ପହଞ୍ଚିଲେ, ପୁରୁଣା ବିଗ୍ରହଙ୍କୁ କବରସ୍ଥ କରି 'ନବକଳେବର' କ୍ରିୟା ସଂପନ୍ନ କରିବା ପ୍ରଥା ବ୍ରାହ୍ମଣମାନଙ୍କ ଶାସ୍ତ୍ରରେ ଆଦୌ ଦେଖାଯାଏ ନାହିଁ । ଆଗମ ଶାସ୍ତ୍ରାନୁସାରେ ଭଗ୍ନ ବା ଖଣ୍ଡିତ ଦେବ-ଦେବୀଙ୍କ ପ୍ରତିମାକୁ (ପୁଷ୍କରିଣୀ, ନଦୀ ବା ସମୁଦ୍ରରେ) ବିସର୍ଜନକରି ନୂତନ ବିଗ୍ରହଙ୍କ ପ୍ରାଣ ପ୍ରତିଷ୍ଠାସହ ମନ୍ଦିରରେ ସ୍ଥାପନ କରିବା ବିଧି ପ୍ରଚଳିତ ଅଛି । ଶ୍ରୀଜଗନ୍ନାଥଙ୍କପରି ହସ୍ତପଦ ଖଣ୍ଡିତ ବିଗ୍ରହ ହିନ୍ଦୁମାନଙ୍କ ଶାସ୍ତ୍ରରେ ବର୍ଣ୍ଣିତ ହୋଇନାହିଁ । ସ୍ଥୂଳରେ କହିବାକୁ ଗଲେ, ଶ୍ରୀଜଗନ୍ନାଥଙ୍କୁ ଖ୍ରୀ: ୮ମ ବା ୯ମ ଶତାବ୍ଦୀ ପର୍ଯ୍ୟନ୍ତ ହିନ୍ଦୁ ସଂପ୍ରଦାୟ ଗ୍ରହଣ କରିନଥିଲେ ।

ଓଡ଼ିଶାରେ ଭୌମ-କର ରାଜାମାନଙ୍କ ରାଜତ୍ୱର ଦ୍ୱିତୀୟାର୍ଦ୍ଧରେ ଶୈବ ଓ ବୈଷ୍ଣବଧର୍ମ ସଙ୍ଗେ-ବୌଦ୍ଧଧର୍ମକୁ ମିଶାଇ ତାନ୍ତ୍ରିକ ବ୍ରାହ୍ମଣମାନେ ଯେଉଁ ମିଶ୍ରିତ ଧର୍ମର ଉଦ୍ଭାବନ କଲେ, ସେଥିରେ ଖ୍ରୀ: ୯ମ ଶତାବ୍ଦୀରେ ରାଜା ଓ ରାଣୀମାନେ ପ୍ରଭାବିତ ହେଲେ । ସେହି ତାନ୍ତ୍ରିକ ଶୈବ ଓ ବୈଷ୍ଣବମାନଙ୍କୁ ବୈଦିକଧର୍ମାବଲମ୍ବୀ ରକ୍ଷଣଶୀଳ ବ୍ରାହ୍ମଣମାନେ ଗ୍ରହଣ କରିବାକୁ କୁଣ୍ଠିତ ହେଉଥିଲେ । ତଥାପି ତତ୍କାଳୀନ ରାଜନୈତିକ ସଂଘର୍ଷ ହେତୁ ଧର୍ମନାମରେ ବିଭେଦ ସୃଷ୍ଟି କରି ସାମ୍ରାଜ୍ୟକୁ ଦୁର୍ବଳ କରିବା ଅନୁଚିତ ବୋଲି ଉତ୍କଳର ଚିନ୍ତାଶୀଳ ମନୀଷୀମାନେ ସିଦ୍ଧାନ୍ତ କରିଥିଲେ ।

ଭୌମକର ରାଜବଂଶର ଅବସାନପରେ କୋଶଳର ସୋମବଂଶୀୟ ମହାରାଜା ଯଯାତି ମହାଶିବଗୁପ୍ତ ଉତ୍କଳର ସିଂହାସନ ଅଧିକାର କରି ଭୁବନେଶ୍ୱରକୁ ତାଙ୍କ ଗୁରୁପୀଠ ରୂପେ ସୃଷ୍ଟି କଲେ । ତତ୍ପୂର୍ବରୁ ବୌଦ୍ଧ-ଧର୍ମାବଲମ୍ବୀ ରାଜାମାନଙ୍କ ଗୁରୁପୀଠ ବୋଧହୁଏ ରତ୍ନଗିରି ଓ ଲଳିତଗିରି ମହାବିହାରଠାରେ ପ୍ରତିଷ୍ଠାଲାଭ କରିଥିଲା । ସେହି ଅଞ୍ଚଳ ସୋମବଂଶୀ ରାଜା-ମାନଙ୍କ ସମୟରେ ବର୍ଜିତ ହୋଇ ସେମାନଙ୍କ ଗୁରୁପୀଠ ରହିଲା ଏକାମ୍ର କ୍ଷେତ୍ର (ଭୁବନେଶ୍ୱର) ଠାରେ । ମହାରାଜା ଯଯାତିକେଶରୀ ଓ ତାଙ୍କ ରାଣୀ କୋଳାବତୀ ଦେବୀ ଯଥାକ୍ରମେ ଲିଙ୍ଗରାଜ ଓ ବ୍ରହ୍ମେଶ୍ୱରଙ୍କ ମନ୍ଦିର ଗନ୍ଧବତୀ (ଗଙ୍ଗୁଆ) ନଦୀ ନିକଟରେ ନିର୍ମାଣକଲେ । ସେମାନଙ୍କ ଗୁରୁ ଶୈବ ଧର୍ମାବଲମ୍ବୀ ଥିଲେ ।

ଖ୍ରୀ: ୧୨ଶ ଶତାବ୍ଦୀରେ ସୋମବଂଶର ପତନପରେ କଳିଙ୍ଗର ମହାରାଜା ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ଶୈବ, ବୈଷ୍ଣବ ଓ ବ୍ରାହ୍ମଣ୍ୟ ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣକରି ଯେତେବେଳେ ଉତ୍କଳ, କଳିଙ୍ଗ, କୋଶଳର ଅଧୀଶ୍ୱର ହୋଇ ଗଙ୍ଗବଂଶ ପ୍ରତିଷ୍ଠା କଲେ, ସେତେବେଳେ ଶ୍ରୀନୀଳାଚଳଧାମରେ ତାଙ୍କର ସେହି ସେହି ଧର୍ମର ଗୁରୁମାନେ ମଠ ନିର୍ମାଣକରି ଅବସ୍ଥାନ କଲେ । ତାଙ୍କରି ପ୍ରେରଣାରେ ତତ୍ରସ୍ଥ ପ୍ରାଚୀନ ଶିବଙ୍କର ନାମଥିଲା କୃତ୍ତିବାସ ଏବଂ ଶ୍ରୀ ମାଧବଙ୍କ ନାମ ଥିଲା ପୁରୁଷୋତ୍ତମ । ସେହି ନାମ ଦୁଇଟି କେବେ ଓ କାହିଁକି ପରିବର୍ତ୍ତିତ ହୋଇ ଯଥାକ୍ରମେ ଲିଙ୍ଗରାଜ ଓ ଜଗନ୍ନାଥ ନାମରେ ପରିବର୍ତ୍ତିତ ହେଲା ସେଥିର ରହସ୍ୟ ଅଦ୍ୟାପି ରହସ୍ୟାବୃତ । ଶ୍ରୀଜଗନ୍ନାଥଙ୍କୁ ଖ୍ରୀ:୧୬ଶ ଶତାବ୍ଦୀର ଅଭିଲେଖ-ମାନଙ୍କରେ ମଧ୍ୟ 'ପୁରୁଷୋତ୍ତମ' ନାମରେ ଅଭିହିତ କରାଯାଇଛି ।

ଆନ୍ଧ୍ରର ମଟେନ୍ଦ୍ରଏ, ଭୌମ-କର ବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ଉଡ୍ଡୀୟାନ-ପ୍ରଦେଶ (ଉଡ୍ର ରାଜ୍ୟ)ର ବୌଦ୍ଧରାଜା ଇନ୍ଦ୍ରଭୂତିଙ୍କ ରଚିତ 'ଜ୍ଞାନସିଦ୍ଧି' ନାମକ ଗ୍ରନ୍ଥରେ ବୁଦ୍ଧଦେବଙ୍କୁ ଜଗନ୍ନାଥ ଆଖ୍ୟାରେ ଅଭିହିତ କରି ମଙ୍ଗଳାଚରଣ ଶ୍ଲୋକ ରଚିତ ହୋଇଥିବାରୁ ଏବଂ ଶ୍ରୀପୁରୁଷୋତ୍ତମଙ୍କୁ ବୁଦ୍ଧ-ରୂପରେ ସେହି ସଂପ୍ରଦାୟର ଲୋକେ ଆରାଧନା କରୁଥିବାରୁ 'ଜଗନ୍ନାଥ' ନାମ ତାଙ୍କ ମଧ୍ୟରେ ପ୍ରଚଳିତ ହୋଇଥିଲା । କିନ୍ତୁ ବ୍ରାହ୍ମଣ୍ୟ ତଥା ବୈଷ୍ଣବ ଧର୍ମାବଲମ୍ବୀ ରାଜା ଓ ରାଜଗୁରୁମାନେ ବହୁକାଳ ପର୍ଯ୍ୟନ୍ତ ସେହିନାମକୁ ସ୍ୱୀକାର କରୁନଥିଲେ । ସମ୍ଭବତଃ ଖ୍ରୀ: ୧୫ଶ ବା ୧୬ ଶତାବ୍ଦୀରେ ବାସୁଦେବ ଶ୍ରୀକୃଷ୍ଣଙ୍କୁ 'ଜଗନ୍ନାଥ' ଆଖ୍ୟା ଦେଇ 'ଭାଗବତପୁରାଣରେ' ଏକ ପ୍ରକ୍ଷିପ୍ତଶ୍ଲୋକ ଯୋଗ ହେବାରୁ ସେହି-ନାମଟି ସର୍ବସମ୍ମତ ଭାବେ ପ୍ରଚଳିତ ହେଲା । 'ଭାଗବତ-ପୁରାଣ' ଗୁପ୍ତଯୁଗର କିଛିଦ୍ ପୂର୍ବରୁ ରଚିତ ହୋଇଥିଲା । କିନ୍ତୁ ପରବର୍ତ୍ତୀ ଯୁଗରେ ବୈଷ୍ଣବ ସଂପ୍ରଦାୟଙ୍କ ମତାନୁସାରେ ଦର୍ଶନ-ଶାସ୍ତ୍ରର ପରିବର୍ତ୍ତନ ଘଟିବା ଫଳରେ ସେହି ସେହି ମତର ପ୍ରଚାର ନିମନ୍ତେ କେତେକ ପ୍ରକ୍ଷିପ୍ତାଂଶ 'ଭାଗବତ ପୁରାଣ'ର କଳେବର ବୃଦ୍ଧି କରିଥିଲା । ତେଣୁ ଦଶମ ସ୍କନ୍ଧରେ 'କାଳୀୟଦମନ' ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କୁ 'ଜଗନ୍ନାଥ' ଓ 'ଗରୁଡ଼ଧ୍ୱଜ' ଆଖ୍ୟାରେ ଅଭିହିତ କରାଯାଇଛି,

ଯଥା :

"ପୂଜୟିତ୍ୱା ଜଗନ୍ନାଥଂ ପ୍ରସାଦ୍ୟ ଗରୁଡ଼ଧ୍ୱଜମ୍
ତତଃ ପ୍ରୀତୋଽଭ୍ୟନୁଜ୍ଞାତଃ ପରିକ୍ରମ୍ୟାଭିବାଦ୍ୟ ତମ୍
ସକଳତ୍ର ସୁହୃତ୍ ପୁତ୍ରୋ ଦ୍ୱୀପମଧ୍ୟେ ଜଗାମହ
ତଦୈବ ସାମୃତଜଳା ଯମୁନା ନିର୍ବିଷା ଭବେତ୍ ।

ଭାଗବତ ପୁରାଣ (ସ୍କ. ୧୦, ୧୬, ୬୭)

ଅର୍ଥାତ୍—କାଳୀୟନାଗ ଶ୍ରୀଜଗନ୍ନାଥ ଗରୁଡ଼ଧ୍ୱଜଙ୍କୁ ପ୍ରସନ୍ନ କଲାପରେ ସ୍ତ୍ରୀ, ପୁତ୍ର ଓ ବନ୍ଧୁମାନଙ୍କ ସଙ୍ଗେ ସେ ଯମୁନାନଦୀ ପରିତ୍ୟାଗ କରି ରମଣକ-ଦ୍ୱୀପକୁ ପ୍ରସ୍ଥାନ କଲା । ତଦବଧି ଯମୁନାର ଅମୃତତୁଲ୍ୟ ନୀର ବିଷଶୂନ୍ୟ ହେଲା । 'ଭାଗବତ'ର ଅନ୍ୟ ଏକ ଶ୍ଲୋକରେ ଶ୍ରୀକୃଷ୍ଣଙ୍କୁ 'ଜଗଦୀଶ୍ୱର' ଆଖ୍ୟା ଦିଆଯାଇଛି । (ଭାଗବତ ପୁରାଣ ସ୍କ ୧୦, ୧୬, ୫୬) ଦକ୍ଷିଣଭାରତରେ ଅଦ୍ୱୈତବାଦୀ ବୈଷ୍ଣବ ସଂପ୍ରଦାୟ ଖ୍ରୀ: ୧୧ଶ ଶତାବ୍ଦୀରେ ଯେଉଁ 'ଚତୁର୍ବ୍ୟୂହ' ପଦ୍ଧତି ସୃଷ୍ଟି କରି ଶ୍ରୀକୃଷ୍ଣ, ସଂଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ରୂପେ ଆରାଧନା କରୁଥିଲେ ତାହା ମଧ୍ୟ 'ଭାଗବତରେ ପ୍ରକ୍ଷିପ୍ତାଂଶରୂପେ ଅନ୍ତର୍ଭୁକ୍ତ ହୋଇଅଛି ।

(ଭାଗବତ ପୁରାଣ ସ୍କ ୧୦, ୧୬, ୪୧)

ଚୋଡ଼ଗଙ୍ଗ ଦେବ ଉତ୍କଳ ଅଧିକାର କରି ତାଙ୍କ ରାଜଧାନୀ ବାରାଣସୀ-କଟକ (ବର୍ତ୍ତମାନ କଟକ)ରେ ସ୍ଥାପନ କଲେ । ଏଥି ପୂର୍ବରୁ ଗଙ୍ଗରାଜାମାନେ ବଂଶଧାରା ନଦୀ କୂଳରେ ଅବସ୍ଥିତ କଳିଙ୍ଗ ନଗର (ମୁଖଲିଙ୍ଗ) ଠାରେ ରାଜଧାନୀ ସ୍ଥାପନକରି କଳିଙ୍ଗରେ ରାଜତ୍ୱ ବିସ୍ତାର କରିଥିଲେ । ସେତେବେଳେ ସେମାନଙ୍କ ଗୁରୁପୀଠ ମହୋଦଧୀ କୂଳରେ ଶ୍ରୀକୂର୍ମକ୍ଷେତ୍ରରେ ରହିଥିଲା । ସେଠାରେ ଶ୍ରୀ-ସମ୍ପ୍ରଦାୟ-ଭୁକ୍ତ ବୈଷ୍ଣବ ଗୁରୁମାନେ ଶ୍ରୀକୂର୍ମ ମନ୍ଦିରରେ ଅବସ୍ଥାନ କରିଥିବା ଜଣାଯାଏ । ସେଠାରେ ନିମ୍ବାର୍କ ସମ୍ପ୍ରଦାୟର ବହୁ ସଂଖ୍ୟକ ସାଧୁ-ସନ୍ନ୍ୟାସୀ ଅବସ୍ଥାନ କରି ବୈଷ୍ଣବ ଧର୍ମର ବିକାଶ ସାଧନ କରୁଥିଲେ ।

ଉତ୍କଳର ମହାକବି ଜୟଦେବ ସେଠାରେ ରହି ବିଦ୍ୟାଶିକ୍ଷା କରିଥିବା ଅନୁମେୟ । ତେଣୁ ତାଙ୍କର ପରିଣତ ବୟସରେ ସେ "ଗୀତଗୋବିନ୍ଦ" ରଚନା କରି ତତ୍ରସ୍ଥ ଦେବଦାସୀମାନଙ୍କୁ ସଙ୍ଗୀତ ଶିକ୍ଷା ଦେଉଥିଲେ ଓ ନିଜେ ଜଣେ ପ୍ରସିଦ୍ଧ 'ସାଧୁ' (ଗୃହୀ ସନ୍ନ୍ୟାସୀ) ରୂପେ ପରିଚିତ ହୋଇଥିଲେ । ଶ୍ରୀକୂର୍ମ ନିକଟବର୍ତ୍ତୀ ଅଞ୍ଚଳରେ ତାଙ୍କୁ ଲୋକେ ଗୁରୁ ଓ ପ୍ରଧାନ-ସାଧୁ ରୂପେ-ସମ୍ମାନିତ କରୁଥିଲେ । ସଂସ୍କୃତ ଭାଷାର ଏକ ପ୍ରସିଦ୍ଧ କବି ଓ ଗାୟକ ରୂପେ ନୁହେଁ, ତାଙ୍କ ମୌଳିକ ପ୍ରତିଭା ବୈଷ୍ଣବ-ଧର୍ମରେ ମଧ୍ୟ ବିକଶିତ ହୋଇଥିଲା । ତାଙ୍କୁ ଗୁରୁ ରୂପେ ଗ୍ରହଣ କରି ସେଠାର ଜଣେ ଭଦ୍ର ମହିଳା 'ମେଡ଼ମଦେବୀ' ଏକଦା ଏକାମ୍ର କ୍ଷେତ୍ରରେ ଶ୍ରୀକୃତ୍ତିବାସ (ଲିଙ୍ଗରାଜଙ୍କ) ପାଇଁ ଖଣ୍ଡେ ଜମି କ୍ରୟ କରି ଦାନ କରିଥିବା ପ୍ରସଙ୍ଗ ଗୋଟିଏ ଶିଳାଲିପିରେ ଖୋଦିତ ହୋଇଅଛି । "ମେଡ଼ମଦେବୀ" ତେଲୁଗୁ ନାମରେ ଅର୍ଥ ହେଉଛି, 'ମଧ୍ୟମଦେବୀ' । ସମ୍ଭବତଃ ଶ୍ରୀକୂର୍ମ ନିକଟବର୍ତ୍ତୀ କୌଣସି ଭଦ୍ର ସାମନ୍ତଙ୍କର ସେ ଥିଲେ ମଝିଆ ପତ୍ନୀ । ତାଙ୍କ ସଙ୍ଗେ ଶ୍ରୀକୂର୍ମନିବାସୀ 'ସାଧୁ ପ୍ରଧାନ' ଜୟଦେବ ଜନ୍ମଭୂମି ଉତ୍କଳକୁ ଆସି ନିଜ ଶିଷ୍ୟା ମେଡ଼ମ-ଦେବୀଙ୍କ ଭୂମିଦାନ ବେଳେ ଏକାମ୍ର କ୍ଷେତ୍ରରେ ଉପସ୍ଥିତ ଥିବା ପ୍ରସଙ୍ଗ ସେହି ଶିଳାଲିପିରୁ ଜଣାଯାଇଛି ।

ଶ୍ରୀଜୟଦେବ 'ଗୀତ ଗୋବିନ୍ଦ'ରେ ପ୍ରଥମେ ବିଷ୍ଣୁଙ୍କ ଦଶଅବତାର ବନ୍ଦନା କରି ନବମ ଅବତାର ରୂପେ ବୁଦ୍ଧଙ୍କ ବନ୍ଦନା କରି ଅଛନ୍ତି । ତେଣୁ ଖ୍ରୀ ୧୨ଶ ଓ ୧୩ଶ ଶତାବ୍ଦୀରେ ବୁଦ୍ଧ (ଜଗନ୍ନାଥ) ସଙ୍ଗେ ପୁରୀର ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କୁ ସମାନ କରି ଦେବା ଅନୁଭୂତ ହୁଏ । ଶ୍ରୀସମ୍ପ୍ରଦାୟଭୁକ୍ତ ମଧ୍ୱାଚାର୍ଯ୍ୟ ଓ ବିଲ୍ୱମଙ୍ଗଳଙ୍କ ପରି ଜୟଦେବ ଯେଉଁ ରାଧା-କୃଷ୍ଣ ଯୁଗଳ ମୂର୍ତ୍ତିଙ୍କ ମଧୁରଲୀଳା ବର୍ଣ୍ଣନା କରିଥିଲେ, ତାହା ମହାରାଜା ଅନଙ୍ଗଭୀମଦେବ (୨ୟ)ଙ୍କ ରାଜତ୍ୱ କାଳରେ ହସ୍ତପଦ ଯୁକ୍ତ ଶ୍ରୀକୃଷ୍ଣ (ବାସୁଦେବ) ବିଗ୍ରହ ସଙ୍ଗେ ମଧ୍ୟ

ସମାନ କରାଯାଇଥିଲା । ତେଣୁ ଅନଙ୍ଗଭୀମଙ୍କ କନ୍ୟା ପରମ ବୈଷ୍ଣବୀ ଚନ୍ଦ୍ରିକା-ଦେବୀଙ୍କ ନିର୍ଦ୍ଦେଶରେ ବିନ୍ଦୁ ସରୋବର କୂଳରେ ଯେଉଁ ଅନନ୍ତବାସୁଦେବଙ୍କ ମନ୍ଦିର ଖ୍ରୀ: ୧୩ଶ ଶତାବ୍ଦୀରେ ନିର୍ମିତ ହେଲା, ସେଥିରେ କୃଷ୍ଣ (ପୁରୁଷୋତ୍ତମ) ବଳଦେବ ଓ ସୁଭଦ୍ରାଙ୍କ ହସ୍ତପଦଯୁକ୍ତ ପ୍ରସ୍ତର ବିଗ୍ରହ ସ୍ଥାପିତ ହୋଇଅଛି । ସେହି ମନ୍ଦିର ଭିତ୍ତି ସଂଲଗ୍ନ ଶିଳାଲେଖରୁ ଏଥିର ସ୍ପଷ୍ଟ ବିବରଣୀ ଆମ୍ଭେ ପାଇପାରୁଛୁ ।

ହସ୍ତପଦ ଖଣ୍ଡିତ ଦାରୁ ବିଗ୍ରହ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥ ପୁରୀର ଶ୍ରୀମନ୍ଦିରରେ ସ୍ଥାପିତ ହେବାର ଅଳ୍ପ କେତେକ ବର୍ଷ ପରେ, କିପରି ସେ ପ୍ରସ୍ତରନିର୍ମିତ ହସ୍ତପଦଯୁକ୍ତ କୃଷ୍ଣ ବିଗ୍ରହରେ ପରିଣତ ହୋଇ ଅନନ୍ତ-ବାସୁଦେବ ମନ୍ଦିରରେ ପ୍ରତିଷ୍ଠିତ ହେଲେ, ଏହା ଏକ ସମସ୍ୟା ସୃଷ୍ଟି କରିଛି ।

ସମ୍ଭବତଃ, ଗଙ୍ଗେଶ୍ୱରଙ୍ଗ ଶ୍ରୀମନ୍ଦିର ଗଠନ କରି ସେଥିରେ ହସ୍ତପଦଯୁକ୍ତ ଶ୍ରୀପୁରୁଷୋତ୍ତମ ବିଗ୍ରହ ସ୍ଥାପନ କରିଥିବେ । ତେଣୁ ତାଙ୍କ ପ୍ରଶସ୍ତିକାର ଶ୍ରୀପୁରୁଷୋତ୍ତମଙ୍କ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି:—

"ପାଦୌ ତସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିସ୍ତ ସର୍ବା ଦିଶଃ
ଶ୍ରୋତ୍ରେ ନେତ୍ରଯୁଗଂ ରବୀନ୍ଦୁଯୁଗଳଂ ମୂର୍ଦ୍ଧାପି ଚ ଦ୍ୟୌରସୌ' ଇତ୍ୟାଦି ।

ଏହି ବର୍ଣ୍ଣନାରୁ ସ୍ପଷ୍ଟ ଜଣାଯାଉଛି ଯେ, ଶ୍ରୀପୁରୁଷୋତ୍ତମ ବିଗ୍ରହଙ୍କର ହସ୍ତ, ପଦ, କର୍ଣ୍ଣ ଓ ଚକ୍ଷୁ ପୂର୍ଣ୍ଣ ଭାବରେ ରହିଥିଲା । ତେବେ ତାହା କେବେ ଓ କେଉଁ ପରିସ୍ଥିତିରେ ଖଣ୍ଡିତ ହେଲା, ତାହା ଅଦ୍ୟାପି ରହସ୍ୟାବୃତ ହୋଇ-ରହିଛି । ଯେଉଁ ବୈଦିକବ୍ରାହ୍ମଣମାନଙ୍କ ନିର୍ଦ୍ଦେଶରେ ଏତେ ବଡ଼ ବିଷ୍ଣୁ ମନ୍ଦିର ଗଠିତ ହେଲା ସେଥିରେ ଶାସ୍ତ୍ର ବିରୁଦ୍ଧ ମୂର୍ତ୍ତି ସ୍ଥାପନ କରିବାକୁ ସେମାନେ କଦାପି ମତ ଦେଇ ନଥିବେ ।

"ମାଦଳା ପାଞ୍ଜି" ପରି ପରବର୍ତ୍ତୀ ଯୁଗର କିମ୍ବଦନ୍ତୀ ଅନୁସାରେ ଇନ୍ଦ୍ରଦ୍ୟୁମ୍ନ ନାମକ ରାଜା ବଡ଼ଦେଉଳ ନିର୍ମାଣ କରି ସେଥିରେ ଖଣ୍ଡିତ-ଦାରୁବିଗ୍ରହ ସ୍ଥାପନ କରିଥିଲେ । ତାହା କେତେଦୂର ବିଶ୍ୱାସଯୋଗ୍ୟ ଐତିହାସିକମାନେ ସେଥିର ଅଧିକ ଗବେଷଣା କରିବା ଆବଶ୍ୟକ । ଶ୍ରୀମନ୍ଦିର ବିରୁଦ୍ଧରେ ମୁସଲମାନଙ୍କ ଘନ ଘନ ଅତ୍ୟାଚାରର ପରିଣାମରେ ଏପରି ଖଣ୍ଡିତ-ଦାରୁମୂର୍ତ୍ତି ଶ୍ରୀମନ୍ଦିରରେ ପରବର୍ତ୍ତୀ କାଳରେ ସ୍ଥାପିତ ହୋଇଥିବା ଅସମ୍ଭବ ନୁହେଁ । ସୂର୍ଯ୍ୟବଂଶୀ ରାଜାମାନଙ୍କ ରାଜତ୍ୱ ପୂର୍ବରୁ କେବଳ ଶ୍ରୀପୁରୁଷୋତ୍ତମ

ବିଗ୍ରହରେ ଏପରି ପରିବର୍ତ୍ତନ ଘଟିଥିଲା । ତେବେ ଏହା ଏକ ଗବେଷଣା ସାପେକ୍ଷ ସମସ୍ୟା ।

ଖ୍ରୀ. ତ୍ରୟୋଦଶ ଶତାବ୍ଦୀରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ନିଶ୍ଚିତ ଭାବେ ବାସୁଦେବ-ଶ୍ରୀକୃଷ୍ଣ ରୂପେ ପୂଜିତ ହେଲେ । ତାଙ୍କ ଜ୍ୟେଷ୍ଠ ଭ୍ରାତା ସଙ୍କର୍ଷଣ (ଅନନ୍ତ) ମଧ୍ୟ ଭାଗବତୋକ୍ତ ବୈଷ୍ଣବ-ଧର୍ମକୁ ଅନୁସରଣ କରି ପୂଜିତ ହେଉଥିଲେ । ତେଣୁ ସେ ସମୟରୁ ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କୁ ଶ୍ରୀମନ୍ଦିରରେ ଶ୍ରୀକୃଷ୍ଣଙ୍କ ସକାଶେ ନିର୍ଦ୍ଦିଷ୍ଟ 'ଦଶାକ୍ଷରୀ' ମନ୍ତ୍ରରେ ପୂଜା କରିବା ବିଧି ପ୍ରଚଳିତ ଅଛି । 'ଦଶାକ୍ଷରୀ ମନ୍ତ୍ର' ହେଉଛି "ଗୋପୀଜନ ବଲ୍ଲଭାୟ ସ୍ୱାହା" ଏବଂ "ଅଷ୍ଟାଦଶାକ୍ଷରୀ ମନ୍ତ୍ର" ହେଉଛି କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା" । ବଳଭଦ୍ରଙ୍କ ପୂଜାପାଇଁ ଦ୍ୱାଦଶାକ୍ଷରୀ ମନ୍ତ୍ର ନିର୍ଦ୍ଦିଷ୍ଟ ହୋଇଅଛି । ଯଥା "ଓ ନମୋ ଭଗବତେ ବାସୁଦେବାୟ ।" ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ଏକାକ୍ଷରୀ ମନ୍ତ୍ରରେ ଆରାଧନା କରାଯାଏ ଯଥା "ହ୍ରୀଂ" । ଶ୍ରୀଜଗନ୍ନାଥଙ୍କ ସମୁଦାୟ ୫ଟି ଭୋଗରୁ ପ୍ରଥମ ଓ ଶେଷ ଭୋଗ ପାଇଁ 'ଦଶାକ୍ଷରୀ-ମନ୍ତ୍ର' ଓ ଅନ୍ୟ ୩ଟି ମୁଖ୍ୟ ଭୋଗ, ଅର୍ଥାତ୍ ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାକାଳୀନ ଭୋଗପାଇଁ 'ଅଷ୍ଟାଦଶାକ୍ଷରୀ-ମନ୍ତ୍ର'ରେ ପୂଜା ସମ୍ପନ୍ନ କରିବା ବିଧି ରହିଛି । ଭୋଗ ପୂର୍ବରୁ ପୂଜକ ଶ୍ରୀକୃଷ୍ଣଙ୍କ ରୂପ ଗୋପ ଗୋପୀଙ୍କ ସହିତ ତାଙ୍କର କ୍ରୀଡ଼ା ଓ ବିଭୂତି ସ୍ମରଣ କରିଥାନ୍ତି ।

ପ୍ରାୟ ତ୍ରୟୋଦଶ ଶତାବ୍ଦୀରୁ କିମ୍ବା ତତ୍‌ପୂର୍ବରୁ ଏ ପ୍ରଥା ଶ୍ରୀମନ୍ଦିରରେ ପ୍ରଚଳିତ ହେବା ସମ୍ଭବ ବୋଲି ମନେହୁଏ, ଯେହେତୁ ଭୁବନେଶ୍ୱରସ୍ଥ ଅନନ୍ତ-ବାସୁଦେବ ମନ୍ଦିରର ବିଗ୍ରହ ଭାଗବତୋକ୍ତ କୃଷ୍ଣ-ସଙ୍କର୍ଷଣ-ସୁଭଦ୍ରାଙ୍କ ସ୍ୱରୂପ ନେଇ ଗଠିତ ହୋଇଅଛନ୍ତି ।

ସୂର୍ଯ୍ୟବଂଶୀ ମହାରାଜା କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଶୂଦ୍ର ମୁନି ସାରଳା ଦାସ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଜଗନ୍ନାଥଙ୍କୁ 'ବୁଦ୍ଧାବତାର' ବର୍ଣ୍ଣନା କରିଅଛନ୍ତି । ଦ୍ୱାରକାର ଶ୍ରୀକୃଷ୍ଣ ଓ ସର୍ବଶକ୍ତିମାନ ପୁରୁଷୋତ୍ତମ, ଯେଉଁ ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ରଥରେ ସାରଥୀ ରୂପେ ଅଂଶ ଗ୍ରହଣ କରିଥିଲେ, ସେ ସ୍ୱୟଂ ଜଗନ୍ନାଥ ବୋଲି ବର୍ଣ୍ଣନା କରିଅଛନ୍ତି ।

ଖ୍ରୀ: ୧୪ଶ ଶତାବ୍ଦୀରେ 'ଭାଗବତ ପୁରାଣ'ର ସୁପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ ଓଡ଼ିଶାର ବାଲେଶ୍ୱର ରେମୁଣାରେ ପ୍ରତିଷ୍ଠିତ ଗୋପୀନାଥଙ୍କ ମନ୍ଦିରରେ ରହି ଭାଗବତ ଶିକ୍ଷା କରିଥିବା ଅନୁମିତ ହୁଏ । ସେ ତାଙ୍କ ପରିଣତ ବୟସରେ

ପୁରୀର ଗୋବର୍ଦ୍ଧନ ମଠରେ ଅବସ୍ଥାନ କରି ସେଠାରେ ଶଙ୍କର-ଭାଷ୍ୟ ମଧ୍ଧ ଅଧ୍ୟୟନ କରିଥିଲେ । ଗଜପତି ପୁରୁଷୋତ୍ତମଦେବଙ୍କ ମହାମନ୍ତ୍ରୀ କବି ଚନ୍ଦ୍ରରାୟ (ଭକ୍ତ-ଭାଗବତ ମହାକାବ୍ୟ ପ୍ରଣେତା) 'ଦଶାକ୍ଷରୀ-ମନ୍ତ୍ର'ରେ ଗୋପାଳଙ୍କ ଉପାସନା କରୁଥିଲେ । (ତାଙ୍କ ରଚିତ ଲକ୍ଷଣାଦଶ ମହାକାବ୍ୟମ୍ ୩୨ ସର୍ଗ )

ପରେ ଢେଙ୍କାନାଳର କପିଳାସ ପର୍ବତରେ ପ୍ରତିଷ୍ଠିତ ଶିଖରେଶ୍ୱର ମନ୍ଦିର ସଂଲଗ୍ନ ବ୍ରହ୍ମଗୁମ୍ଫା-ମଠରେ ରହି ଭାଗବତର ଟୀକା ଲେଖିଥିବା ଅନୁମିତ ହୁଏ । ତାଙ୍କ ଗ୍ରନ୍ଥରେ ସେ ଶ୍ରୀଜଗନ୍ନାଥଙ୍କୁ ବାସୁଦେବ କୃଷ୍ଣଙ୍କ ଅବତାର ରୂପେ ଲେଖି ସୁଦ୍ଧା ପରବର୍ତ୍ତୀ କାଳରେ ସ୍ପଷ୍ଟ ରୂପେ ତାଙ୍କୁହିଁ ବୁଦ୍ଧାବତାର ବୋଲି ସାରଳା ଦାସ ବର୍ଣ୍ଣନା କରିଅଛନ୍ତି । ଗଜପତି ମହାରାଜା ପ୍ରତାପରୁଦ୍ରଙ୍କ ରାଜତ୍ୱ ପୂର୍ବରୁ ତାଙ୍କ ପିତା ପୁରୁଷୋତ୍ତମଦେବଙ୍କ ରାଜତ୍ୱ-କାଳରେ "ଗୋପାଳ ଚର୍ଚ୍ଚନ-ପଦ୍ଧତି" ବା "ନୀଳାଦ୍ରି ମହୋଦୟ" ନାମକ ଗ୍ରନ୍ଥ ରଚିତ ହୋଇଥିଲା । ସେଥିରେ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କ ପୂଜାବିଧି ବିସ୍ତାରିତ ଭାବେ ବର୍ଣ୍ଣିତ ହୋଇଅଛି । ବିଷ୍ଣୁଙ୍କ ଦଶାବତାର ମଧ୍ୟରୁ ନବମ ଅବତାର ବୁଦ୍ଧଙ୍କ ପରିବର୍ତ୍ତେ ଶ୍ରୀକୃଷ୍ଣ ବୋଲି ମଧ୍ୟ ସେଥିରେ ବର୍ଣ୍ଣିତ ହୋଇଅଛି । ଏଣୁ ଖ୍ରୀ: ୧୩ଶ ଶତାବ୍ଦୀରୁ ୧୬ଶ ଶତାବ୍ଦୀ ମଧ୍ୟରେ ନୀଳାଚଳର ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କୁ ବିଷ୍ଣୁଙ୍କର ଏକ ଅବତାର ରୂପେ କଳ୍ପନା କରି କେତେବେଳେ ତାଙ୍କୁ 'ବୁଦ୍ଧ' ରୂପରେ ଆଉ କେତେବେଳେ ବା 'କୃଷ୍ଣ' ରୂପରେ କଳ୍ପନା କରାଯାଇଥିବା ଅନୁମେୟ ।

ଖ୍ରୀ:୧୬ଶ ଶତାବ୍ଦୀରେ ଓଡ଼ିଶାକୁ ଶ୍ରୀଚୈତନ୍ୟଙ୍କ ଆଗମନ ପରେ ଏକ ନୂତନ ସଂସ୍କୃତ ବୈଷ୍ଣବ-ଧର୍ମରେ ଦେଖାଦେଲା । ସେତେବେଳେ ଶ୍ରୀଜଗନ୍ନାଥଙ୍କୁ 'ଅବତାରୀକୃଷ୍ଣ' ରୂପେ ଆରାଧନା କରାଗଲା । "କୃଷ୍ଣସ୍ତୁ ଭଗବାନ ସ୍ୱୟମ୍' (କୃଷ୍ଣ ହିଁ ସର୍ବଶକ୍ତିମାନ ଭଗବାନ) ତେଣୁ ସେ ହିଁ ଅବତାରମାନଙ୍କ ସୃଷ୍ଟିକର୍ତ୍ତା (ବିଷ୍ଣୁ)।—ଏହା ବରାହପୁରାଣ ଓ ଅଗ୍ନି ପୁରାଣରେ କୃଷ୍ଣଙ୍କ ବଳରାମଙ୍କ ସ୍ଥାନରେ ଅଷ୍ଟମ ଅବତାର ରୂପେ ଲେଖାଯାଇଛି । ଏ ବ୍ୟାଖ୍ୟାନ ତତ୍କାଳୀନ ବୈଷ୍ଣବ-ଦର୍ଶନରେ ପ୍ରଚାର ଲାଭ କଲା ।

ଓଡ଼ିଶା ଷ୍ଟେଟ ମ୍ୟୁଜିୟମ୍‌ରେ 'କୃଷ୍ଣ-ବିଷ୍ଣୁ'ଙ୍କ ଏକ ପ୍ରସ୍ତର ବିଗ୍ରହ ପ୍ରଦର୍ଶିତ ହୋଇଅଛି । ତ୍ରିଭଙ୍ଗ ଛନ୍ଦରେ ଦଣ୍ଡାୟମାନ ଶ୍ରୀକୃଷ୍ଣ ସେହି ବିଗ୍ରହର ନିମ୍ନ ଭାଗରେ ଅନନ୍ତଶାୟୀ ଭଗବାନ ବିଷ୍ଣୁଙ୍କ ମୂର୍ତ୍ତି ପ୍ରଦର୍ଶିତ ହୋଇ କେନ୍ଦ୍ରରେ ଥିବା ମୁଖ୍ୟ ଶ୍ରୀକୃଷ୍ଣଙ୍କ ବିଗ୍ରହର ଉଭୟ ପାର୍ଶ୍ୱରେ ଦଶଟି ଅବତାରଙ୍କୁ ପର୍ଯ୍ୟାୟ-କ୍ରମେ ପ୍ରଦର୍ଶିତ କରାଯାଇଅଛି । ଏହା ସେହି ଅନନ୍ତଶାୟୀ ବିଷ୍ଣୁ ବା 'ଅବତାରୀ'

ଶ୍ରୀକୃଷ୍ଣଙ୍କ ସ୍ୱରୂପର ଭାବନା ("କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍") ପ୍ରସୂତ ଏକ ପ୍ରାମାଣିକ ତଥ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସଙ୍କ ଲେଖାରୁ ପ୍ରମାଣିତ ହେଉଛି ଯେ, ବୌଦ୍ଧ ଦର୍ଶନର ପ୍ରଭାବ ତାଙ୍କ ରଚନାରେ ପ୍ରତିଫଳିତ ହୋଇଥିଲା । 'ଅବଧୂତ ଓ ଯଦୁରାଜା' ଆଖ୍ୟାନରେ ବର୍ଣ୍ଣିତ ବିବରଣୀ ବୌଦ୍ଧଧର୍ମ ନୀତିକୁ ଅନୁସରଣ କରିଥିବା ଉପଲବ୍ଧି ହୁଏ । ସେ ସମୟରେ ବା ତତ୍‌ପୂର୍ବରୁ ରଚିତ 'ଗୋପାଳ ସହସ୍ର ନାମ" ରେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ବୁଦ୍ଧ ରୂପେ ବର୍ଣ୍ଣନା କରାଯାଇଛି । ଯଥା—

'ବୁଦ୍ଧୋ ବୁଦ୍ଧିମତାଂ ଶ୍ରେଷ୍ଠୋ ବିଷ୍ଣୁର୍ଜିଷ୍ଣୁ ଶଚୀପତିଃ ।
ବଂଶୀ ବଂଶଧରୋ ଲୋକବିଲୋକୋ ମୋହନାଶନଃ ॥

(ଗୋ: ସ: ଶ୍ଳୋକ ୫୨)

ତେଣୁ କେବେ କେବେ ବିଷ୍ଣୁଙ୍କ ଅବତାର ବୁଦ୍ଧ ରୂପେ, ପୁଣି କେବେ କେବେ ଅଷ୍ଟମ ଅବତାର ବଳରାମଙ୍କ ସ୍ଥାନରେ ଶ୍ରୀକୃଷ୍ଣଙ୍କୁ କଳ୍ପନା କରାଯାଇଥିବା ପ୍ରତିପାଦିତ ହୁଏ । ଖ୍ରୀ: ୧୬ଶ ଶତାବ୍ଦୀ ବା ତତ୍‌ପୂର୍ବରୁ ତାଙ୍କୁ ସ୍ୱୟଂ ଗୋଲକବିହାରୀ ବିଷ୍ଣୁ (ଅବତାରୀ) ରୂପରେ ମଧ୍ୟ ଆରାଧନା କରାଯାଉଥିଲା । ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ସେପରି କେବେ କେବେ ବୁଦ୍ଧ (ନବମ ଅବତାର), କେବେ ଶ୍ରୀକୃଷ୍ଣ ରୂପେ ଗ୍ରହଣ କରି ତାନ୍ତ୍ରିକ-ବୈଷ୍ଣବମାନେ ତଦନୁରୂପକ ଆରାଧନା କରୁଥିଲେ । କିନ୍ତୁ ବୈଦିକପନ୍ଥୀ ରକ୍ଷଣଶୀଳ ବ୍ରାହ୍ମଣ ସଂପ୍ରଦାୟ ଖ୍ରୀ: ୧୫ ଶତାବ୍ଦୀରେ ପୁରୁଷୋତ୍ତମଙ୍କୁ ସ୍ୱୟଂ ବିଷ୍ଣୁ (ଅବତାରୀ) ବାସୁଦେବ କୃଷ୍ଣ ରୂପେ ଆରାଧନା କରିବାକୁ ଲାଗିଲେ । ସେହି ରକ୍ଷଣଶୀଳ ସଂପ୍ରଦାୟଙ୍କ ମଧ୍ୟରେ ଶାସ୍ତ୍ରାନୁମୋଦିତ ବର୍ଣ୍ଣାଶ୍ରମଧର୍ମ ହିଁ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । 'ଭଗବତ୍ ଗୀତା'ରେ ଶ୍ରୀକୃଷ୍ଣଙ୍କ ମୁଖ ନିଃସୃତ ନିମ୍ନୋକ୍ତ ବାଣୀକୁ ଭିତ୍ତି-କରି 'ମାନବଧର୍ମ' ଶାସ୍ତ୍ରକୁ ସେମାନେ ଗ୍ରହଣ କରିଥିଲେ :—

"ଚାତୁର୍ବର୍ଣ୍ଣ୍ୟଂ ମୟାସୃଷ୍ଟଂ ଗୁଣକର୍ମବିଭାଗଶଃ"

ଏହି ନୀତି ଅନୁସାରେ ଶମ, ଦମ, ତପ, ଶୌଚ, ଜ୍ଞାନ, ବିଜ୍ଞାନ ପ୍ରଭୃତି କର୍ମଗୁଡ଼ିକ କେବଳ ବ୍ରାହ୍ମଣମାନଙ୍କର ହିଁ ଅଧିକାରଭୁକ୍ତ ବୋଲି ସେମାନେ ଦୃଢ ବିଶ୍ୱାସ କରୁଥିଲେ । ଦଶକର୍ମରେ ଯଜ୍ଞୋପବୀତ ଧାରଣ କରିଥିବା ସେହି ବ୍ରାହ୍ମଣଙ୍କ ଅଧିକାରକୁ ଅନ୍ୟ ଜାତିମାନେ ଗ୍ରହଣ କରିବା ଶାସ୍ତ୍ର ବିରୋଧ କର୍ମ ବୋଲି ସେମାନେ ଜାଣିଥିଲେ । କିନ୍ତୁ ତାନ୍ତ୍ରିକ ସହଜିଆ ମତାଶ୍ରିତ ବୈଷ୍ଣବ-ମାନେ ସେଥିର ବ୍ୟତିକ୍ରମ କରି "ସର୍ବଧର୍ମ ସମନ୍ୱୟ" ନୀତି ଗ୍ରହଣ କରି ଶ୍ରୀପୁରୁଷୋତ୍ତମ

ହେଉଛନ୍ତି ଅଂଶସ୍ୱରୂପ 'କୃଷ୍ଣଭକ୍ତ'କୁ ଅଧିକରୁ ଅଧିକ ପ୍ରଶଂସିତ କଲେ । କିମ୍ବଦନ୍ତୀ ଅଛି ଯେ, ମହାରାଜା ପ୍ରତାପରୁଦ୍ରଙ୍କ ରାଜସଭାରେ ବ୍ରାହ୍ମଣ ଓ ବୈଷ୍ଣବମାନଙ୍କ ମଧ୍ୟରେ ଯୁକ୍ତିତର୍କ ପ୍ରବଳ ଆକାର ଧାରଣ କରିଥିଲା । ଭାଗବତ ପୁରାଣକୁ ସ୍ୱୀକାର କରି ପରମାର୍ଥ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଯେଉଁମାନେ ଦୃଢଭାବରେ ବୌଦ୍ଧତାନ୍ତ୍ରିକ ବୈଷ୍ଣବ ଧର୍ମକୁ ପ୍ରତ୍ୟାଖ୍ୟାନ କରୁଥିଲେ, ତାଙ୍କ ଗୋଷ୍ଠୀରେ ଆଚାର୍ଯ୍ୟ କବି ଡିଣ୍ଡିମ ଜୀବଦେବ ପ୍ରଧାନ । ସେ ଗଜପତି ମହାରାଜା ପ୍ରତାପରୁଦ୍ରଙ୍କ ସଭାରେ "ରାଜଗୁରୁ" ଏବଂ ଓ 'କବିଡିଣ୍ଡିମ' ଉପାଧି ଲାଭ କରିଥିଲେ । ତାଙ୍କ ରଚିତ 'ଭକ୍ତ ଭାଗବତ ମହାକାବ୍ୟମ୍' ୩୨ ସର୍ଗ ବିଶିଷ୍ଟ ଏକ ସରଳ ସଂସ୍କୃତ ଭାଷାରେ ରଚିତ ଗ୍ରନ୍ଥରୁ ସ୍ପଷ୍ଟ ଜଣାଯାଏ ଯେ, ଶ୍ରୀମଦ୍‌ଭାଗବତ-ପୁରାଣ ଅବଲମ୍ବନରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାକୁ ଆଧାର-କରି ତାହା ଲେଖା ଯାଇଛି । ତାଙ୍କ ରଚିତ 'ଭକ୍ତ ବୈଭବ ନାଟକ'ରେ ସୂତ୍ରଧାର ମୁଖରେ ସେ ପ୍ରକାଶ କରିଛନ୍ତି ଯେ, ଶ୍ରୀକୃଷ୍ଣଙ୍କଠାରେ ବିଶୁଦ୍ଧ ଭକ୍ତିମୂଳକ କର୍ମ ହିଁ ଅବଲମ୍ବନୀୟ । ଶୈବ, ପାଶୁପତ, ବୌଦ୍ଧ, କୌଳିକ ପ୍ରଭୃତି ବିଭିନ୍ନ ମତ ପ୍ରତି ଆକ୍ଷେପ କରି ସେ ଲେଖିଛନ୍ତି:—

"ଶୈବଂ ପାଶୁପତଂ ତଥାଗତମତଂ ନ ମୌଳିକଂ କୌଳିକମ୍ ।
ସର୍ବଃ ନ୍ୟାୟଶତୈଃ ନିରସ୍ୟ ନିହିତଂ କୃଷ୍ଣସ୍ୟ ଶୁଦ୍ଧଂ ମତମ୍ ॥

ଖ୍ରୀ: ୧୫୧୦ରେ ଶ୍ରୀଚୈତନ୍ୟ ଓଡ଼ିଶାକୁ ଆସି ବ୍ରାହ୍ମଣେତର ଜାତିମାନଙ୍କୁ ବହୁ ସଂଖ୍ୟାରେ ବୈଷ୍ଣବ ଧର୍ମରେ ଦୀକ୍ଷିତ କରାଇ ମୋକ୍ଷର ସହଜ ପନ୍ଥା ରୂପେ 'ନାମ ସଂକୀର୍ତ୍ତନ' ହିଁ କଳିଯୁଗର ଶ୍ରେଷ୍ଠ ଉପାୟ ବୋଲି ପ୍ରଚାର କରିଥିଲେ । ଶ୍ରୀପୁରୁଷୋତ୍ତମ-ଜଗନ୍ନାଥ ଶ୍ରୀକୃଷ୍ଣଙ୍କ ଅଭିନ୍ନ ବିଗ୍ରହ ରୂପେ ଗୃହୀତ ହୋଇଥିବାରୁ ତାନ୍ତ୍ରିକ ଶୈବ ଓ ଶାକ୍ତ ସମ୍ପ୍ରଦାୟ ମଧ୍ୟ ତାଙ୍କୁ ଭୈରବ ରୂପେ ଆରାଧନା କରିବାକୁ ଲାଗିଲେ । ବିମଳାଙ୍କୁ ଶ୍ରୀଜଗନ୍ନାଥଙ୍କ ଶକ୍ତି-ସ୍ୱରୂପିଣୀ-ଭୈରବୀ ରୂପେ ଗ୍ରହଣ କରି ମହାଷ୍ଟମୀ ଦେବୀ-ପୂଜା କାଳରେ ତାଙ୍କ ସମ୍ମୁଖରେ ଛାଗବଳି ଦେବା ପ୍ରଥା ମଧ୍ୟ ଶ୍ରୀମନ୍ଦିରରେ ପ୍ରବର୍ତ୍ତିତ ହେଲା ।

ବୈଦିକ-ବ୍ରାହ୍ମଣମାନଙ୍କ ସଙ୍ଗେ ମତଭେଦ ହେତୁ ଗୌଡ଼ୀୟ ବୈଷ୍ଣବ ତଥା ଆଚାର୍ଯ୍ୟ ଗୋଷ୍ଠୀରେ ଜୀବାଚାର୍ଯ୍ୟଙ୍କ ପରି ବିଶିଷ୍ଟ ବୈଷ୍ଣବଙ୍କୁ କିମ୍ବା ଅନ୍ୟାନ୍ୟ ରକ୍ଷଣଶୀଳ ବର୍ଣ୍ଣାଶ୍ରମଧର୍ମୀ ବ୍ରାହ୍ମଣପଣ୍ଡିତଙ୍କୁ ଗଣନା କରାଯାଇ ନାହିଁ । କାୟସ୍ଥ କୁଳରେ ତୁଳସୀମାଳା ଧାରଣ ଓ ନାମ ସଂକୀର୍ତ୍ତନ ବିଶେଷ ଭାବେ ପ୍ରସାର ଲାଭ କଲା । ଶ୍ରୀରଘୁନାଥ ଦାସ ଗୋସ୍ୱାମୀଙ୍କ ପରି ଜଣେ କାୟସ୍ଥ ଶ୍ରୀଚୈତନ୍ୟଙ୍କଠାରୁ ଗୋବର୍ଦ୍ଧନ ଶିଳା (ଶାଳଗ୍ରାମ) ଗ୍ରହଣ କରି

ସେଥିର ଆରାଧନା କରିବାକୁ ଲାଗିଲେ । 'ହରିଭକ୍ତି-ବିଳାସ' ସ୍ମୃତିଗ୍ରନ୍ଥରେ ଶାଳଗ୍ରାମ ପୂଜା ପାଇଁ ବ୍ରାହ୍ମଣ, ଶୂଦ୍ର, ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସମସ୍ତଙ୍କ ଅଧିକାର ଥିବା ପ୍ରସଙ୍ଗ ଲେଖାଗଲା । ସେଥିର ଟୀକାକାର ସନାତନ ଗୋସ୍ୱାମୀ ଭଗବଦ୍‌ଦୀକ୍ଷା ନେଇଥିବା ଶୂଦ୍ରମାନେ ମଧ୍ୟ ବ୍ରାହ୍ମଣଙ୍କ ସଙ୍ଗେ ସମାନ ଓ ଶାଳଗ୍ରାମ ପୂଜା କରିବା ଅଧିକାରରୁ ବଞ୍ଚିତ ନୁହନ୍ତି ବୋଲି ଲେଖିଲେ ।

ଶ୍ରୀଚୈତନ୍ୟଙ୍କ ସମୟରେ ଓଡ଼ିଶାର ବୈଷ୍ଣବ-ଧର୍ମରେ ଯେଉଁ ପରିବର୍ତ୍ତନ ଦେଖାଦେଲା, ସେଥିରେ ସାଧାରଣ ଲୋକଙ୍କ ମଧ୍ୟରେ ବ୍ୟଙ୍ଗାତ୍ମକ ଉକ୍ତି ପ୍ରବାଦଟି ରହି ଯାଇଛି:—

"ହାଣ୍ଡି ବାଉଁଶ ଚେର ଗୋଲା
ବୈଷ୍ଣବ ହେଲେ ସବୁ ଗଲା" ।

ବାସ୍ତବରେ ବର୍ଣ୍ଣାଶ୍ରମଭେଦ ବୈଷ୍ଣବ ଧର୍ମକୁ ନିର୍ମୂଳ କରି ଯେଉଁ ସମନ୍ୱୟ ଧର୍ମର ବିକାଶ ନିମନ୍ତେ ଶ୍ରୀମନ୍ଦିର ଗଠନ ପୂର୍ବରୁ ଗଙ୍ଗବଂଶୀୟ ମହାରାଜା ଚୋଡ଼ଗଙ୍ଗଦେବ ପରିକଳ୍ପନା କରିଥିଲେ ଏବଂ ଯାହା ପରବର୍ତ୍ତୀ ଯୁଗରେ ବ୍ରାହ୍ମଣ-ସମ୍ପ୍ରଦାୟର ପ୍ରଭାବରେ ନଷ୍ଟ ହେବାକୁ ବସିଥିଲା, ସେଥିର ପୁନଃ ସଂସ୍କାର ଖ୍ରୀ:୧୬ଶ ଶତାବ୍ଦୀର ସମ୍ପାଦିତ ହୋଇଥିବା ସମ୍ଭବ । ତେଣୁ ଓଡ଼ିଶାର ଗ୍ରାମାଞ୍ଚଳରେ 'ଭାଗବତ-ଟୁଙ୍ଗୀ' ମାନଙ୍କରେ ଜଗନ୍ନାଥ ଦାସଙ୍କ 'ଭାଗବତ ପୁରାଣ' ପାଠ କରିବା ଓଡ଼ିଶାର ଏକ ଚିରାଚରିତ ପ୍ରଥାରେ ପରିଣତ ହେଲା । ସେଥି ସଙ୍ଗେ ଆଉ ମଧ୍ୟ ଶ୍ରୀଚୈତନ୍ୟଙ୍କ ପ୍ରବର୍ତ୍ତିତ 'ନାମ-ସଂକୀର୍ତ୍ତନ' ଓଡ଼ିଶାରେ ସର୍ବତ୍ର ଧ୍ୱନିତ ହେଲା । ରାୟରାମାନନ୍ଦଙ୍କ ପରି ଜଣେ ନିଷ୍ଠାପର ବୈଷ୍ଣବ କରଣ କୁଳରେ ଜନ୍ମଲାଭ କରି ଶ୍ରୀଚୈତନ୍ୟଙ୍କ ପ୍ରିୟପାତ୍ର ହୋଇଥିଲେ । ସେ କିଛିକାଳ ଓଡ଼ିଶା ଗଜପତିଙ୍କ ପକ୍ଷରୁ ନିଯୁକ୍ତ ହୋଇ ରାଜମହେନ୍ଦ୍ରୀଠାରେ ଗୋଦାବରୀ ତଟରେ ସେ ଅଞ୍ଚଳର ଶାସକ ରୂପେ ରହିଥିଲେ । କିନ୍ତୁ ସେ ପରମ ବୈଷ୍ଣବ ଓ କୃଷ୍ଣଙ୍କ ଉପାସକ ଓ ପଣ୍ଡିତ । କରଣକୁଳୋଦ୍ଭବ ରାୟରାମାନନ୍ଦଙ୍କ ରଚିତ "ଶ୍ରୀଜଗନ୍ନାଥ-ବଲ୍ଲଭ-ନାଟକମ୍"ରେ ରାଧାକୃଷ୍ଣଙ୍କ ପ୍ରେମଲୀଳା ସଙ୍ଗୀତ ମାଧ୍ୟମରେ ବର୍ଣ୍ଣିତ ହୋଇଅଛି । ତାଙ୍କର ଉଦ୍ୟମରେ ସେ ଅଞ୍ଚଳରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ନିର୍ମିତ ହୋଇଥିଲା ।

କାଳର ପ୍ରସାର ସଙ୍ଗେ ଶ୍ରୀଜଗନ୍ନାଥଙ୍କ ଧର୍ମରେ ମଧ୍ୟ ବହୁ ପରିବର୍ତ୍ତନ ଦେଖାଦେଇଥିବା ଓଡ଼ିଶା ଇତିହାସର ଏକ ଅବିସ୍ମରଣୀୟ ପ୍ରସଙ୍ଗ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତଥାପି ଏଥିର ବିଶଦ୍ ଆଲୋଚନା ମଧ୍ୟ ଆବଶ୍ୟକ ।

# ଶ୍ରୀଜଗନ୍ନାଥ-କ୍ଷେତ୍ରରେ ସର୍ବସମନ୍ୱୟଧର୍ମର ଗୁରୁତ୍ୱ

ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ପୁରୀର ତୀର୍ଥରାଜ ମହୋଦଧିତଟସ୍ଥ ଏକ ମଣ୍ଡପରେ ସ୍ଥାପିତ ହୋଇଥିବା ପ୍ରସଙ୍ଗ ଅନ୍ୟ ଏକ ପ୍ରବନ୍ଧରେ ପ୍ରକାଶ କରିଛୁ । ସୋମବଂଶୀ ମହାରାଜା ମହାଭବଗୁପ୍ତ ଜନମେଜୟଙ୍କ ଗୋଟିଏ ତାମ୍ର ଶାସନରେ ଲେଖାଅଛି । ଉଡ୍ରଦେଶସ୍ଥ ପୁରୁଷ-ମଣ୍ଡପ-ଗ୍ରାମ'ରୁ ଜଣେ ବୈଷ୍ଣବ ଧର୍ମାବଲମ୍ବୀ ଶାନ୍ତକର ନାମକ ବ୍ରାହ୍ମଣ ଜନମେଜୟଙ୍କ ଠାରୁ କାର୍ତ୍ତିକ ମାସ ଶୁକ୍ଳ ଦ୍ୱାଦଶୀ ତିଥିରେ, ଅର୍ଥାତ୍ ବିଷ୍ଣୁଙ୍କର ଉତ୍‌ଥାପନ ଦ୍ୱାଦଶୀ ପୁଣ୍ୟ ତିଥିରେ ଗୋଟିଏ ଗ୍ରାମ ଦାନ ଗ୍ରହଣ କରିଥିଲେ । ସୁତରାଂ ଖ୍ରୀ:୧୦ମ ଶତାବ୍ଦୀରେ ଉଡ୍ର ଦେଶରେ ଥିବା 'ପୁରୁଷ-ମଣ୍ଡପ' ନାମକ ଗ୍ରାମଟି ସମ୍ଭବତଃ ପୁରୀ ସମୁଦ୍ର ତଟରେ ଥିଲା । ତୀର୍ଥରାଜ ମହୋଦଧି ତଟର ଏକ ମଣ୍ଡପରେ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ସ୍ଥାପନ କରି ସେଠାର ବୈଷ୍ଣବଧର୍ମୀ ବ୍ରାହ୍ମଣମାନେ ତାଙ୍କର ସେବା ଓ ସ୍ତୁତି ପାଠ କରୁଥିଲେ । କାରଣ ମଧ୍ୟପ୍ରଦେଶସ୍ଥ ମହାସ୍ଥାରଠାରେ ପ୍ରତିଷ୍ଠିତ ସରସ୍ୱତୀ-ମନ୍ଦିର ଗାତ୍ରରେ ଥିବା ଖ୍ରୀଷ୍ଟୀୟ ପ୍ରାୟ ୯ମ ଶତାବ୍ଦୀର ଏକ ଶିଳାଲେଖରେ ବର୍ଣ୍ଣିତ ହୋଇଛି ଯେ, ଦାମୋଦର ନାମକ ଜଣେ ବାଳକ ମହୋଦଧିରେ ସ୍ନାନ କଲାବେଳେ ଶ୍ରୀପୁରୁଷୋତ୍ତମଙ୍କ ମୁଖ ଦର୍ଶନ କରି ବୁଡ଼ି ଯାଇଥିଲା । ତେଣୁ ସେ ନିଶ୍ଚିତ ଭାବେ ସ୍ୱର୍ଗପ୍ରାପ୍ତ ହୋଇଥିବ ବୋଲି ସେହି ଅଭିଲେଖରେ ବର୍ଣ୍ଣିତ ହୋଇଛି । ଏଥିରୁ ଆମେ ଉପଲବ୍‌ଧି କରିପାରୁଛୁ ଯେ, ମହୋଦଧିରେ ସ୍ନାନ କଲାବେଳେ ସେଥିର ଉପକୂଳରେ ଥିବା ଖୋଲା ମଣ୍ଡପରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରିବା ସେହି ବାଳକ ପକ୍ଷେ ସମ୍ଭବ ହୋଇଥିବ । ସମୁଦ୍ର ତଟବର୍ତ୍ତୀ ତମାଳତରୁ କନ୍ଦଳସ୍ଥ ଶ୍ରୀପୁରୁଷୋତ୍ତମଙ୍କ ଯାତ୍ରା ମଧ୍ୟ ସେଠାରେ ଅନୁଷ୍ଠିତ ହେଉଥିବା ପ୍ରସଙ୍ଗ ଖ୍ରୀଷ୍ଟୀୟ ପ୍ରାୟ ୧୦ମ ଶତାବ୍ଦୀରେ ମୁରାରୀଙ୍କ ରଚିତ ସଂସ୍କୃତ ନାଟକ 'ଅନର୍ଘ-ରାଘବ'ରେ ସୂତ୍ରଧାରଙ୍କ ମୁଖରେ ବର୍ଣ୍ଣିତ ହୋଇଅଛି । ଏଣୁ ଖ୍ରୀ: ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ପୁରୁଷୋତ୍ତମଙ୍କ ପାଇଁ କୌଣସି ସ୍ୱତନ୍ତ୍ର ମନ୍ଦିର ପୁରୀରେ ଗଠିତ ହୋଇ ନଥିଲା ।

ଖ୍ରୀ: ୧୦ମ ଶତାବ୍ଦୀରେ ଶ୍ରୀପୁରୁଷୋତ୍ତମଙ୍କୁ ନାରାୟଣ-ମନ୍ତ୍ରରେ ଆରାଧନା କରାଯାଉଥିଲା । ଦକ୍ଷିଣ ଭାରତରେ ବେଙ୍ଗିର ପୂର୍ବ ଚାଲୁକ୍ୟ ବଂଶୀୟ ମହାରାଜା

ରାଜରାଜଙ୍କର ଶକାବ୍ଦ ୯୯୪ (ଖ୍ରୀ. ୧୦୭୨)ରେ ଖୋଦିତ ଏକ ତାମ୍ର ଶାସନରେ ଶ୍ରୀଧାମସ୍ଥ ଶ୍ରୀପୁରୁଷୋତ୍ତମଙ୍କୁ ନାରାୟଣ ଆଖ୍ୟାରେ ଅଭିହିତ କରାଯାଇଛି, ଯଥା—

"ଶ୍ରୀଧାମ୍ନଃ ପୁରୁଷୋତ୍ତମସ୍ୟ ମହିତେ୍ୟ ନାରାୟଣସ୍ୟ ପ୍ରଭୋ ।"

**(E. 9. Vol. V. P. 120. G. H. Ojhas, The Palaeography of India, Plate No.-49 and P. 87)**

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ସୋମବଂଶୀୟ ମହାରାଜା ଯଯାତିକେଶରୀ ଖ୍ରୀ. ୧୧ଶ. ଶତାବ୍ଦୀରେ ଶ୍ରୀପୁରୁଷୋତ୍ତମଙ୍କ ପ୍ରକାଶେ ପୁରୀର ସମୁଦ୍ର ତଟଠାରୁ ଏକ ଉଚ୍ଚ ସ୍ଥାନରେ ଗୋଟିଏ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରି ସେଥିରେ ଚତୁର୍ବାହୁ ବିଶିଷ୍ଟ ଶ୍ରୀପୁରୁଷୋତ୍ତମ (ନାରାୟଣ)ଙ୍କ ପ୍ରସ୍ତର ବିଗ୍ରହ ସ୍ଥାପନ କରିଥିଲେ । ସେତେବେଳେ ଯେଉଁ ବ୍ରାହ୍ମଣମାନେ ଉତ୍କଳରେ ସୋମବଂଶୀ ରାଜାମାନଙ୍କ ଦରବାରରେ ରହିଥିଲେ ସେମାନଙ୍କ ମଧ୍ୟରେ ଅଧିକାଂଶ ଶିବ ଭକ୍ତ ଏବଂ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ-ମତବାଦୀ ଥିଲେ । ତେଣୁ ସେମାନଙ୍କ ପରାମର୍ଶ କ୍ରମେ ଯଯାତି ମହାଶିବ ଗୁପ୍ତ ଭୁବନେଶ୍ୱରଠାରେ ବିରାଟ ଆକାରରେ ଶ୍ରୀଲିଙ୍ଗରାଜ ମନ୍ଦିର ଗଠନ କରି ଶୈବାଚାର୍ଯ୍ୟମାନଙ୍କୁ ସନ୍ତୁଷ୍ଟ କରିଥିଲେ । ତାଙ୍କ ରାଣୀ କୋଳାବତୀ ମଧ୍ୟ ଭୁବନେଶ୍ୱରଠାରେ ବ୍ରହ୍ମେଶ୍ୱର ମନ୍ଦିର ଗଠନ କରାଇ ଶୈବାଚାର୍ଯ୍ୟମାନଙ୍କୁ ଅଧିକ ଉତ୍ସାହିତ କରିଥିଲେ । ଏହା ଫଳରେ ପୁରୀରେ ଯଯାତିଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିରର ସୁରକ୍ଷା ପ୍ରତି ବିଶେଷ ଧ୍ୟାନ ଦିଆଗଲା ନାହିଁ । କ୍ରମେ ସେହି ବିଷ୍ଣୁ ମନ୍ଦିରଟି ଦୁର୍ବଳ ହୋଇଗଲା ।

ମହାରାଜା ଯଯାତିଙ୍କ ପରେ ସୋମବଂଶରେ ଯେଉଁ ରାଜାମାନେ ଉତ୍କଳରେ ରାଜତ୍ୱ କରୁଥିଲେ, ସେମାନେ ତାଙ୍କ ମନ୍ତ୍ରୀପରିଷଦର କୁମନ୍ତ୍ରଣା ହେତୁ ପ୍ରଜାମାନଙ୍କ ଉପରେ ବିଭିନ୍ନ ପ୍ରକାର କର ବସାଇ ସେମାନଙ୍କ ଅର୍ଥଶୋଷଣ କରିବାକୁ ଲାଗିଲେ । ଏହା ଫଳରେ ରାଜ୍ୟରେ ପ୍ରଜାମାନଙ୍କ ଅସନ୍ତୋଷ ବୃଦ୍ଧି ଲାଭ କଲା ।

ଏଠାରେ କହିବା ଆବଶ୍ୟକ ଯେ, ସେତେବେଳେ ଦକ୍ଷିଣ-ଭାରତରେ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ-ମତ ତଥା ମାୟାବାଦ ପରିବର୍ତ୍ତେ ବୈଷ୍ଣବ-ଧର୍ମାବଲମ୍ବୀ 'ରାମାନୁଜାଚାର୍ଯ୍ୟ'ଙ୍କ ବିଶିଷ୍ଟାଦ୍ୱୈତ-ମତ ପ୍ରସାର ଲାଭ କରିଥିଲା । କାଞ୍ଚିର

ଚୋଳବଂଶୀୟ ମହାରାଜା କୁଲୋତ୍ତୁଙ୍ଗ (୧ମ)ଙ୍କ ରାଜତ୍ୱ କାଳରେ ଶ୍ରୀରଙ୍ଗପତ୍ତନଠାରେ ବିଷ୍ଣୁଙ୍କ ଆରାଧନା ପ୍ରାଧାନ୍ୟ ଲାଭ କଲା । 'ପଞ୍ଚରାତ୍ର'-ପଦ୍ଧତିରେ ବିଷ୍ଣୁଙ୍କୁ ଆରାଧନା କରି ତତ୍‌ସ୍ଥ ଆଲବାର-ସମ୍ପ୍ରଦାୟ ରାମାନନ୍ଦପନ୍ଥୀଙ୍କ ବ୍ୟବହାର କରିବାକୁ ଲାଗିଲେ । ରାମାନୁଜଙ୍କ ଶିଷ୍ୟମାନେ ମଧ୍ୟ ବୈଷ୍ଣବ ସଂପ୍ରଦାୟ ଗଠନ କରି କେବଳ ଦକ୍ଷିଣ ଭାରତରେ ନୁହେଁ, ଉତ୍କଳକୁ ଲାଗିରହିଥିବା କଳିଙ୍ଗରେ ମଧ୍ୟ ବିଷ୍ଣୁମନ୍ଦିରମାନଙ୍କରେ ପ୍ରଧାନ ଗୁରୁ ରୂପେ ରହିଲେ । ସେତେବେଳେ ଦକ୍ଷିଣରେ ଚୋଳ ଚାଳୁକ୍ୟ ରାଜାମାନଙ୍କ ସଙ୍ଗେ ବୈବାହିକ ସମ୍ପର୍କ ସ୍ଥାପନ କରି କଳିଙ୍ଗର ଗଙ୍ଗବଂଶୀୟ ରାଜାମାନେ ମୁଖ୍ୟତଃ ଶୈବଧର୍ମାବଲମ୍ବୀ ହୋଇଥିଲେ ସୁଦ୍ଧା ଦୁଇଟି ବିଷ୍ଣୁମନ୍ଦିର ସିନ୍ଧୁ ତଟରେ ନିର୍ମାଣ କଲେ । ସେଥିରେ ରାମାନୁଜପନ୍ଥୀ ବୈଷ୍ଣବ ଗୁରୁମାନଙ୍କୁ ରଖାଇ ତାଙ୍କଠାରୁ ବୈଷ୍ଣବ ଦୀକ୍ଷା ଗ୍ରହଣ କରୁଥିଲେ । ସେହି ଦୁଇଟି ବିଷ୍ଣୁମନ୍ଦିର ହେଉଛି; ସିଂହାଚଳ ପାହାଡ଼ ଉପରେ ଥିବା ବରାହ-ନରସିଂହ ମନ୍ଦିର ଏବଂ ଶ୍ରୀକୂର୍ମପାଟଣରେ ଥିବା ଶ୍ରୀକୂର୍ମଙ୍କ ମନ୍ଦିର ।

ଏଠାରେ କହିବା ଆବଶ୍ୟକ ଯେ, କୁଲୋତ୍ତୁଙ୍ଗ ଚୋଳ (ଖ୍ରୀ; ୧୦୭୦-୧୧୧୮)ଙ୍କ କନ୍ୟା ରାଜସୁନ୍ଦରୀଙ୍କ ସହିତ କଳିଙ୍ଗର ମହାରାଜା ଗଙ୍ଗବଂଶୀୟ ରାଜରାଜଦେବଙ୍କ ବିବାହ ପ୍ରାୟ ୧୦୭୦ ଖ୍ରୀଷ୍ଟାବ୍ଦରେ ସମ୍ପନ୍ନ ହୋଇଥିଲା ଏବଂ ରାଜସୁନ୍ଦରୀଙ୍କ ଗର୍ଭରୁ ପ୍ରାୟ ୧୦୭୬ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗ ଜନ୍ମଲାଭ କରିଥିଲେ । ୧୦୭୮ ଖ୍ରୀଷ୍ଟାବ୍ଦରେ ତାଙ୍କ ପିତା ରାଜରାଜଦେବଙ୍କ ମୃତ୍ୟୁ ହେବାରୁ କଳିଙ୍ଗ ଅରାଜକ ହେବା ଦେଖି ବିଭିନ୍ନ ଦିଗରୁ ସେହି ରାଜ୍ୟଟି (କଳିଙ୍ଗ) ଆକ୍ରମଣ କରିବାକୁ ଶତ୍ରୁ ରାଜାମାନେ ଉଦ୍ୟତ ହେଲେ । ଏପରି ଏକ ସଙ୍କଟମୟ ଅବସ୍ଥାରୁ ରାଜ୍ୟର ସୁରକ୍ଷା ପାଇଁ ରାଜସୁନ୍ଦରୀଙ୍କ ଅନୁରୋଧ କ୍ରମେ କୁଲୋତ୍ତୁଙ୍ଗଙ୍କ ଦ୍ୱିତୀୟ ପୁତ୍ର ବୀରଚୋଡ଼ କଳିଙ୍ଗକୁ ଆସି ପ୍ରାୟ ୫ବର୍ଷ ବୟସ୍କ ଭଗିନେୟ ଚୋଡଗଙ୍ଗଙ୍କୁ କଳିଙ୍ଗରେ ଅଭିଷିକ୍ତ କରାଇ ସେହି ରାଜ୍ୟର ଶାସନ କାର୍ଯ୍ୟ ନିଜେ ଭଗିନେୟଙ୍କ ପକ୍ଷରୁ ପରିଚାଳିତ କଲେ । ଚୋଡ଼ଗଙ୍ଗଙ୍କ ଶିକ୍ଷା ନିମନ୍ତେ ଉପଯୁକ୍ତ ପଣ୍ଡିତମାନଙ୍କୁ ନିଯୁକ୍ତ କରିଦେଲେ । କାରଣ ରାଜ୍ୟଭାର ବହନ ପୂର୍ବରୁ ଯଥେଷ୍ଟ ଶିକ୍ଷା ଲାଭକରିବା ଆବଶ୍ୟକ । ବାସ୍ତବରେ ବୀରଚୋଡ଼ଙ୍କ ଯୋଗୁଁ କଳିଙ୍ଗର ଶାସନକାର୍ଯ୍ୟ କେବଳ ଉତ୍ତମ ରୂପେ ପରିଚାଳିତ ହେଲା ନାହିଁ, ଚୋଡଗଙ୍ଗଙ୍କ ଶିକ୍ଷାରେ ମଧ୍ୟ ଯଥେଷ୍ଟ ଉନ୍ନତି ସମ୍ଭବ ହେଲା ଉପଯୁକ୍ତ ଶିକ୍ଷକମାନଙ୍କ ଅଧୀନରେ ରହି ସେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର [illegible] ଦର୍ଶନଶାସ୍ତ୍ର ଓ ଧର୍ମଶାସ୍ତ୍ରରେ ପାରଦର୍ଶିତା ଲାଭ କଲେ । [illegible] ସେ ଯେଉଁ ପାଣ୍ଡିତ୍ୟ ଲାଭ କରିଥିଲେ, ସେଥିପାଇଁ ତାଙ୍କୁ [illegible]

ଆଖ୍ୟାରେ ଅଭିହିତ କରି ଗୋଟିଏ ଅଭିଲେଖରେ ତାଙ୍କୁ ପ୍ରଶଂସା କରାଯାଇଛି । (I. P. T. O. R.J., Vol-1, P-52)

ତାଙ୍କର ଯୌବନ କାଳରେ ୧୦୯୬ ଖ୍ରୀଷ୍ଟାବ୍ଦରେ ଯେତେବେଳେ ତାଙ୍କ ବୟସ ପ୍ରାୟ ୨୪ ବା ୨୫ ବର୍ଷ, ସେତେବେଳେ ଦକ୍ଷିଣଭାରତରୁ ପ୍ରସିଦ୍ଧ ଧର୍ମ ଶାସ୍ତ୍ରଜ୍ଞ ରାମାନୁଜ ହୋୟସାଲ ରାଜ୍ୟ ପରିତ୍ୟାଗ କରି କଳିଙ୍ଗକୁ ଆସିଥିଲେ । ସେଠାରେ ବିଷ୍ଣୁ ମନ୍ଦିର ସିଂହାଚଳ ଏବଂ ଶ୍ରୀକୂର୍ମସ୍ଥ ଉଭୟ ମନ୍ଦିରରେ ତାଙ୍କର ଶିଷ୍ୟମାନଙ୍କୁ ରଖାଇ ସେ ନିଜେ ପ୍ରଚାର କରିଥିବା 'ବଶିଷ୍ଟାଦ୍ୱୈତ-ମତ' ସେଠାରେ ପ୍ରଚଳିତ କଲେ । କଳିଙ୍ଗର ମହାରାଜା ଚୋଡ଼ଗଙ୍ଗ ନିଜେ ଗଙ୍ଗବଂଶୀୟ ରାଜାମାନଙ୍କ ଶୈବଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରି 'ପରମମାହେଶ୍ୱର' ଉପାଧି ବ୍ୟବହାର କରୁଥିଲେ ମଧ୍ୟ, ରାମାନୁଜଙ୍କ ଶିଷ୍ୟମାନଙ୍କଠାରୁ ଦର୍ଶନ-ଶାସ୍ତ୍ର ଶିକ୍ଷା କରି 'ପରମବୈଷ୍ଣବ' ଓ 'ପରମବ୍ରହ୍ମଣ୍ୟ' ଉପାଧି ମଧ୍ୟ କେତେକ ଅଭିଲେଖରେ ବ୍ୟବହାର କଲେ ।

ଆମେ ଆଗରୁ କହିଛୁ ଯେ, କଳିଙ୍ଗର ଉତ୍ତର ସୀମାରେ ଉତ୍କଳ ଦେଶ ସୋମବଂଶୀ ରାଜାମାନଙ୍କର ଅଧିକାରଭୁକ୍ତ ହୋଇଥିଲା । ସେହି ରାଜାମାନେ ଶୈବଧର୍ମାବଲମ୍ବୀ ହୋଇଥିଲେ ମଧ୍ୟ ବିଭିନ୍ନ କର ବସାଇ ପ୍ରଜାମାନଙ୍କଠାରୁ ଅର୍ଥ ଶୋଷଣ କରୁଥିଲେ । ତେଣୁ ଲୋକଙ୍କର ସହାନୁଭୂତିରୁ ସେହି ରାଜାମାନେ ବଞ୍ଚିତ ହୋଇଥିଲେ । ଏଥିର ଫଳସ୍ୱରୂପ ସାମରିକ କ୍ଷେତ୍ରରେ ସୋମବଂଶର ଶେଷ ରାଜା କର୍ଣ୍ଣଦେବ ବଙ୍ଗର ପାଳବଂଶୀୟ ମହାରାଜା ରାମପାଳଙ୍କ 'ସାମନ୍ତଚକ୍ର'ରେ ରହି ନିଜର ସ୍ୱାଧୀନତା ହରାଇଲେ । ଉତ୍କଳର ସେହି ଦୁର୍ଦ୍ଦଶା ଦେଖି ଚୋଡ଼ଗଙ୍ଗଦେବ କଳିଙ୍ଗରେ ସୈନ୍ୟସାମନ୍ତଙ୍କୁ ପ୍ରସ୍ତୁତ କରି ଉତ୍କଳ ଓ ବଙ୍ଗ ଉଭୟ ରାଜ୍ୟ ଜୟ କଲେ ଏବଂ ନିଜ ସାମ୍ରାଜ୍ୟର ଉତ୍ତର ସୀମା ଗଙ୍ଗା ନଦୀ ପର୍ଯ୍ୟନ୍ତ ପ୍ରସାରିତ କରିଥିଲେ । ଏହାପରେ ପଶ୍ଚିମରେ ମଧ୍ୟ ବେଙ୍ଗିର ରାଜାଙ୍କୁ ପରାସ୍ତ କରିବାରୁ ତାଙ୍କ ସାମ୍ରାଜ୍ୟର ଦକ୍ଷିଣସୀମା ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତି ଲାଭ କଲା । ଏଥିର ଅନତିକାଳ ପରେ ପ୍ରାୟ ୧୧୧୨ ଖ୍ରୀଷ୍ଟାବ୍ଦରେ ତାଙ୍କ ରାଜଧାନୀ ବଂଶଧାରା ନଦୀତଟସ୍ଥ 'କଳିଙ୍ଗ ନଗର'ରୁ ଉଠାଇ ନେଇ ଆଧୁନିକ କଟକସ୍ଥ ମହାନଦୀ ତଟରେ 'ବାରାଣସୀ-କଟକ' ନାମ ଦେଇ ସେଠାରେ ନୂତନ ରାଜଧାନୀ ସ୍ଥାପନ କରି ଉତ୍କଳରେ ଥିବା ପ୍ରାଚୀନ ପଣ୍ଡିତ ଓ ସଭାସଦମାନଙ୍କ ସଙ୍ଗେ କଳିଙ୍ଗ ରାଜସଭାର ପଣ୍ଡିତମାନଙ୍କୁ ଅଣାଇ ବାରାଣସୀ-କଟକସ୍ଥ ରାଜସଭାରେ ସେ ନିଯୁକ୍ତ କରିଥିଲେ । ସମ୍ଭବତଃ ସେତେବେଳେ ଶୈବ ଓ ବୈଷ୍ଣବ

ତଥା 'ଅଦ୍ୱୈତବାଦୀ' ଓ 'ବିଶିଷ୍ଟାଦ୍ୱୈତବାଦୀ ପଣ୍ଡିତମାନଙ୍କ ମଧ୍ୟରେ ବାଦ-ବିସମ୍ବାଦ ସୃଷ୍ଟି ହୋଇ ରାଜ୍ୟରେ ଶାନ୍ତି ଶୃଙ୍ଖଳା ଭଙ୍ଗ ହୋଇଥିଲା । ଏଥିରେ ମହାରାଜା ଚୋଡ଼ଗଙ୍ଗଦେବ ନିଜେ ହସ୍ତକ୍ଷେପ କରି ଶ୍ରୀକ୍ଷେତ୍ରରେ ଯେଉଁ ବିଷ୍ଣୁ ମନ୍ଦିରଟି ପୂର୍ବରୁ ଯଯାତି କେଶରୀ ଗଠନ କରିଥିଲେ ସେଥିରେ ଚତୁର୍ଭୁଜ ବିଶିଷ୍ଟ ପ୍ରସ୍ତର ମୂର୍ତ୍ତି ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ପ୍ରତିଷ୍ଠା କଲେ । ତାହା ପରବର୍ତ୍ତୀ ସୋମବଂଶୀ ରାଜାମାନଙ୍କ ଅବହେଳାରୁ ଭଗ୍ନ ଅବସ୍ଥାରେ ରହିଥିଲା । ଚୋଡଗଙ୍ଗଦେବ ବୋଧହୁଏ ସେହି ମନ୍ଦିରର ସଂସ୍କାର କରାଇ ସେଥିରେ ଶ୍ରୀପୁରୁଷୋତ୍ତମଙ୍କ ସଙ୍ଗେ ରୁଦ୍ର (ଶିବ) ରୂପୀ ସଂକର୍ଷଣ ଓ ଶକ୍ତିରୂପିଣୀ ସୁଭଦ୍ରାଙ୍କ ହସ୍ତପଦଯୁକ୍ତ ପ୍ରସ୍ତର ପ୍ରତିମାମାନ ସ୍ଥାପନ କଲେ । ଏହା ପରେ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମାବଲମ୍ବୀ ପଣ୍ଡିତମାନଙ୍କ ମଧ୍ୟରେ ଏକତା ସମ୍ପାଦିତ ହେଲା ।

ଯଯାତି କେଶରୀ ଯେଉଁ ବିଷ୍ଣୁ ମନ୍ଦିରଟି ପୁରୀରେ ନିର୍ମାଣ କରିଥିଲେ, ତାହା ଏକକ ଦେବତା (ଶ୍ରୀପୁରୁଷୋତ୍ତମ)ଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେଥିରେ ତିନି ଦେବଦେବୀଙ୍କ ମୂର୍ତ୍ତି ସ୍ଥାପନ କରିବା ସମ୍ଭବ ନଥିଲା । ତେଣୁ ଚୋଡ଼ଗଙ୍ଗ-ଦେବ ତାଙ୍କ ବୃଦ୍ଧ ବୟସରେ ୧୧୪୨ ଖ୍ରୀଷ୍ଟାବ୍ଦରେ ନିଜର ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବଦେବଙ୍କ ରାଜ୍ୟାଭିଷେକ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସମ୍ପନ୍ନ କରି ରାଜ୍ୟ ଶାସନ କାର୍ଯ୍ୟରୁ ଅବସର ନେଲେ । ଏହାପରେ ସେ ଅଳ୍ପ କେତୋଟି ବର୍ଷ ମାତ୍ର ଜୀବିତ ଥିବା ଜଣାଯାଏ । ସେହି ସ୍ୱଳ୍ପକାଳ ମଧ୍ୟରେ ସେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ରହି ବଡ଼ ଆକାରରେ ତିନି ଦେବତାଙ୍କ ପ୍ରତିଷ୍ଠା ସକାଶେ ଏକ ସୁପ୍ରଶସ୍ତ ଉଚ୍ଚ ବିଷ୍ଣୁ ମନ୍ଦିର ନିର୍ମାଣ କରାଇଥିଲେ । କିନ୍ତୁ ତାଙ୍କ ଜୀବିତ କାଳ ମଧ୍ୟରେ ସେହି ମନ୍ଦିର କାର୍ଯ୍ୟ ସଂପୂର୍ଣ୍ଣ ହୋଇ ପାରିଲା ନାହିଁ । ୧୨୩୦ ଖ୍ରୀଷ୍ଟାବ୍ଦରେ ତାଙ୍କର ବଂଶଧର ମହାରାଜା ଅନଙ୍ଗଭୀମଦେବ (୩ୟ)ଙ୍କ ରାଜତ୍ୱ କାଳରେ ବଡ଼ ଦେଉଳର ପ୍ରତିଷ୍ଠା ସମ୍ପନ୍ନ ହୋଇଥିବା ପ୍ରସଙ୍ଗ ଗୋଟିଏ ତାମ୍ର ଶାସନରେ ଉଲ୍ଲେଖ ଅଛି ।

ମହାରାଜା ଅନଂଗ ଭୀମଦେବ ଓ ତାଙ୍କ ପଟ୍ଟମହିଷୀ କାଞ୍ଚିଯାତ୍ରା କରି ସେଠାରୁ ରାମାନୁଜପନ୍ଥୀ 'ଆଲଵାର'ମାନଙ୍କୁ ନିମନ୍ତ୍ରଣ କରି ଉତ୍କଳକୁ ଆଣିଥିଲେ । ସେମାନଙ୍କ ସକାଶେ ପୁରୀର ଅଦୂରବର୍ତ୍ତୀ ବ୍ରହ୍ମଗିରିଠାରେ ଅଲରନାଥଙ୍କ ମନ୍ଦିର ଗଠନ କରିଥିବା ଜଣାଯାଏ । ଅନଙ୍ଗଭୀମଙ୍କ ରାଣୀ ତାଙ୍କଠାରୁ ବୈଷ୍ଣବଦୀକ୍ଷା ଗ୍ରହଣ କରି ଗୁରୁଙ୍କ ସକାଶେ ଗ୍ରାମ ଦାନ କରିଥିବା ପ୍ରସଙ୍ଗ କାଞ୍ଚିର ଏକ ତାମିଲ

ଭାଷାରେ ଲେଖାଥିବା ଅଭିଲେଖରୁ ଜଣାଯାଇଛି । ସେହି ଆଲବାରମାନଙ୍କଠାରୁ ଶିକ୍ଷା ଓ ଦୀକ୍ଷା ଗ୍ରହଣ କରି ବଡଦେଉଳରେ ଶ୍ରୀପୁରୁଷୋତ୍ତମଙ୍କ ପୂଜାବିଧି 'ପଞ୍ଚରାତ୍ରିକ' ପଦ୍ଧତି ଅନୁସାରେ ପରିଚାଳିତ ହେଲା । ଆମ୍ଭର ମନେହୁଏ, ଶ୍ରୀପୁରୁଷୋତ୍ତମଙ୍କୁ ପ୍ରଥମେ ନାରାୟଣ-ମନ୍ତ୍ରରେ ପୂଜା କରାଯାଉଥିଲା । କିନ୍ତୁ ଖ୍ରୀ: ୧୬ଶ: ଶତାବ୍ଦୀ ଆରମ୍ଭରେ କିମ୍ବା ତତ୍‌ପୂର୍ବରୁ ତାଙ୍କୁ ଷୋଡ଼ଶାକ୍ଷରୀ ଗୋପାଳ (ମନ୍ତ୍ରରାଜ) ମନ୍ତ୍ରରେ ପୂଜା କରାଗଲା ।

ଯେଉଁ ପୁରୁଷୋତ୍ତମ ପୂର୍ବେ ଚତୁର୍ଭୁଜବିଶିଷ୍ଟ ମାଧବ ବା ନାରାୟଣ ନାମରେ ପରିଚିତ ଥିଲେ, କାଳକ୍ରମେ ତାଙ୍କ ଧ୍ୟାନ ଦ୍ୱିଭୁଜବିଶିଷ୍ଟ କୃଷ୍ଣ (ବାସୁଦେବ) ରୂପରେ ପରିବର୍ତ୍ତିତ ହେଲା । ଏଥିପାଇଁ ପରବର୍ତ୍ତୀ ଯୁଗର ଭାଗବତ ଧର୍ମାବଲମ୍ବୀ ମାଧ୍ୱପନ୍ଥୀ ବୈଷ୍ଣବମାନଙ୍କ କୃତିତ୍ୱ ପୁଷ୍ଟିମାଝାରେ ଉପଲବ୍‌ଧ ହୁଏ । ରାମାନୁଜଙ୍କ ଅଳ୍ପକାଳ ପରେ ମାଧ୍ୱାଚାର୍ଯ୍ୟଙ୍କ 'ଦ୍ୱୈତ' ବାଦ ପ୍ରଚାରିତ ହୋଇଥିଲା । ସେତେବେଳେ ଓଡ଼ିଶା ମହାରାଜା ଚୋଡ଼ଗଙ୍ଗଙ୍କର ଶାସନାଧୀନ ଥିଲା । ତାଙ୍କର ସମସାମୟିକ ମହାକବି ଜୟଦେବ ସେହି ଭାଗବତ ଧର୍ମରେ ଦୀକ୍ଷା ଗ୍ରହଣ କରି 'ଗୀତଗୋବିନ୍ଦ' କାବ୍ୟ ରଚନା କରିଥିଲେ । ସେ ରାଧା-କୃଷ୍ଣଙ୍କ କେଳି ପ୍ରସଙ୍ଗ ସେହି କାବ୍ୟରେ ସୁନ୍ଦର ଭାବେ ବର୍ଣ୍ଣନା କରିଅଛନ୍ତି । କିନ୍ତୁ ସେତେବେଳେ ମଧ୍ୟ ବଡ଼ଦେଉଳରେ ରାଧାଙ୍କୁ ଦେବୀ ରୂପେ ଆରାଧନା କରିବା ବ୍ୟବସ୍ଥା ହେଲା ନାହିଁ । ନାରାୟଣରୂପୀ ଶ୍ରୀପୁରୁଷୋତ୍ତମଙ୍କ ଶକ୍ତିସ୍ୱରୂପିଣୀ ଲକ୍ଷ୍ମୀଙ୍କୁ ଏକ ସ୍ୱତନ୍ତ୍ର ମନ୍ଦିରରେ ସ୍ଥାପନ କରି ଶ୍ରୀମନ୍ଦିର ଭିତରେ ତାଙ୍କୁ ଆରାଧନା କରାଯାଉଛି । ସେପରି ବିଶ୍ୱଧାତ୍ରୀ (ଭୂଦେବୀ ବା ସରସ୍ୱତୀ)ଙ୍କ କ୍ଷୁଦ୍ର ପ୍ରତିମୂର୍ତ୍ତି ସଙ୍ଗେ ସୁଦର୍ଶନଙ୍କୁ ଏବଂ ନୀଳମାଧବଙ୍କୁ ରତ୍ନବେଦୀରେ ସ୍ଥାପନ କରି ସେମାନଙ୍କୁ ପୂଜିତ କରାଯାଏ ।

ଶ୍ରୀକୃଷ୍ଣରୂପୀ ଶ୍ରୀପୁରୁଷୋତ୍ତମ-ଜଗନ୍ନାଥଙ୍କ ପୂଜା ଗୋପାଳ ମନ୍ତ୍ରରେ ହୁଏ । ତାହା ଦୁଇ ପ୍ରକାରରେ ହେବା ପ୍ରଥା ପ୍ରଚଳିତ ଅଛି । ଯଥା—୧-ଦଶାକ୍ଷରୀ ମନ୍ତ୍ର 'ଗୋପିନାଥ ବଲ୍ଲଭାୟ ସ୍ୱାହା' ଏବଂ ୨—ଅଷ୍ଟାଦଶାକ୍ଷରୀ ମନ୍ତ୍ର, "କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା ।"

ବଳଭଦ୍ରଙ୍କ ପୂଜା ଯେଉଁ ବାସୁଦେବ-ମନ୍ତ୍ରରେ ସମ୍ପନ୍ନ କରାଯାଏ, ତାହା ଦ୍ୱାଦଶାକ୍ଷରବିଶିଷ୍ଟ ଯଥା—"ଓଁ ନମୋ ଭଗବତେ ବାସୁଦେବାୟ" । ଏହି ମନ୍ତ୍ରରେ ବଳଭଦ୍ରଙ୍କୁ କୃଷ୍ଣଙ୍କର ଜ୍ୟେଷ୍ଠ ଭ୍ରାତା ରୂପେ ଗ୍ରହଣ କରାଗଲେ ସୁଦ୍ଧା

ତାଙ୍କୁ 'ସଂକର୍ଷଣ' ବା 'ରୁଦ୍ର' ରୂପରେ ଶୈବମାନେ ଗ୍ରହଣ କରନ୍ତି । 'ପଞ୍ଚତନ୍ତ୍ର ଆଗମ' ୧୦ମ ଅଧ୍ୟାୟରେ ଏଥିର ସବିଶେଷ ବର୍ଣ୍ଣନା ଉଲ୍ଲେଖ ଅଛି ।

ସୁଭଦ୍ରାଙ୍କୁ ଏକାକ୍ଷରୀ ଭୁବନେଶ୍ୱରୀ ମନ୍ତ୍ରରେ ପୂଜା କରାଯାଏ, ଯଥା 'ହ୍ରୀଂ' । ସେହି ମନ୍ତ୍ର ଦେବୀ ବିମଳାଙ୍କ ପୂଜାରେ ମଧ୍ୟ ବ୍ୟବହୃତ ହୁଏ । ତାନ୍ତ୍ରିକମାନଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି 'ଭୈରବ' ଏବଂ ତାଙ୍କର ଶକ୍ତିସ୍ୱରୂପିଣୀ 'ଭୈରବୀ' ହେଉଛନ୍ତି ବିମଳା ।

"ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବମ୍ ।"

କେତେକ ତନ୍ତ୍ରରେ ଏହା ବର୍ଣ୍ଣିତ ହୋଇଅଛି ।

ଶ୍ରୀଜଗନ୍ନାଥଙ୍କ ଭୋଗପ୍ରସାଦ ବିମଳାଙ୍କୁ ସମର୍ପିତ ହେଲା ପରେ ତାହା 'ମହାପ୍ରସାଦ' ପଦବାଚ୍ୟ ହୁଏ । ଶ୍ରୀମନ୍ଦିରରେ ଭୋଗପାଇଁ 'ଭୈରବୀ-ଚକ୍ର' ଉପରେ ଭୋଗ ସ୍ଥାପିତ ହୋଇ ଦ୍ୱାବିଂଶାକ୍ଷରୀ ମନ୍ତ୍ରରେ ପ୍ରୋକ୍ଷିତ ହୋଇଥାଏ ।

ଚୋଡ଼ଗଙ୍ଗଦେବ ତାଙ୍କ ସଭା ପଣ୍ଡିତ ଶୈବ, ବୈଷ୍ଣବ ଓ ଶାକ୍ତ (ତାନ୍ତ୍ରିକ)ମାନଙ୍କୁ ଏକତ୍ର କରି ବଡ଼ଦେଉଳରେ ଯେଉଁ ସର୍ବ ସମନ୍ୱୟ ଜଗନ୍ନାଥ ଧର୍ମର ଏକ ନୂତନ ପନ୍ଥା ଉଦ୍ଭାବନ କରିଥିଲେ, ସେଥିର ପ୍ରଭାବ କାଳକ୍ରମେ ବୌଦ୍ଧ, ଜୈନ, ମୁସଲମ୍, ଶିଖ ପ୍ରଭୃତି ଧର୍ମମାନଙ୍କରେ ପ୍ରଚଳିତ ଅଂଶବିଶେଷ ହେବାରୁ ସେଥିର ପ୍ରଭାବ ସମଗ୍ର ରାଜ୍ୟରେ ଏକ ନୂତନ ଆଦର୍ଶ ସୃଷ୍ଟି କଲା । ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମଠଗୁଡ଼ିକ ସ୍ଥାପିତ ହେଲା । ସେଥିର ମହନ୍ତ ବା ସନ୍ନ୍ୟାସୀମାନେ ନିଜ ନିଜ ଶିଷ୍ୟଙ୍କୁ ତାଙ୍କ ଧର୍ମ ଓ ମତକୁ ଆଧାର କରି ଶିକ୍ଷା ଦେଉଥିଲେ ସୁଦ୍ଧା ସମସ୍ତେ ଶ୍ରୀଜଗନ୍ନାଥଙ୍କୁ ପରମାରାଧ୍ୟ ଦେବତା ରୂପେ ଗ୍ରହଣ କରନ୍ତି । ଖ୍ରୀ: ଅଷ୍ଟମ ଶତାବ୍ଦୀରେ ବ୍ରହ୍ମସୂତ୍ର ଭାଷ୍ୟକାର ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ-ମତବାଦଠାରୁ ଆରମ୍ଭ କରି ଷୋଡ଼ଶ ଶତାବ୍ଦୀରେ ବଲ୍ଲଭାଚାର୍ଯ୍ୟଙ୍କ ଅଚିନ୍ତ୍ୟ-ଚିନ୍ତ୍ୟ ଭେଦାଭେଦ ମତ ପ୍ରସାରିତ କାଳ ପର୍ଯ୍ୟନ୍ତ ସବୁ ଶ୍ରେଣୀର ଦାର୍ଶନିକମାନେ ଶ୍ରୀଜଗନ୍ନାଥ-ଧର୍ମକୁ ଗ୍ରହଣ କରିଥିଲେ । ଏହା ସତ୍ତ୍ୱେ, ପଞ୍ଚତାନ୍ତ୍ରିକ ବୈଷ୍ଣବଗୁରୁମାନଙ୍କ ପ୍ରଭାବ ତଥା ଉତ୍କଳରେ ରାଜାମାନଙ୍କର ଆନୁକୂଲ୍ୟ ହେତୁ ରାମାନୁଜପନ୍ଥୀ ବୈଷ୍ଣବମାନଙ୍କ ପ୍ରାଧାନ୍ୟ 'ଗୁରୁର୍ଯ୍ୟନ୍ତ୍ର' ବ୍ୟବସ୍ଥା 'ଜଗନ୍ନାଥ-ଧର୍ମ'ରେ ପ୍ରାଧାନ୍ୟ ବିସ୍ତାର କଲା । ତେଣୁ ରାମାନୁଜଙ୍କ 'ତିଳକ' ମହାପ୍ରଭୁ ଜଗନ୍ନାଥଙ୍କ କପୋଳକୁ ଅଦ୍ୟାପି ମଣ୍ଡିତ କରୁଛି ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ଆରମ୍ଭରେ ବୈଷ୍ଣବୀୟ ଦର୍ଶନରେ ବଲ୍ଲଭାଚାର୍ଯ୍ୟ ଓ ଚୈତନ୍ୟଙ୍କ ଶୁଦ୍ଧାଦ୍ୱୈତ ଓ ଅଚିନ୍ତ୍ୟ ଭେଦାଭେଦ, ଦର୍ଶନ ବଙ୍ଗ, ମିଥିଳା ଏବଂ ଉତ୍କଳରେ ଲୋକପ୍ରିୟତା ଲାଭ କରିଥିଲା । ସେତେବେଳେ ଚୈତନ୍ୟଙ୍କ 'ନାମ-ସଂକୀର୍ତ୍ତନ' ଏବଂ ରୂପଗୋସ୍ୱାମୀ, ଜୀବଗୋସ୍ୱାମୀ ପ୍ରଭୃତିଙ୍କ ପ୍ରଚାର ମଧ୍ୟ ଜନପ୍ରିୟ ହୋଇଥିଲା । କିନ୍ତୁ ଶ୍ରୀଜଗନ୍ନାଥଙ୍କ 'ତିଳକ' ପରିବର୍ତ୍ତିତ ହେଲା ନାହିଁ । ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ପୁରୀର ଶ୍ରୀମନ୍ଦିର ଗାତ୍ରରେ ଅଙ୍କିତ ହୋଇଅଛି । ଏବେ ମଧ୍ୟ ନାଟକ ଭାବେ ସେଠାରେ କୃଷ୍ଣଙ୍କ ବାଲ୍ୟଲୀଳାମାନ ଅଭିନୀତ ହେଉଛି । ତଥାପି ଶ୍ରୀକୃଷ୍ଣଙ୍କ ଶକ୍ତିସ୍ୱରୂପିଣୀ ରାଧାଙ୍କ ଉପାସନା ପାଇଁ କୌଣସି ବ୍ୟବସ୍ଥା ଶ୍ରୀମନ୍ଦିରରେ ନାହିଁ । କିନ୍ତୁ ମହାକବି ଜୟଦେବଙ୍କ ରଚିତ 'ଗୀତ ଗୋବିନ୍ଦ' ଶ୍ରୀମନ୍ଦିରରେ ନିତ୍ୟ ରାଧାକୃଷ୍ଣଙ୍କ ଲୀଳା ଗାନ କରିବା ପ୍ରଥା ପ୍ରଚଳିତ ଅଛି । ସୂର୍ଯ୍ୟବଂଶୀୟ ମହାରାଜା ପ୍ରତାପରୁଦ୍ରଦେବ ଚୈତନ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରି ରାଧାକୃଷ୍ଣଙ୍କ ପ୍ରତି ଗଭୀର ଭକ୍ତି ପ୍ରଦର୍ଶନ କରୁଥିଲେ । ତେବେ ସୁଦ୍ଧା ଶ୍ରୀଜଗନ୍ନାଥଙ୍କ କପୋଳର ତିଳକ ବଦଳିଲା ନାହିଁ ଏବଂ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କ ଆରାଧନାପାଇଁ ସ୍ୱତନ୍ତ୍ର ମନ୍ଦିର ସେଠାରେ ଗଠିତ ହେଲା ନାହିଁ । କାର୍ତ୍ତିକ ମାସରେ କେବଳ ଶ୍ରୀଜଗନ୍ନାଥଙ୍କ ବେଶଗୁଡ଼ିକ ମଧ୍ୟରେ 'ରାଧାଦାମୋଦର' ନାମକ ବେଶ ପ୍ରଚଳିତ ହେଉଛି । ଯେପରି 'ଲକ୍ଷ୍ମୀ-ନାରାୟଣ' ବେଶ ମହାପ୍ରଭୁ ଧାରଣ କରିଥାନ୍ତି ।



# ଶ୍ରୀମନ୍ଦିରରେ ଦେବଦାସୀ ନୃତ୍ୟ ଓ ମହାକବି ଜୟଦେବଙ୍କ ଗୀତଗୋବିନ୍ଦ

ଖ୍ରୀ: ୧୧ଶ ଶତାବ୍ଦୀ ଆରମ୍ଭରୁ କଳିଙ୍ଗର ଦେବଦେବୀଙ୍କ ମନ୍ଦିରମାନଙ୍କରେ ନୃତ୍ୟ-ସଙ୍ଗୀତ ପ୍ରଚଳନ ନିମନ୍ତେ ଦେବଦାସୀ ବା ସାନିସମ୍ପ୍ରଦାୟଙ୍କୁ ନିଯୁକ୍ତ କରାଯାଇଥିଲା । ସେତେବେଳେ ଗଙ୍ଗବଂଶୀୟ ରାଜାମାନେ କଳିଙ୍ଗନଗର (ମୁଖଲିଙ୍ଗ) ଠାରୁ ରାଜତ୍ୱ କରୁଥିଲେ । ତାଙ୍କ ରାଜ୍ୟ ଦକ୍ଷିଣରେ ଗୋଦାବରୀ ଠାରୁ ପୂର୍ବକୁ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ସେମାନଙ୍କ ସଙ୍ଗେ ଦାକ୍ଷିଣାତ୍ୟର ଚୋଳ, ଚାଲୁକ୍ୟ, କାଦମ୍ବ, ବୈଦୁମ୍ବ ପ୍ରଭୃତି ରାଜବଂଶର ବୈବାହିକ ସମ୍ପର୍କ ସ୍ଥାପିତ ହୋଇଥିବାରୁ ସାଂସ୍କୃତିକ କ୍ଷେତ୍ରରେ ମଧ୍ୟ କଳିଙ୍ଗ ସଙ୍ଗେ ଦାକ୍ଷିଣାତ୍ୟର ସମ୍ପର୍କ ଘନିଷ୍ଠ ହୋଇଥିଲା ।

ଖ୍ରୀ: ୧୧ଶ ଶତାବ୍ଦୀ ପୂର୍ବରୁ କଳିଙ୍ଗ ଓ ଉତ୍କଳରେ ଯେଉଁ ଦେବଦେବୀଙ୍କ ମନ୍ଦିରମାନ ଗଠିତ ହୋଇଥିଲା, ସେଥିରେ ନାଟ୍ୟଶାଳା ସଂଯୁକ୍ତ ହୋଇ ନଥିବାରୁ ସ୍ପଷ୍ଟ ଜଣାଯାଇଛି ଯେ, ମନ୍ଦିରମାନଙ୍କରେ ସେତେବେଳେ ଦେବଦାସୀଙ୍କ ନୃତ୍ୟପ୍ରଥା ପ୍ରଚଳିତ ହୋଇନଥିଲା । କିନ୍ତୁ ମହାରାଜା ଚୋଡ଼ଗଙ୍ଗଦେବ ଉତ୍କଳର ସୋମବଂଶୀ ମହାରାଜା କର୍ଣ୍ଣଦେବଙ୍କୁ ପରାସ୍ତ କରି ଉତ୍କଳକୁ କଳିଙ୍ଗ ସଙ୍ଗେ ମିଶାଇ ଦେଇ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ଗଠନ କଲେ । ସେତେବେଳେ, ଅର୍ଥାତ୍ ୧୧୧୨ ଖ୍ରୀଷ୍ଟାବ୍ଦରେ ଉତ୍କଳର ରାଜନୀତି ଓ ଧର୍ମନୀତିରେ ଏକ ନବଯୁଗ ଦେଖାଦେଲା । ଶ୍ରୀକ୍ଷେତ୍ର (ପୁରୀ)ରେ ପୂର୍ବେ ପ୍ରାଚୀନ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ବିଗ୍ରହମାନ ପ୍ରତିଷ୍ଠା କରି, କଳିଙ୍ଗରେ ପ୍ରବର୍ତ୍ତିତ ନୃତ୍ୟ ସଙ୍ଗୀତ ପାଇଁ ଦେବଦାସୀ ବା 'ସାନି-ସମ୍ପ୍ରଦାୟ'ଙ୍କୁ ସେଥିରେ ମହାରାଜା ଚୋଡ଼ଗଙ୍ଗ ନିଯୁକ୍ତ କରିଥିଲେ । ସେ ନିଜେ କଳିଙ୍ଗରେ ରହିଥିବା ସମୟରେ ମୁଖଲିଙ୍ଗଠାରୁ ଅଳ୍ପ ଦୂରରେ ଅବସ୍ଥିତ ଧାର୍ଘାସୀ ଗ୍ରାମର ଭଗବତୀ-ଦୁର୍ଗା ଦେବୀଙ୍କ ମନ୍ଦିର ସମ୍ମୁଖରେ ଗୋଟିଏ ନାଟ୍ୟଶାଳା ଗଠିତ ହୋଇଥିଲା । ସେହି ମନ୍ଦିରର ଏକ ଶିଳାଲେଖରୁ ନିମ୍ନୋକ୍ତ ଶ୍ଳୋକଟି ଉଦାହରଣ ସ୍ୱରୂପ ଉଦ୍ଧୃତ ହେଲା—

"ଦୁର୍ଗାଦେବ୍ୟାଲୟସ୍ୟାଭରଣମିବ ପୁରଃ ସ୍ଥାପୟାମାସ ଗୁର୍ବୀଂ ।
ଶ୍ରୀମାନ୍ ଶ୍ରୀନାଥବୀର୍ୟଃ ସ୍ଥଗିତ ଦଶଦ୍ୱଶାନାଟ୍ୟଶାଳା ଛଲେନ ।।"

ପ୍ରାଚୀନ ଦୁର୍ଗା-ମନ୍ଦିରରେ ଯେପରି ଖ୍ରୀ: ୧୦୭୫ ସାଲରେ ନାଟ୍ୟଶାଳା ନିର୍ମିତ ହୋଇଥିଲା, ସେପରି ପୁରୀର ପ୍ରାଚୀନ ଶ୍ରୀପୁରୁଷୋତ୍ତମ-ମନ୍ଦିର (ଆଧୁନିକ ନୃସିଂହ-ମନ୍ଦିର) ସମ୍ମୁଖରେ ଏକ ଅସ୍ଥାୟୀ ନାଟ୍ୟଶାଳା ଚୋଡ଼ଗଙ୍ଗ ନିର୍ମାଣ କରିଥିବା ସମ୍ଭବ । ବହୁବର୍ଷ ପରେ ସେହି ମନ୍ଦିରରୁ ଦେବଦେବୀଙ୍କ ମୂର୍ତ୍ତିମାନଙ୍କୁ ବଡ଼ଦେଉଳର ନିର୍ମାଣ କାର୍ଯ୍ୟ ପୂର୍ଣ୍ଣ ହେଲା ପରେ ମହାରାଜ ଅନଙ୍ଗଭୀମଦେବ ଖ୍ରୀ: ୧୨୩୦ ସାଲରେ ପ୍ରତିଷ୍ଠା କରିବାରୁ ପ୍ରାଚୀନ ମନ୍ଦିର ସମ୍ମୁଖରେ ଥିବା ସେହି ଅସ୍ଥାୟୀ 'ନାଟଶାଳା' ବା 'ନାଟ୍ୟମଣ୍ଡପ' ଭଙ୍ଗି ସେଠାରେ ବହୁକାଳ ପରେ 'ମୁକ୍ତିମଣ୍ଡପ' ନିର୍ମିତ ହେଲା ।

ଖ୍ରୀ: ୧୧ଶ ଶତାବ୍ଦୀ ପୂର୍ବରୁ କଳିଂଗନଗର ନିକଟରେ ଥିବା ଶ୍ରୀକୂର୍ମ ମନ୍ଦିରରେ ଦେବଦାସୀମାନଙ୍କର ଏକ ସ୍ୱତନ୍ତ୍ର ବାସସ୍ଥଳୀ ଥିଲା । ସେହି ସ୍ଥାନର ନାମ ଥିଲା 'କୂର୍ମପାଟକ' ଏବଂ 'ପୁଣ୍ଡ୍ରିକୋଟି' । ଶ୍ରୀକୂର୍ମ ମନ୍ଦିରରେ ଶ୍ରୀବୈଷ୍ଣବ ସମ୍ପ୍ରଦାୟର ଗୁରୁମାନେ ରହି ବିଭିନ୍ନ ଦର୍ଶନଶାସ୍ତ୍ରରେ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ । କେବଳ ଶାସ୍ତ୍ର ଓ ଦର୍ଶନ ନୁହେଁ, ନୃତ୍ୟ ଓ ସଂଗୀତ କଳା ମଧ୍ୟ ସେଠାରେ ଦେବଦାସୀମାନଙ୍କୁ ଶିକ୍ଷା ଦିଆଯାଉଥିଲା । ତେଣୁ ସଂଗୀତ ଶିକ୍ଷା କରିବାକୁ ବହୁ ସଂଖ୍ୟାରେ ସାନି-ସମ୍ପ୍ରଦାୟ ସେଠାରେ ବାସସ୍ଥାପନ କରିଥିଲେ । ବିଭିନ୍ନ ଦେବମନ୍ଦିରମାନଙ୍କରେ ସେମାନଙ୍କୁ ନିଯୁକ୍ତ କରାଯାଉଥିବା ପ୍ରସଙ୍ଗ ଶିଳାଲେଖମାନଙ୍କରୁ ପ୍ରକଟିତ ହୁଏ । ଉଦାହରଣ ସ୍ୱରୂପ ସିଂହାଚଳର ଶ୍ରୀନୃସିଂହନାଥ ମନ୍ଦିରରେ ଥିବା ଗୋଟିଏ ତେଲୁଗୁମିଶ୍ରିତ ଓଡ଼ିଆ ଶିଳାଲେଖର କିଛି ଅଂଶ ନିମ୍ନରେ ଉଦ୍ଧୃତ ହେଲା:—

"ଶ୍ରୀବୀରଧିବୀର ଭାନୁଦେବସ୍ୟ ପ୍ରବର୍ଦ୍ଧମାନ ବିଜୟ ରାଜ୍ୟ
ସମ୍ବତ୍ସରବୁଲୁ ଶ୍ରାହି ମକର କୃଷ୍ଣ ୧୧ସୁ ଶନିବାର ମୁନାଂରୁ
ପୋଟ୍ନୁର କଟକାନନୁ କଳିଙ୍ଗ ପରୀକ୍ଷା ପାତ୍ର ଶ୍ରୀକୋଟିନାଥ ପଣ୍ଡାଙ୍କର
ମାଂକ ସମସ୍ତ ବେହରଣ ବିଦ୍ୟମାନେ ଶ୍ରୀନରସିଂହନାଥ ଦେବଙ୍କର
ସାନି (ନ) ସମ୍ପ୍ରଦାୟର ନିଚବ-ବୃତ୍ତିକି କଲା ନିର୍ଣ୍ଣୟ ଶିଳା ଶାସନ ।
ଚତ୍ୱନ ମୋଖର ଉପାର୍ଜ୍ଜନା ବୃତ୍ତି ନିଟୂବାପଣ ସନ୍ତୁଷ୍ଟ ହୋଇ
ଅକାଳ ନ୍ୟାସ୍ୟ ଏବୃତ୍ତି ଏହାର ବଡ଼ଭାଇ ମାଡ଼ୁନିଚବ;
ବଡ଼ ଭଉଣୀ କୋଡ଼ୀ ସାନି; ସାନ ଭଉଣୀ ଟଙ୍ଗା ସାନି ଏ ତିନି କି

ଏ ନଟ୍ଟୁବା ବୃତ୍ତି ଓଡନଗ୍ଭଗ ଚଉନ ମୋଖର ଅର୍ଜିଲ୍ଲ ନ୍ୟାସ୍ତେ
ଏହାଙ୍କୁ ଅଧିକ ଭୋଗେ ସିଏ (ମା)ନ ଭଳ ଏହାଙ୍କୁ ଦୁଇଭାଗ
ଏ ପାଖଭାଗକୁ ପବୁହିଁ ଯେ ଯାହାର ଭାଗେ ସ୍ନାହ୍ମ ସ୍ନାହ୍ମ
ପାର୍ଦ୍ଦିବା ଏ । ଏହାଙ୍କହିଁ ମୂଳରପଣ ବୃତ୍ତି ଏ ପଞ୍ଚ ମଧ୍ୟେ
ଯେ ଖଦଶୋସ୍ଚି (?) ସେ ଚରୁବର୍ତ୍ତିନ ଭୋଗ କରିବାକେ
……ଏହାଙ୍କର ବଷସ୍ଥ ଅନ୍ୟୋନ୍ୟ ଲଖନ ପତ୍ରମାନ ସବୁ ଯୋଦ(ଧି)
ସବ୍ବବାଦ ସଂପ୍ରୀତପଣ କଲ୍ଲ ନର୍ଣ୍ଣସ୍ଥ ଏହାପତ୍ର ବେବସ୍ଥା
+ + + ଏ ବେବସ୍ଥାକୁ ଯେ ଅତକ୍ରମ କଲେ (ରେ)
ରଜାଙ୍କୁ (ଙ୍କ) ଅପରାଧୀ ହୋଇ ( ) ତାହାର ବୃତ୍ତି ଅଂଶ କାଟ ହୋଇ
ଏ ଅର୍ଥ ବନ୍ଧ ଦେବରଣ ସାକ୍ଷୀ ( ) ଏହାଙ୍କର ଅଂଶକାରଙ୍କ
ଶାସନ ଦତ୍ତ୍ବ । ଏଇ ନ୍ୟାସ୍ତକୁ ସ୍ବାମି ସାକ୍ଷୀ ଶ୍ରୀ ଶ୍ରୀ ଶ୍ରୀ ॥

**Ins or, Vol-V, Pt. ii, PP 382-3**

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ଭାନୁଦେବ(୨ୟ)ଙ୍କ ରାଜତ୍ୱକାଳରେ 'ପାନସମ୍ପ୍ରଦାୟ' ମନ୍ଦିରମାନଙ୍କରେ ଭଳି, ଉତ୍ତଣୀ ପ୍ରଭୃତ ପରିବାର ସମସ୍ତେ ମିଶି ଗୋଟିଏ 'ନାଟ୍ୟଦଳ' ବା 'ନାଟ୍ୟ ସଂପ୍ରଦାୟ' ଗଢ଼ି ମନ୍ଦିରମାନଙ୍କରେ ନିଯୁକ୍ତ ଲାଭ କରିଥିଲେ; ସେମାନଙ୍କ ଭରଣ ପୋଷଣ ପାଇଁ ରାଜାଙ୍କ ତରଫରୁ ବ୍ୟବସ୍ଥା ହେଉଥିଲା । କେବଳ ରାଜା ନୁହନ୍ତି; 'ଶ୍ରୀପାଦ' ପଦାଧିକାରୀ ଗୁରୁ ବା ଆଚାର୍ଯ୍ୟ-ମାନେ 'ପାନ ସଂପ୍ରଦାୟ'କୁ ନୃତ୍ୟ ସଙ୍ଗୀତ ପରିବେଷଣ ନିମନ୍ତେ ମନ୍ଦିର ମାନଙ୍କରେ ନିଯୁକ୍ତ କରିଥିବା ମଧ୍ୟ କେତେକ ଶିଳାଲେଖରୁ ପ୍ରକଟିତ ହୋଇଅଛି । ଅନ୍ୟ ଏକ ଶିଳାଲେଖରୁ ଜଣାଯାଇଛି ଯେ, ଗଙ୍ଗବଂଶୀୟ ମହାରାଜା ନରସିଂହ-ଦେବ (୨ୟ) ୧୨୯୧ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ତାଙ୍କ ୨୫ଅଙ୍କରେ ସିଂହାଚଳ ମନ୍ଦିରରେ ପରମହଂସ ବରଦାକ୍ଷୀ ମୁନି-ଶ୍ରୀପାଦ ସିଂହାଚଳ ମନ୍ଦିରରେ 'ମଙ୍ଗଳ-ଗାନ କରିବାକୁ ଏକ 'ପାନ-ସମ୍ପ୍ରଦାୟ' ନିଯୁକ୍ତ କରିଥିଲେ ।

**Ins-or, Vol-V, Pt-i, PP-337-8**

ଚୋଡ଼ଗଙ୍ଗଦେବ ସେହି ସ୍ଥଳରେ କେତେକ 'ପାନ-ସମ୍ପ୍ରଦାୟ' ପରିବାରକୁ କୂର୍ମପାଟକରୁ ଅଣାଇ ପୁରୀରେ ସେମାନଙ୍କ ପାଇଁ ସ୍ଥାୟୀ ବାସ ସ୍ଥାପନ କରିଦେଇଥିଲେ । ତେଣୁ ତାଙ୍କ ନାମରେ ଯେଉଁ 'ଚୂଡଙ୍ଗ-ସାହି' ପୁରୀରେ ଅବସ୍ଥିତ; ସେଠାରେ ପାନ-ସମ୍ପ୍ରଦାୟ ରହିଥିବା ଏବଂ ତାଙ୍କ ପୃଷ୍ଠପୋଷକ ମହାରାଜା ଚୋଡ଼ଗଙ୍ଗଙ୍କର ଏକ ପ୍ରସ୍ତର ମୂର୍ତ୍ତି ସେଠାରେ ସ୍ଥାପନ କରିଥିବା ଅନୁମିତ ହୁଏ ।

ଚୋଡ଼ଗଙ୍ଗ ଓଡ଼ିଶାରେ ରାଜତ୍ୱ କଲାବେଳେ ବୈଷ୍ଣବଧର୍ମରେ ଦୀକ୍ଷା ଗ୍ରହଣ କରିଥିଲେ, ତେଣୁ ବିଶିଷ୍ଟାଦ୍ୱୈତ ପନ୍ଥୀ ବହୁ ଶ୍ରୀବୈଷ୍ଣବ ସମ୍ପ୍ରଦାୟ ଶ୍ରୀକ୍ଷେତ୍ରରେ ଉପନିବେଶ ସ୍ଥାପନ କରି ମଠମାନଙ୍କରେ ରହି ଧର୍ମ କାର୍ଯ୍ୟରେ ଜୀବନ କଟାଉଥିଲେ । ପୂର୍ବରୁ ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ଗୋବର୍ଦ୍ଧନମଠରେ ଅଦ୍ୱୈତ-ପନ୍ଥୀ ଆଚାର୍ଯ୍ୟମାନେ ରହି ଶିଷ୍ୟମାନଙ୍କୁ ବେଦାନ୍ତ ଶିକ୍ଷା ଦେଉଥିଲେ । ସ୍ଥୂଳରେ କହିବାକୁ ଗଲେ, ଚୋଡ଼ଗଙ୍ଗଙ୍କ ଉତ୍କଳ ଆକ୍ରମଣ ପୂର୍ବରୁ ଶ୍ରୀକ୍ଷେତ୍ର ଏକ ପୁଣ୍ୟଧାମ ହୋଇ ବହୁ ଭକ୍ତ ଓ ଯାତ୍ରୀଙ୍କ ସମାଗମ ହେତୁ ଏକ ପୁଣ୍ୟ ତୀର୍ଥରେ ପରିଗଣିତ ହୋଇଥିଲା । ସୁତରାଂ ଚୋଡ଼ଗଙ୍ଗଙ୍କ ପରି ଜଣେ ପଣ୍ଡିତ ଓ ଧର୍ମ ପ୍ରାଣ ରାଜା ତାଙ୍କ ଦୀର୍ଘ ଜୀବନରେ ବହୁ ରାଜନୈତିକ ବ୍ୟାପାରରେ ଜଡ଼ିତ ହୋଇ ସୁଦ୍ଧା ବୃଦ୍ଧ ବୟସ ଶ୍ରୀକ୍ଷେତ୍ର ପରି ପବିତ୍ର ତୀର୍ଥରେ ଜୀବନର ଶେଷ ଅଂଶ କଟାଇ ଥିବା ସ୍ୱାଭାବିକ । ତେଣୁ ସେ ତାଙ୍କ ଜ୍ୟେଷ୍ଠ ପୁତ୍ର କାମାର୍ଣ୍ଣବ ଦେବଙ୍କର 'ମୂର୍ଦ୍ଧାଭିଷେକ' ଉତ୍ସବ ଶ୍ରୀକ୍ଷେତ୍ରରେ ସମ୍ପନ୍ନ କରି ରାଜକାର୍ଯ୍ୟରୁ ଅବସର ନେଇଥିଲେ । ଏ ସମ୍ପର୍କରେ ତାମ୍ରଶାସନମାନଙ୍କରେ ନିମ୍ନୋକ୍ତ ଶ୍ଳୋକଟି ଖୋଦିତ ହୋଇଅଛି ।:—

"ବେଦର୍ତ୍ତୁବ୍ୟୋମଚନ୍ଦ୍ରପ୍ରମିତ ଶକସମାଃ ପ୍ରାପ୍ତକାଳେ ଦିନେଶେ
ଚାପସ୍ଥେଽନ୍ୟଗ୍ରହୌଘେ ବଳବତି ଶପୁଷ୍ପ ପ୍ରକ୍ଷସ୍ୟଂ ପ୍ରାପ୍ତବସ୍ତୁ ।
ଅସ୍ମିନ୍ନମୂର୍ଦ୍ଧାଭିଷିକ୍ତେ ନୃପବର ତନସ୍ତେ ସର୍ବଲୋକୈକନାଥେ
ଶ୍ରୀମତ୍କାମାର୍ଣ୍ଣବେଶେ ଜଗଦଭବଦିଦଂ ତତ୍ତ୍ୱଦାନନ୍ଦ ପୂର୍ଣ୍ଣମ୍ ॥

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ୧୦୬୪ ଶକାବ୍ଦ ବା ୧୧୪୨ ଖ୍ରୀଷ୍ଟାବ୍ଦରେ ରାଜ୍ୟରେ ଶାନ୍ତି ପ୍ରତିଷ୍ଠିତ ହୋଇଥିବାରୁ ମହାରାଜା ଚୋଡ଼ଗଙ୍ଗ ଶ୍ରୀଧାମରେ ନିଜ ପୁତ୍ର ହସ୍ତରେ ରାଜ୍ୟଭାର ସମର୍ପଣ କରି ନିଜେ ଅବସର ନେଲେ । ସେତେବେଳେ ତାଙ୍କ (ଚୋଡ଼ଗଙ୍ଗଙ୍କ) ବୟସ ଠିକ୍ ୭୦ ବର୍ଷ ହୋଇଥିଲା । ଏହାପରେ ସେ ଆଉ ମାତ୍ର ଚାରି ବା ପାଞ୍ଚବର୍ଷ ଜୀବିତ ଥିଲେ । ସେହି ସ୍ୱଳ୍ପକାଳ ମଧ୍ୟରେ ସେ ବଡ଼ଦେଉଳ ନିର୍ମାଣ କାର୍ଯ୍ୟ ତଦାରଖ କରି ବୈଷ୍ଣବ ଗୁରୁଙ୍କ ଉପଦେଶ କ୍ରମେ ନୂତନ ମନ୍ଦିରର ନକ୍ସା ସମ୍ପାଦନ କରିଥିଲେ ଏବଂ ସୁଦକ୍ଷ କର୍ମକାରଙ୍କୁ ତେଥିରେ ନିଯୁକ୍ତ କରିଥିଲେ । ନୃସିଂହମନ୍ଦିରରୁ ପ୍ରାପ୍ତ ଏକ ଶିଳାଲେଖରେ ପଛି ନାମକ ଜଣେ ପ୍ରସିଦ୍ଧ କର୍ମକାର ଶ୍ରୀପୁରୁଷୋତ୍ତମଙ୍କ ପାଇଁ ଅଖଣ୍ଡଦୀପ ଜାଳିବା ସକାଶେ ତୈଳଦାନ କରିଥିବା ପ୍ରସଙ୍ଗ ସେହି ଅଭିଲେଖରେ ଖୋଦିତ ହୋଇଅଛି । ସେ ନିଜର ପରିଚୟ ଦେବାକୁ ଯାଇ ଉଲ୍ଲେଖ କରିଛନ୍ତି, 'ନବ ପୁରୁଷୋତ୍ତମ ନିଳୟସ୍ୟ କରମକାର କୁଳ ପୁତ୍ର-ପଛି' ।

ଚୋଡ଼ଗଙ୍ଗ ଶ୍ରୀକ୍ଷେତ୍ରରେ ବାସ କଲାବେଳେ ନୃସିଂହ ମନ୍ଦିରରେ ତିନମୂର୍ତ୍ତି, ଅର୍ଥାତ୍ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ସ୍ଥାପନ କରି ନିୟମାନୁସାରେ ସେହି ଦେବଦେବୀଙ୍କ ପୂଜା ଓ ପର୍ବପର୍ବାଣୀ ସକାଶେ ନୂତନ ନୀତିମାନ ସୃଷ୍ଟି ଥିବା ତାଙ୍କର ମୁଖ୍ୟ କାର୍ଯ୍ୟରେ ପରିଣତ ହୋଇଥିବା ସମ୍ଭବ । ତେଣୁ କଳିଙ୍ଗର ଦେବମନ୍ଦିରମାନଙ୍କରେ ଦେବଦାସୀଙ୍କ ନୃତ୍ୟ-ସଙ୍ଗୀତ-ପ୍ରଚଳନ ପରି ପୁରୀର ସେହି ନୃସିଂହମନ୍ଦିର ସମ୍ମୁଖରେ ମଧ୍ୟ ସେହି ନୃତ୍ୟ ନିୟମ ପରିଚାଳନା ପାଇଁ ଦେବଦାସୀ (ସାନି-ସମ୍ପ୍ରଦାୟ) ମାନଙ୍କୁ ଅଣାଇଥିବା ପ୍ରସଙ୍ଗ ଉପରେ ଲେଖାଯାଇଛି ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଦକ୍ଷିଣରେ ଯେଉଁ ସାନି-ସମ୍ପ୍ରଦାୟ ଉତ୍କଳକୁ ଉଠି ଆସିଥିଲେ ସେମାନଙ୍କ ମାତୃଭାଷା ତେଲଙ୍ଗା ହୋଇଥିବାରୁ ସମ୍ଭବତଃ ସେହି ଭାଷାରେ ରଚିତ ଭକ୍ତି-ସଙ୍ଗୀତମାନ ଦେବମନ୍ଦିରରେ ଗାନ କରୁଥିଲେ । କିନ୍ତୁ ସ୍ଥାନୀୟ ଓଡ଼ିଆଙ୍କୁ ତାହା କିଛିସୁ ଆକୃଷ୍ଟ କରିପାରି ନଥିବ । ତେଣୁ ଚୋଡ଼ଗଙ୍ଗ ସେହି ନର୍ତ୍ତକୀମାନଙ୍କ ଶିକ୍ଷା ପାଇଁ ସଂସ୍କୃତ ଭାଷାରେ ଗୀତ ରଚନା କରିବା ସକାଶେ ତତ୍କାଳୀନ ମହାକବିମାନଙ୍କୁ ଅନୁରୋଧ କରିଥିବେ । ଚୋଡ଼ଗଙ୍ଗଙ୍କ ପରି ଜଣେ ସୁପ୍ରସିଦ୍ଧ ମହାରାଜାଙ୍କ ସେହି ଅଭିଳାଷ ପୂର୍ତ୍ତି କରିବାକୁ କେତେକ ମହାକବି ଉଦ୍ୟତ ହୋଇଥିବେ । କିନ୍ତୁ ସଂସ୍କୃତରେ ଭକ୍ତି ସଂଗୀତ ରଚନା କରିବାକୁ ହେଲେ ଗାନ୍ଧର୍ବ ବିଦ୍ୟାରେ ପାରଦର୍ଶିତା ଲାଭ କରିବା ଆବଶ୍ୟକ । ଏପରି କେଉଁ ମହାକବି ୧୧୪୨ ଖ୍ରୀଷ୍ଟାବ୍ଦରେ ଏ ଅଞ୍ଚଳରେ ଥାଇପାରେ; ଯେ କି ଦେବଦାସୀଙ୍କ ନୃତ୍ୟ-ସଙ୍ଗୀତ ପାଇଁ ବିଭିନ୍ନ ରାଗ ଓ ତାଳ ମାଧ୍ୟମରେ ଭକ୍ତିସଙ୍ଗୀତ ରଚନା କରିପାରେ ? ଆମ୍ଭ ମତରେ ଜୟଦେବହିଁ ଏକମାତ୍ର ମହାକବି ଯେ କି 'ଗୀତ-ଗୋବିନ୍ଦ' ପରି ଏକ ଭକ୍ତିପ୍ରଧାନ କାବ୍ୟ ରଚନା କରି ଚୋଡ଼ଗଙ୍ଗଙ୍କ ପରି ଜଣେ ବିଦ୍ୱାନ୍ ମହାରାଜାଙ୍କୁ ସନ୍ତୁଷ୍ଟ କରି ପାରିଥିବେ ।

ଏଠାରେ ଉଲ୍ଲେଖ କରିବା ଆବଶ୍ୟକ ଯେ, ଜୟଦେବଙ୍କ ବୟସ ୧୧୪୨ ଖ୍ରୀଷ୍ଟାବ୍ଦ ବେଳକୁ ପ୍ରାୟ ୩୦ ବର୍ଷ ହୋଇଥିବ । କାରଣ ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିରର ଏକ ଶିଳାଲେଖରେ ଉଲ୍ଲେଖ ଅଛି ଯେ, କଳିଙ୍ଗରୁ ସମାଗତ ମେଡ଼ମ ଦେବୀ ନାମକ ଜଣେ ଭଦ୍ର ମହିଳାଙ୍କ ସଙ୍ଗେ ସାଧୁପ୍ରଧାନ ଜୟଦେବ କୂର୍ମ-ପାଟକରୁ ଆସିଥିଲେ । ଏହି ଶିଳାଲେଖଟି ଚୋଡ଼ଗଙ୍ଗଙ୍କ ପୁତ୍ର ରାଘବଦେବଙ୍କ ରାଜତ୍ୱ କାଳରେ ଖୋଦିତ ହୋଇଥିଲା । ରାଘବଦେବ ଖ୍ରୀ: ୧୧୫୯-୧୧୭୦ ମଧ୍ୟରେ ରାଜତ୍ୱ କରିଥିଲେ । ତେଣୁ ୧୧୬୦ ଖ୍ରୀଷ୍ଟାବ୍ଦରେ ଯଦି ଜୟଦେବ

'ସାଧୁ ପ୍ରଧାନ' ଉପାଧିରେ ଭୂଷିତ ହୋଇଥିବେ; ତାହେଲେ ତାଙ୍କ ବୟସ ଅନ୍ୟୂନ ୭୦ ବର୍ଷ ହୋଇଥିବ । ଏ ଦୃଷ୍ଟିରୁ ବିଚାର କଲେ ଲକ୍ଷ୍ମଣସେନଙ୍କ ବୟସ ୭୦ ବର୍ଷ ବେଳକୁ ଜୟଦେବଙ୍କ ବୟସ ୩୦ ବର୍ଷ ହୋଇ ସେ ପୂର୍ଣ୍ଣ ଯୌବନରେ ପଦାର୍ପଣ କରିଥିବେ । ସେତିକିବେଳେ ଶୃଂଗାରରସ ଭକ୍ତିକ 'ଗୀତଗୋବିନ୍ଦ' ସଂଗୀତ ମାଧ୍ୟମରେ ରଚନା କରି ପାରିଥିବେ; କାରଣ ସେ କୂର୍ମ ପାଟକରେ ରହି ବିଦ୍ୟାଭ୍ୟାସ କରୁଥିବା କାଳରେ ସେଠାରେ ଦେବଦାସୀ ଓ ସାଧୁ ସମ୍ପ୍ରଦାୟଙ୍କ ମେଳରେ ରହି ଗାନ୍ଧର୍ବ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିବେ । ସେଠାରେ ରହିଥିବା ନିମ୍ବାର୍କ ପନ୍ଥୀ ବୈଷ୍ଣବମାନଙ୍କ ସାହଚର୍ଯ୍ୟରେ ରାଧା-କୃଷ୍ଣ ଭକ୍ତିମୂଳକ ଗୀତମାନ ସୁଲଳିତ ପଦବିନ୍ୟାସରେ ଏବଂ ବିଭିନ୍ନ ରାଗ ଓ ଲୟଯୁକ୍ତ କରି ରଚନା କରିବା ଅଭ୍ୟାସ ତାଙ୍କ ଶିକ୍ଷାର ପରିସରଭୁକ୍ତ ହୋଇଥିଲା ।

ଯେଉଁ ସମୟର ବିଷୟ ଅବତାରଣ କରାଯାଉଛି, ସେତେବେଳେ ପଶ୍ଚିମ ଭାରତରେ ରାଧା-କୃଷ୍ଣଙ୍କ କ୍ରୀଡ଼ା-ଆଧାରିତ ନାଟକମାନ ସଂସ୍କୃତରେ ଲେଖା ହେଉଥିଲା । ଉଦାହରଣ ସ୍ୱରୂପ ଗୁଜରାଟର କବି ରାମକୃଷ୍ଣ 'ଗୋପାଳକେଳି ଚନ୍ଦ୍ରିକା" ନାମକ ନାଟକ ଲେଖିଥିଲେ । ଅନ୍ୟଜଣେ ଜନଦେଓ ସୂରି ନାମକ କବି ରାଧା-କୃଷ୍ଣଙ୍କ କେଳି (ରାସ)କୁ ଆଧାର କରି 'ଉପଦେଶ ରସାୟନ-ରାସ ନାମକ ନାଟକରେ ୮୦ଟି ପଙ୍କ୍ତି (ଶ୍ଳୋକ) ରଚନା କରିଥିଲେ । କିନ୍ତୁ ସେହି ନାଟକଗୁଡ଼ିକ ସଂସ୍କୃତରେ ଲେଖା ହୋଇଥିଲେ ସୁଦ୍ଧା 'ଗୀତଗୋବିନ୍ଦ' ପରି ପଦଲାଳିତ୍ୟରୁ ବଂଚିତ ହୋଇଥିଲା । 'ଗୀତଗୋବିନ୍ଦ'ର ଦୀର୍ଘ ସମାସଯୁକ୍ତ ପଦ ଲାଳିତ୍ୟ ମଧ୍ୟଯୁଗର ସଂସ୍କୃତ ସାହିତ୍ୟରେ ଦୁର୍ଲ୍ଲଭ କହିଲେ ଚଳେ । ତଥାପି କୌଣସି ପ୍ରାଚୀନ 'ଅଷ୍ଟପଦୀ' ଶ୍ଳୋକ ରଚନାକୁ ଆଧାର କରିଥିବା ତାଙ୍କ ଶବ୍ଦ ଯୋଜନାରୁ ଅନୁମିତ ହୁଏ । ୭୫୪ ଖ୍ରୀଷ୍ଟାବ୍ଦରେ ହରଗୌରୀଙ୍କର ସଙ୍ଗମକୁ ଲକ୍ଷ୍ୟକରି ଜଣେ କବି ବାଦାମୀର ଚାଲୁକ୍ୟ ବଂଶୀୟ ମହାରାଜା କୀର୍ତ୍ତିବର୍ମନ (୨ୟ)ଙ୍କ ଅଭିଲେଖରେ ନିମ୍ନୋକ୍ତ ଶ୍ଳୋକଟି ରଚନା କରି ଅଛନ୍ତି—

'ସ ଜୟତୁ ବାମବାହୁ ପରିଚୁମ୍ବିତ ବଦନ ପୟୋଧରେ ସ୍ଥଳୋ
ଅଳକୂଳନ୍ଲୋଲଲୀଳଅଳକାବଳି ବିଧୃତ କରାଗ୍ରମଣ୍ଡଳୋ ।
ଦଶଟତନୟନକରଣ ପରିବର୍ଦ୍ଧିତରାଗରସାଦ୍ର ବର୍ଦ୍ଧିତୋ
ବିକଷିତ ପୁଣ୍ଡରୀକ ପ୍ରତିମୋ ହରଗୌରୀ ସଂଗମେ ସ ଜୟତୁ ।'

(Ep. Ind., Vol. III. P.4)

ଏହି ଅଭିଲେଖଟି ପ୍ରକାଶ କରି ଡଃ ଫ୍ଲିଟ୍ (Dr. Fleet) ଲେଖିଛନ୍ତି—

"The verse seems to have been quoted (imperfect collection) from some Saiva poem, similar to the Vaisnava GITAGOVINDA"

ଅର୍ଥାତ୍ ଏହି ଶ୍ଳୋକଟି ବୋଧହୁଏ କୌଣସି ଅନାବିଷ୍କୃତ ଶୈବକାବ୍ୟରୁ ଉଦ୍ଧୃତ ହୋଇଥିବ । ଏପରି ଲେଖା ବୈଷ୍ଣବୀୟ କାବ୍ୟ 'ଗୀତଗୋବିନ୍ଦ'ର ପ୍ରସଙ୍ଗ ।

ବାସ୍ତବରେ 'ଗୀତଗୋବିନ୍ଦ' ରଚନା ପୂର୍ବରୁ ରାଧାକୃଷ୍ଣ ଲୀଳାକୁ ଆଧାର କରି କେତେକ ଭକ୍ତିଗ୍ରନ୍ଥ ରଚିତ ହୋଇଥିଲା । ଆମର ମନେହୁଏ; ଖ୍ରୀ: ୧୧ଶ ଶତାବ୍ଦୀର କୃଷ୍ଣଭକ୍ତ କବି ବିଲ୍ୱମଙ୍ଗଳଙ୍କ 'କୃଷ୍ଣକର୍ଣ୍ଣାମୃତ' କାବ୍ୟଟି ଜୟଦେବଙ୍କୁ ପ୍ରେରଣା ଦେଇଥିବ । ପ୍ରବାଦ ଅଛି ଯେ, ବିଲ୍ୱମଙ୍ଗଳହିଁ ଜୟଦେବ ରୂପେ ଜନ୍ମିଥିଲେ । ବାସ୍ତବରେ କହିବାକୁ ଗଲେ 'ଗୀତଗୋବିନ୍ଦ'ର ଶ୍ରୁତି ମଧୁର ଶବ୍ଦ ସଙ୍ଗୀତମାଧ୍ୟମରେ ଯେପରି ପାଠକକୁ ମୁଗ୍ଧ କରୁଛି, ତଦପେକ୍ଷା ଅଧିକ ପ୍ରଫୁଲ୍ଲତା ସୃଷ୍ଟି କରିଥିବ ଦର୍ଶକଭକ୍ତମାନଙ୍କୁ, ଯେତେବେଳେ ସୁବେଶିତ ଦେବଦାସୀଙ୍କ ଅଭିନୟ ମିଶ୍ରିତ ଲଳିତ କଣ୍ଠ—ସଂଗୀତର ଲାସ୍ୟ ଲୀଳା ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିର ସମ୍ମୁଖରେ ପରିବେଷିତ ହୋଇଥିବେ । ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ, ଚୋଡଗଙ୍ଗଙ୍କ ଦରବାର ପଣ୍ଡିତମାନଙ୍କ ମଧ୍ୟରେ ଜୟଦେବ ମହାକବି ରୂପେ ପ୍ରସିଦ୍ଧି ଲାଭ କରିଥିଲେ ଏବଂ 'ଗୀତଗୋବିନ୍ଦ' ଶ୍ରୀମନ୍ଦିରରେ ନିତ୍ୟ ନୃତ୍ୟ-ସଙ୍ଗୀତ ମାଧ୍ୟମରେ ପରିଣତ ହୋଇଥିଲା ।

ମହାରାଜା ଚୋଡଗଙ୍ଗଙ୍କ ଅନୁରାଗ ହେତୁ ଦରବାରୀୟ ସ୍ତରରେ ଜୟଦେବଙ୍କୁ ମହାକବି ରୂପେ ସମ୍ମାନିତ କରାଗଲା । ପ୍ରାଚୀନ ଓ ମଧ୍ୟଯୁଗରେ ମହାକବିମାନେ ରାଜାମାନଙ୍କଠାରୁ ସମ୍ମାନିତ ହୋଇ ଖ୍ୟାତିଲାଭ କରିଥିଲେ । ଉଦାହରଣ ସ୍ୱରୂପ, ମହାକବି କାଳିଦାସ ଗୁପ୍ତବଂଶୀୟ ମହାରାଜା ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ଠାରୁ ଉଚ୍ଚ ସମ୍ମାନ ପାଇଥିଲେ । ମହାକବି ବାଣଭଟ୍ଟ ମହାରାଜା ହର୍ଷବର୍ଦ୍ଧନଙ୍କ ସଭାରେ ସମ୍ମାନିତ ହୋଇଥିଲେ । ମହାକବି ଭବଭୂତି କାନ୍ୟକୁବ୍ଜାଧିପତି ମହାରାଜା ଯଶୋବର୍ମନ୍‌ଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ପ୍ରବୋଧଚନ୍ଦ୍ରୋଦୟ ରଚୟିତା କବି କୃଷ୍ଣ ମିଶ୍ର ଚନ୍ଦେଲ ବଂଶୀୟ ମହାରାଜା କୀର୍ତ୍ତିବର୍ମାଙ୍କ ସଭାରେ ସମ୍ବର୍ଦ୍ଧିତ ହୋଇଥିଲେ । ମହାକବି ସନ୍ଧ୍ୟାକର ନନ୍ଦୀ ବଙ୍ଗର ପାଳବଂଶୀୟ ମହାରାଜା ରାମପାଳଙ୍କ ସଭାପଣ୍ଡିତ ରୂପେ ସମ୍ମାନିତ ହୋଇଥିଲେ ।

ଏଣୁ ମହାକବି ଜୟଦେବ ଗଙ୍ଗବଂଶୀୟ ମହାରାଜା ଚୋଡ଼ଗଙ୍ଗଙ୍କ ସଭାରେ ସମ୍ମାନିତ ହୋଇଥିବା ସୁନିଶ୍ଚିତ ।

କେହି କେହି ଐତିହାସିକଙ୍କ ମତରେ ଜୟଦେବ ଏବଂ ଗୋବର୍ଦ୍ଧନାଚାର୍ଯ୍ୟ ବଙ୍ଗର ରାଜା ଲକ୍ଷ୍ମଣ ସେନଙ୍କର ସଭାପଣ୍ଡିତ ଥିଲେ । ରାଜା ଲକ୍ଷ୍ମଣସେନ ୧୧୭୯-୧୨୦୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ରାଜତ୍ୱ କରିଥିଲେ । ତାଙ୍କ ପିତାମହ ବିଜୟସେନ ବୋଧହୁଏ ଚୋଡ଼ଗଙ୍ଗଙ୍କ ରାଜତ୍ୱର ଶେଷ ଅଂଶରେ ଜୀବିତ ଥିବେ । ସୁତରାଂ ଜୟଦେବ ଲକ୍ଷ୍ମଣସେନଙ୍କ ରାଜତ୍ୱ କାଳରେ ଜୀବିତ ଥିବା ସମ୍ଭବ ନୁହେଁ । ଆଉ ମଧ୍ୟ ଗୋବର୍ଦ୍ଧନାଚାର୍ଯ୍ୟ ଖ୍ରୀ: ୧୧ଶ ଶତକରେ 'ଆର୍ଯ୍ୟାସପ୍ତଶତୀ' ନାମକ ଗ୍ରନ୍ଥ ଲେଖିଥିଲେ । ସୁତରାଂ ଲକ୍ଷ୍ମଣ ସେନଙ୍କ ସଭା ପଣ୍ଡିତ ରୂପେ ଏମାନଙ୍କୁ ଗଣନା କରିବା ଯୁକ୍ତିଯୁକ୍ତ ନୁହେଁ ।

ଚୋଡ଼ଗଙ୍ଗଙ୍କ ଆଶ୍ରୟରେ ବୋଧହୁଏ ଜୟଦେବଙ୍କ 'ଗୀତଗୋବିନ୍ଦ' ଶ୍ରୀମନ୍ଦିରରେ ତେଲଙ୍ଗା ଯାନି-ସମ୍ପ୍ରଦାୟଙ୍କ ଦ୍ୱାରା ପରିବେଷିତ ହେଉଥିଲା । କେହି କେହି ପଣ୍ଡିତଙ୍କ ମତରେ 'ଗୀତଗୋବିନ୍ଦ' ଏକ 'ଯାତ୍ରା' ପ୍ରକାର ନାଟକ, ଯାହାକି ମୁକ୍ତ ମଞ୍ଚରେ ଅଭିନୀତ ହେଉଥିଲା । ଏକମାତ୍ର ପୁରୀର ଶ୍ରୀମନ୍ଦିରରେହିଁ ତାହା ଖ୍ରୀ: ୧୧୪୨ରୁ ଧାରାବାହିକ ଭାବେ ଅଭିନୀତ ହେଉଥିଲା । ବହୁ ଅଞ୍ଚଳରୁ ଭକ୍ତ ଓ ଯାତ୍ରୀମାନେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆସି 'ଗୀତଗୋବିନ୍ଦ'ର ନୃତ୍ୟ ସମ୍ଭାର ଦେଖି ମୁଗ୍ଧ ହେଉଥିଲେ । ଅଳ୍ପକାଳ ମଧ୍ୟରେ ତାହା ସର୍ବଭାରତରେ ପ୍ରଚଳିତ ହେଲା । ୧୨୯୧ ଖ୍ରୀଷ୍ଟାବ୍ଦରେ ମହାରାଜା ସାରଙ୍ଗ ଦେବଙ୍କର ଏକ ଶିଳାଲେଖରେ 'ଗୀତଗୋବିନ୍ଦ'ର ନିମ୍ନୋକ୍ତ ବନ୍ଦନା ଶ୍ଳୋକଟି ଉଦ୍ଧାର କରାଯାଇଛି—

"ବେଦାନୁଦ୍ଧରତେ ଜଗନ୍ନିବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ ॥"

**(D. R. Bhandarkar, Poona, I. A., Vol. XLI, P. 2160)**

ଯେଉଁ ପର୍ଯ୍ୟାୟରେ ଅବତାରୀ କୃଷ୍ଣ (ପୁରୁଷୋତ୍ତମ)ଙ୍କ ଦଶଟି ଅବତାରଙ୍କୁ ଜୟଦେବ ତାଙ୍କ ପ୍ରଥମ ଶ୍ଳୋକରେ ଅଥବା ଛନ୍ଦୋବଦ୍ଧ ଗୀତରେ ବର୍ଣ୍ଣନା କରିଛନ୍ତି, ଠିକ ସେହି ପର୍ଯ୍ୟାୟରେହିଁ ନୃସିଂହ ମନ୍ଦିରରେ ଚତୁର୍ଦ୍ଦିଗ ଭିତ୍ତିଗାତ୍ରରେ ଅବତାର ପ୍ରତିମାମାନଙ୍କୁ ଖୋଦିତ କରାଯାଇଛି ।

ସଂସ୍କୃତ ଭାଷାରେ ସେ ଯେଉଁ ସୁବୋଧ-ଲଳିତ ପଦଗୁଡ଼ିକ ସଂଯୋଗ କରି 'ଗୀତଗୋବିନ୍ଦ' ରଚନା କରିଥିଲେ ତାହା ବାସ୍ତବରେ ଦୁର୍ଲଭ କହିଲେ ଚଳେ ।

ଜୟଦେବଙ୍କ ଜୀବନୀ କେତେକ ପରବର୍ତ୍ତୀ ପଣ୍ଡିତମାନେ ଭିନ୍ନ ପ୍ରକାରେ ଲେଖିଥିବା ଦେଖାଯାଏ । ସଂସ୍କୃତରେ ଲେଖା ହୋଇଥିବା 'ଭକ୍ତମାଳା' ଗ୍ରନ୍ଥକୁ ହିନ୍ଦୀ ଭାଷାରେ ନାଭାଜୀ ପ୍ରାୟ ୧୭ଶ ଶତାବ୍ଦୀରେ ଲେଖିଥିଲେ । ସେଥିରେ ଉଲ୍ଲେଖ ଅଛି ଯେ, ଜୟଦେବ ଜଣେ ବିବାହିତ ବୈଷ୍ଣବ ସାଧୁ । ସମ୍ଭବତଃ ପରିଣତ ବୟସରେ ସେ ଗୃହ ସଂସାର ତ୍ୟାଗ କରି କୂର୍ମ ପାଟକରେ ରହି 'ସାଧୁ-ପ୍ରଧାନ' ଉପାଧି ଲାଭ କରିଥିବେ । ସେ ମଧ୍ୟ ତାଙ୍କ ତରୁଣ ବୟସରେ ଗାନ୍ଧର୍ବ-ବିଦ୍ୟାରେ ପାରଦର୍ଶିତା ଲାଭ କରି କେତେକ କୃଷ୍ଣଲୀଳାଭିତ୍ତିକ ଗୀତ ସଂସ୍କୃତ ଭାଷାରେ ରଚନା କରିଥିଲେ, ଯାହାକି ପରେ ଏକ ନାଟକୀୟ ପଦ୍ଧତିରେ 'ଗୀତ ଗୋବିନ୍ଦ' କାବ୍ୟରୂପ ଧାରଣ କରିଥିଲା ଏବଂ ଶ୍ରୀକ୍ଷେତ୍ରରେ ସର୍ବପ୍ରଥମେ ଅଭିନୀତ ହେଲା ।

ଶ୍ରୀମନ୍ଦିରରେ ଧାରାବାହିକ ରୂପେ 'ଗୀତଗୋବିନ୍ଦ'ର ଗୀତଗୁଡ଼ିକ ଦେବଦାସୀମାନେ ତଥା ଅନ୍ୟାନ୍ୟ ଦଳମାନେ ଗାନ କରୁଥିଲେ । କିନ୍ତୁ ଖ୍ରୀ: ୧୫ଶ ଶତାବ୍ଦୀରେ ସୂର୍ଯ୍ୟବଂଶୀୟ ମହାରାଜା ପୁରୁଷୋତ୍ତମଦେବ ଅନ୍ୟ ଏକ 'ଗୀତଗୋବିନ୍ଦ' ବା 'ଅଭିନବ ଗୀତ ଗୋବିନ୍ଦ' ସଂସ୍କୃତରେ ଲେଖିଥିଲେ । ବୋଧହୁଏ ମହାରାଜାଙ୍କ ରଚନାର କେତେକ ସଙ୍ଗୀତ ଶ୍ରୀମନ୍ଦିରରେ ବୈଷ୍ଣବ ସମ୍ପ୍ରଦାୟମାନେ ଗାନ କରିବାରୁ ପୁରୁଷୋତ୍ତମଦେବଙ୍କ ପୁତ୍ର ପ୍ରତାପରୁଦ୍ରଦେବ ସେଥିରେ ବିରୋଧ କରି ଏକ ଅଭିଲେଖ ଜୟ-ବିଜୟ ଦ୍ୱାର ନିକଟରେ ଖୋଦିତ କରାଇଥିଲେ । ସେଥିରେ ରାଜାଙ୍କ ନିର୍ଦ୍ଦେଶ ଥିଲା ଯେ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଜୟଦେବଙ୍କ ଗୀତଗୋବିନ୍ଦ ବିନା ଅନ୍ୟ କୌଣସି ଗୀତ ଗାନ କରାଯିବ ନାହିଁ । ତେଣୁ ଯେଉଁ ବୈଷ୍ଣବ ସମ୍ପ୍ରଦାୟମାନେ ସେହି ଗୀତଗୋବିନ୍ଦର ଗାନ ଜାଣି ନଥିବେ ସେମାନେ ତେଲଙ୍ଗା-ସମ୍ପ୍ରଦାୟଙ୍କ ଠାରୁ ଶିକ୍ଷା କରିବାକୁ ହେବ ଇତ୍ୟାଦି ।

କାଳକ୍ରମେ ଶ୍ରୀମନ୍ଦିରର ନୀତିରେ ବହୁ ପରିବର୍ତ୍ତନ ହେଲା । ଶ୍ରୀପୁରୁଷୋତ୍ତମଙ୍କ ନାମରେ ମହାରାଜା ଅନଙ୍ଗଭୀମ ତାଙ୍କ ରାଜତ୍ୱ ସମର୍ପଣ କରି ନିଜେ ତାଙ୍କର ଦାସ (ରାଉତ) ହୋଇ ରାଜ୍ୟଶାସନ ଚଳାଇଲେ । ତେଣେ ଶ୍ରୀମନ୍ଦିରରେ

ରାଜାଧିରାଜ ରୂପେ ରତ୍ନସିଂହାସନରେ ବସିଥିବା ଜଗନ୍ନାଥଙ୍କ ଦୈନନ୍ଦିନ ନୀତି-ନିୟୋଗମାନ ଜଣେ ରାଜାଙ୍କ ଦୈନନ୍ଦିନ ରୀତି ସଙ୍ଗେ ସମାନ କରି ଦିଆଗଲା । ସେହିକବେଳେ ବୋଧହୁଏ ଶ୍ରୀଜଗନ୍ନାଥଙ୍କ ପହୁଡ଼ ବେଳେ ଜଣେ ଦେବଦାସୀ କେବଳ ଅଭିନୟ କରି ନଗ୍ନ ଅଙ୍ଗର ମୁଦ୍ରାମାନ ପ୍ରଦର୍ଶନ କରିବା ନୀତି ପ୍ରବର୍ତ୍ତିତ ହୋଇଯାଇଛି ।

କାଳକ୍ରମେ ଚୂଡ଼ଙ୍ଗ ସାହିରେ ବାସ କରିଥିବା ସାନ-ସମ୍ପ୍ରଦାୟ ଯୌନ ବ୍ୟବସାୟରେ ବ୍ରତୀ ହେଲେ । ତେଣୁ ଦେବଦାସୀ କିମ୍ବା ବେଶ୍ୟାବୃତ୍ତିରେ ଲିପ୍ତ ହୋଇଥିବା ସାନ-ସମ୍ପ୍ରଦାୟଙ୍କୁ ନିର୍ଣ୍ଣିତ କରିବା ସକାଶେ ଭାରତୀୟ ପେନାଲ୍ କୋଡ଼ (Penal code)ରେ ୧୯୨୪ ସାଲରେ ସଂଶୋଧିତ ଧାରା ୧୮ ଅନୁସାରେ ପୁଣି ୧୯୩୫ ସାଲରେ ବମ୍ବେ ଉଚ୍ଚ ନ୍ୟାୟାଳୟର 'ଦେବଦାସୀ ସଂରକ୍ଷଣ ନିୟମ' (Bombay Devadasi Protection Act X of 1935) ଅନୁସାରେ ଯୌନ ବ୍ୟବସାୟ ଓ ଦେବଦାସୀ ପ୍ରଥା ସମୂଳେ ଉଚ୍ଛେଦ କରାଗଲା । ଏହାପରେ ପୁରୀ ଶ୍ରୀମନ୍ଦିରରେ ଦେବଦାସୀ ସେବା ସ୍ଥଗିତ ହୋଇଗଲା । ସେଥି ସଙ୍ଗେ 'ଗୀତ ଗୋବିନ୍ଦ' ଗାନ ମଧ୍ୟ ଶ୍ରୀମନ୍ଦିରରେ ଶୁଣାଗଲା ନାହିଁ ।



# ଦୋଳୋତ୍ସବ

ହିନ୍ଦୁ ଉତ୍ସବମାନଙ୍କ ମଧ୍ୟରେ 'ଦୋଳୋତ୍ସବ' ଏକ ଐତିହାସିକ ପର୍ବ, ଯାହାକି ଅତି ପ୍ରାଚୀନ କାଳରୁ 'ବସନ୍ତୋତ୍ସବ' ନାମରେ ପ୍ରସିଦ୍ଧି ଲାଭ କରିଥିଲା । ଫାଲ୍‌ଗୁନ ମାସ ପୌର୍ଣ୍ଣମୀ ତିଥିରେ 'ବସନ୍ତୋତ୍ସବ' ଅନୁଷ୍ଠିତ ହୁଏ । ବୈଦିକ ଯୁଗରେ ମଧ୍ୟ ସେହି ଉତ୍ସବ ପ୍ରଚଳିତ ଥିବା ଜଣାଯାଏ । ସେଥିର ଅନ୍ୟ ନାମ ଥିଲା 'ମଦନମହୋତ୍ସବ' । ମଦନ ବା କାମଦେବଙ୍କୁ ସେହି ତିଥିରେ ଆରାଧନା କରାଯାଉଥିଲା । ଏହାର ନିଦର୍ଶନ ସଂସ୍କୃତ ସାହିତ୍ୟରୁ ପ୍ରମାଣିତ ହୁଏ । 'ରତ୍ନାବଳୀ-ନାଟକ'ର ପ୍ରଥମାଙ୍କରେ 'ବସନ୍ତୋତ୍ସବ'ରେ କାମଦେବଙ୍କ ଆରାଧନା ବର୍ଣ୍ଣିତ ହୋଇଅଛି । ସେଥିରେ ଯୁବକ-ଯୁବତୀମାନଙ୍କ ସଙ୍ଗେ ରାଜା ଓ ରାଜପୁତ୍ରଙ୍କ ମିଳିତ ନୃତ୍ୟ-ଗୀତ ଏବଂ ଅନ୍ୟାନ୍ୟ କ୍ରୀଡ଼ା ମଧ୍ୟ ସମ୍ପାଦିତ ହେଉଥିଲା । ଉକ୍ତ ନାଟକର ନାୟିକା ସାଗରିକା ଓରଫ ରତ୍ନାବଳୀ ଜଣେ ଅନୂଢ଼ା ରାଜକୁମାରୀ । ତାଙ୍କ ରୂପରେ ବିମୁଗ୍ଧ ରାଜାଙ୍କ ମନରେ ପ୍ରଣୟବୀଜ ଅଙ୍କୁରିତ ହୋଇଥିଲା । ଏହା ଜାଣିପାରି ରାଣୀ କ୍ରୋଧରେ ଜର୍ଜରିତ ହେଲେ; କିନ୍ତୁ ମହାମନ୍ତ୍ରୀଙ୍କ କୌଶଳ ହେତୁ ରତ୍ନାବଳୀ ରାଜାଙ୍କ ଅନ୍ତଃପୁରରେ ପ୍ରଣୟିନୀ ହୋଇ ରହିଲେ । 'ବସନ୍ତୋତ୍ସବ'ରେ କାମଦେବଙ୍କୁ ଆରାଧନା କରିବା ସୁଫଳ ବୋଲି ମହାକବି ବାଣଭଟ୍ଟ ପ୍ରକାରାନ୍ତରେ ଏ ଦୃଶ୍ୟଟି ଉପସ୍ଥାପିତ କରିଅଛନ୍ତି ।

ସେହି 'ବସନ୍ତୋତ୍ସବ' ଭାରତରେ କ୍ରମେ 'ଦୋଳୋତ୍ସବ' ନାମ ବହନ କଲା । ଏହା ବୃନ୍ଦାବନ ଓ ମଥୁରାରେ ଅନୁଷ୍ଠିତ 'ହୋଲି' ଭିନ୍ନ ଅନ୍ୟ କିଛି ନୁହେଁ । ବର୍ତ୍ତମାନ ପୂର୍ବକାଳର 'ବସନ୍ତୋତ୍ସବ' ହୋଲି ଉତ୍ସବରେ ପରିଣତ ହୋଇଅଛି ।

ଓଡ଼ିଶାରେ ପ୍ରଚଳିତ 'ହୋଲି' ହିଁ 'ଦୋଳୋତ୍ସବ' । ଏହା କେବଳ ବିଷ୍ଣୁ ମନ୍ଦିରମାନଙ୍କରେ ନୁହେଁ ପ୍ରତି ସାହିରେ ମଧ୍ୟ ଅନୁଷ୍ଠିତ ହୁଏ । ଫାଲ୍‌ଗୁନ ପୌର୍ଣ୍ଣମୀ ପ୍ରାତଃକାଳରେ ଲୋକେ ଫଗୁ ଓ ନାଲି ପାଣି ପରସ୍ପର ପ୍ରତି ନିକ୍ଷେପ କରି ଆମୋଦରେ ମଧ୍ୟାହ୍ନ ପର୍ଯ୍ୟନ୍ତ ଖେଳିଥାନ୍ତି ।

ମହାକବି କାଳିଦାସ 'ରଘୁବଂଶ'ରେ କାମଦେବଙ୍କ ଶକ୍ତି ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି; 'ପର୍ଯ୍ୟାପ୍ତ ପୁଷ୍ପାସ୍ତବକାସ୍ତନାଭ୍ୟାଃ ସ୍ଫୁରତ୍ ପ୍ରବାଳୋଷ୍ଠ ମନୋହରାଭ୍ୟାଃ । ଲତାବଧୂଭ୍ୟସ୍ତରବୋପ୍ୟବାପୁର୍ବିନମ୍ରଶାଖାଭୁଜ ବନ୍ଧନାନି ।"

କାମଦେବଙ୍କ ପ୍ରଭାବରେ କେବଳ ମାନବ ଓ ପଶୁପକ୍ଷୀମାନେ ନୁହନ୍ତି ତରୁଲତାମାନେ ମଧ୍ୟ ମଦମତ୍ତ ହୋଇ ପରସ୍ପରକୁ ଆଲିଙ୍ଗନ କରିଥିଲେ । ତଥାପି ମହାଯୋଗୀ ଶିବଙ୍କଠାରେ ମଦନଦେବଙ୍କ ଶକ୍ତି ହାର ମାନିଥିଲା । ପୁରୀ ବଡ଼-ଦେଉଳରେ ଫାଲ୍‌ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ପ୍ରଥମେ ଅଗ୍ନି ଉତ୍ସବ ସମାହିତ ହୋଇଥାଏ । ସେଦିନ 'ମଧ୍ୟାହ୍ନ ଧୂପ' ସରିବା ପରେ ଶ୍ରୀଠାକୁରମାନଙ୍କ ଶ୍ରୀଅଙ୍ଗରେ ପୁଷ୍ପାଳକ ପୁଷ୍ପ ଚନ୍ଦନ ଲାଗି କରନ୍ତି । ତା'ପରେ ଉତ୍ସବ-ପ୍ରତିମା ଲକ୍ଷ୍ମୀ ଓ ଦରସ୍ପତିଙ୍କୁ ମହାଜନ ଚାଚେରି-ବେଶ କରିବାକୁ ଚଉ-ଶେଯ ଉପରେ ବିଜେ କରାନ୍ତି । ତାଙ୍କ ସହିତ ଦୋଳ-ଗୋବିନ୍ଦ ମଧ୍ୟ ସେଠାକୁ ବିଜେ କଲାପରେ ପୁଷ୍ପାଳକ ସେହି ଚଳନ୍ତିମୂର୍ତ୍ତିଙ୍କ 'ଚାଚେରି-ବେଶ' ବଢ଼ାଇ ଫୁଲମାଳ ପ୍ରତ୍ୟେକଙ୍କୁ ଲାଗି କରନ୍ତି । ତା'ପରେ 'ଚାଚେରି-ଭୋଗ' ସମାହିତ ହୁଏ । ଠାକୁରମାନେ ଭୋଗ ପରେ ଭିତରକୁ ବିଜେ କରନ୍ତି । ତା'ପରେ ପଣ୍ଡା, ପତି ଓ ମୁଦିରଥ ଚନ୍ଦନ ଓ ଫଗୁ ଆଣି ଠାକୁର-ମାନଙ୍କ ଶ୍ରୀଅଙ୍ଗରେ ଲାଗି କରନ୍ତି । ସେତେବେଳେ ଘଣ୍ଟ, କାହାଳୀ, ପ୍ରଭୃତି ବାଦିତ ହୋଇଥାଏ । ମୁଦିରଥ ଶ୍ରୀଅଙ୍ଗରେ ଚନ୍ଦନ ଓ ଫଗୁମୁଣି ଲାଗି କରି ଆଲଟଚାମର ସେବା କରାନ୍ତି । ଏହାପରେ ପଣ୍ଡା ପ୍ରଭୁଙ୍କ ଆଜ୍ଞାମାଳ ଆଣିଦେଲେ ମହାଜନ ତିନି ଉତ୍ସବ-ପ୍ରତିମାଙ୍କୁ ମୁକ୍ତିମଣ୍ଡପଠାରେ ରଖା ଯାଇଥିବା ବିମାନରେ ନେଇ ଲକ୍ଷ୍ମୀଙ୍କ ମନ୍ଦିରରେ ସଜ୍ଜିତ ହୋଇଥିବା ପଲଙ୍କରେ ବିଜେ କରାନ୍ତି । ସେଠାରେ ଲକ୍ଷ୍ମୀ ଓ ନାରାୟଣଙ୍କ 'ହୋଲିଖେଳ' ସମାହିତ ହୁଏ । ସେତେବେଳେ ମାହାରୀ ଓ ମୁଦିରଥ ମଧ୍ୟ ଫଗୁଖେଳରେ ବ୍ୟାପୃତ ହେବେ । ପରିଶେଷରେ ପ୍ରସାଦଲାଗି ଓ ବନ୍ଦାପନା ପରେ ମହାଜନ ପଲଙ୍କରୁ ନେଇ ବିମାନରେ ଠାକୁର ଓ ଠାକୁରାଣୀଙ୍କୁ ଦୋଳବେଦୀଠାରେ ଥିବା ଅଗ୍ନି-ଘରେ ବିଜେ କରାନ୍ତି । ସେଠାରେ ପଣ୍ଡାଙ୍କ ଦ୍ୱାରା ହୋମହେବା ପରେ ଶୀତଳ ପ୍ରସାଦ ଲାଗିହୋଇ ଆଲଟଚାମର ସେବା ସରିଗଲେ ଅଗ୍ନିଘରେ ନିଆଁ ଲାଗିବ । ଠାକୁରମାନଙ୍କୁ ବିମାନରେ ନେଇ ଅଗ୍ନି ଘରକୁ ସାତଥର ପରିକ୍ରମା କରାଯିବ । ସର୍ବଶେଷରେ ଉତ୍ସବ ପ୍ରତିମାମାନଙ୍କୁ ଶ୍ରୀମନ୍ଦିରର ଯଥାସ୍ଥାନରେ ନେଇ ସ୍ଥାପିତ କରାଯାଏ ।

ସେଥିର ପରଦିନ, ଅର୍ଥାତ୍ 'ଦୋଳପୂର୍ଣ୍ଣିମା' ଦିନ ଦିଅଁଙ୍କ ଅବକାଶ ସରିବା ପରେ ପୁଷ୍ପାଳକ ଚନ୍ଦନ ଲାଗି କରିବେ । ନୂଆ ଶାଢ଼ୀ ଓ ଖଣ୍ଡୁଆ

ଲାଗି ହେବେ ଏବଂ ଉତ୍ସବ ପ୍ରତିମା ଦୋଳଗୋବିନ୍ଦଙ୍କ 'ଖଇକୋରା' ଭୋଗ ସମାପନ ହେଲାପରେ ମହାଜନ ଠାକୁରଙ୍କୁ ନେଇ ସିଂହାସନ ଉପରେ ବିଜେ କରାଇବେ । ସେତେବେଳେ ପଣ୍ଡା 'ପଞ୍ଚୋପଚାର'ରେ ଭୋଗ ପୂଜା କରିବେ । ଏହାପରେ ପଣ୍ଡା ପ୍ରଭୁଙ୍କ ଆଜ୍ଞାମାଳ ଶ୍ରୀଅଙ୍ଗରୁ ଆଣିଥାଆନ୍ତି । ଦୁଇଠାକୁରାଣୀ ଓ ଦୋଳଗୋବିନ୍ଦ ତିନି ଉତ୍ସବ-ମୂର୍ତ୍ତିଙ୍କୁ ସାତଥର ସିଂହାସନ ପ୍ରଦକ୍ଷିଣ କରି ମହାଜନ ବେଢ଼ା ବୁଲାଇଲା ପରେ 'କଳାହାଟ-ଦ୍ୱାର' ଦେଇ 'ନାଟକଟା-ମଣ୍ଡପ' ଶିଟ ଉପରେ ବିଜେ କରାଇବେ । ପଣ୍ଡାମାନଙ୍କ ମହାସ୍ନାନ ବଢ଼ାଇ ଚନ୍ଦନଲାଗି ହେଲାପରେ ପାଟର ଯୋଡ଼ା-ଶାଢ଼ୀ ଲାଗିକରିବେ । ଏହି ଶାଢ଼ୀ ରାଘବଦାସ-ମଠରୁ ଆସିଥିବ । ମୃଦଙ୍ଗସ୍ତ ସେମାନଙ୍କ ଶୀତଳ ପ୍ରସାଦ ବାଣ୍ଟିଲାପରେ 'ପଞ୍ଚୋପଚାରରେ' ପୂଜା ସମାପନ କରିବେ ଓ 'ବନ୍ଦାପନା' ଚଳାଇବେ । ଶେଷରେ ମହାଜନ ସେମାନଙ୍କୁ ବିମାନରେ ବିଜେ କରାଇଲେ ବିମାନ ବଡ଼ୁମାନେ ବିମାନକୁ ୭ ଘେରା ଘଣ୍ଟ, କାହାଳୀ, ଛତା ସହ ବଡ଼ଦେଉଳ ପ୍ରଦକ୍ଷିଣ ବୁଲାଇ ଦୋଳବେଦୀଠାରେ ଉପସ୍ଥିତ କରାଇବେ । ସେଠାରେ ମଧ୍ୟ ବେଦୀ ପ୍ରଦକ୍ଷିଣ ୭ ଘେରା ଓ ବେଦୀ ଉପରେ ବନ୍ଧାଥିବା ଦୋଳିକୁ ୭ ଘେରା ବୁଲାଇ ସେହି ଦୋଳିରେ ବିଜେ କରାଇବେ । ସର୍ବସାଧାରଣଙ୍କ ପାଇଁ ଦୋଳ-ଗୋବିନ୍ଦଙ୍କ ଦର୍ଶନ ଉନ୍ମୁକ୍ତ ରହିବ । ଏହାପରେ ଘଣ୍ଟ, ଛତା, କାହାଳୀ ଉତ୍ସବ ସହ ଗୀ ଧୂପ (ସକାଳ, ଦ୍ୱିପ୍ରହର ଓ ସନ୍ଧ୍ୟା) ଚାଲିବ । 'ଷୋଡ଼ଶ ଉପଚାର'ରେ ପଣ୍ଡା ଭୋଗ ସମାପନ କରିବେ । ଏହାପରେ ବାହୁଡ଼ା-ବିଜୟ ବିଧାନ ଅନୁସାରେ ୭ ଘେରା ସିଂହାସନକୁ ପ୍ରଦକ୍ଷିଣ କରି ଭୋଗ ଓ ବନ୍ଦାପନା ସରିଲାପରେ ତିନି ଉତ୍ସବ-ପ୍ରତିମାଙ୍କୁ ବଡ଼ଦେଉଳର ଯଥା ସ୍ଥାନରେ ନେଇ ସଂସ୍ଥାପନ କରାଯିବ ।

ପରଦିନ, ଅର୍ଥାତ୍ 'ଚୈତ୍ରକୃଷ୍ଣ ପ୍ରତିପଦା' ତିଥିରେ, 'ହେରା' ଉତ୍ସବ ଆରମ୍ଭ ହୁଏ । ସେଦିନ ଲକ୍ଷ୍ମୀ, ସରସ୍ୱତୀ ଓ ମଦନମୋହନଙ୍କୁ ବିମାନରେ ସ୍ଥାପନ କରି ନରେନ୍ଦ୍ର ଚନ୍ଦନଠାକୁ ନିଆଯାଏ; ପୁଣି ଯଥାବିହିତ ଭାବେ ପଣ୍ଡା, ପଞ୍ଚୋପଚାରରେ ସେମାନଙ୍କ ଶୀତଳ-ଭୋଗ ପୂଜା କରନ୍ତି । ଏହାପରେ ଠାକୁର ଓ ଠାକୁରାଣୀଙ୍କୁ ବାହୁଡ଼ାବିଜେ କରାଇ, ଦୋଳ-ଗୋବିନ୍ଦ ସ୍ଥାପିତ ହୋଇଥିବା ଘରକୁ ନେଇ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସେଠାରେ ବିଜେ କରନ୍ତି । ତା'ପୂର୍ବରୁ ଭ୍ରମର ଆଳଟ ସହ ଠାକୁର ଓ ଠାକୁରାଣୀଙ୍କୁ ବନ୍ଦାପନା କରାଯାଇଥାଏ ।

'ଦୋଳମଣ୍ଡପ' ନାମରେ ପୁରୀର ଗୋଟିଏ ସାହିର ନାମକରଣ କରାଯାଇଛି । ସେଠାରେ ଗୋଟିଏ ମଣ୍ଡପ ପୂର୍ବେ ନିର୍ମିତ ହୋଇ ଦୋଳପୂର୍ଣ୍ଣିମା

ଉତ୍ସବ ବୋଧହୁଏ ସେଠାରେ ସମ୍ପନ୍ନ ହେଉଥିଲା; କିନ୍ତୁ ୧୨୩୦ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମ ବଡ଼ଦେଉଳରେ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠା ସମାପ୍ତ ହେଲାପରେ ଦୋଳୋତ୍ସବ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ମଣ୍ଡପ ବୋଧହୁଏ ବଡଦେଉଳ ନିକଟରେ ନିର୍ମିତ କଲେ । ସେଠାରେ 'ବସନ୍ତୋତ୍ସବ' ସମ୍ପନ୍ନ ହେଉଥିଲା । କାଳକ୍ରମେ ସେହି ମଣ୍ଡପଟି ଜୀର୍ଣ୍ଣ ହେବାରୁ ଖୋର୍ଦ୍ଧାରାଜା ବୀରକେଶରୀଦେବ ଖ୍ରୀ: ୧୭୩୭-୧୭୯୨)ଙ୍କ ଠାକୁରାଣୀ, ତାହା ପୁନଃନିର୍ମାଣ କରିଥିଲେ । ସେ ମଧ୍ୟ ବଡଦେଉଳର ରତ୍ନ-ସିଂହାସନ ନିର୍ମାଣ କରି ନିଜ ମୂର୍ତ୍ତି ସଙ୍ଗେ ବୀରକେଶରୀଙ୍କ ମୂର୍ତ୍ତି ପ୍ରଭୁଙ୍କ ସିଂହାସନ ତଳେ ଖୋଦିତ କରାଇଥିବା ଦେଖାଯାଏ । (*)

ବଡଦେଉଳ ନିକଟରେ ଥିବା ନୃସିଂହମନ୍ଦିର ଗାତ୍ରରେ ଖୋଦିତ ହୋଇଥିବା ଏକ ଶିଳାଲେଖରୁ ଜଣାଯାଇଛି ଯେ, 'ଗୋବିନ୍ଦ ଦୋଳ' (ଦୋଳୋତ୍ସବ) ମହାରାଜା ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରେ ମଧ୍ୟ ପୁରୁଷୋତ୍ତମଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଉଥିଲା ଓ ସେହି ପବିତ୍ର ଦିନ ଦେବତାଙ୍କ ଉଦ୍ଦେଶ୍ୟରେ ଭକ୍ତମାନେ ଦାନ ସମର୍ପଣ କରୁଥିଲେ । ସେହି ଅନୁଶାସନର ନିମ୍ନୋକ୍ତ ଶ୍ଳୋକରୁ ଜଣାଯାଇଛି, କୃଷ୍ଣପକ୍ଷ ଦ୍ୱିତୀୟା ତିଥିରେ ସେହି ଉତ୍ସବ ଦିନ ବୀପଦାନ ପାଇଁ ପାଞ୍ଚଟି ସ୍ୱର୍ଣ୍ଣମୁଦ୍ରା (ନିଷ୍କ) ଶ୍ରୀପୁରୁଷୋତ୍ତମଙ୍କ ଉଦ୍ଦେଶ୍ୟରେ ଜଣେ ଭକ୍ତ ଦାନ କରିଥିଲେ—

"ଶାକାବ୍ଦେ ବସୁ-ବାଣ-ଖେନ୍ଦୁଗଣିତେ
କୃଷ୍ଣ-ଦ୍ୱିତୀୟା ମୁଖେ,
ପ୍ରାଦାତ୍ ଶ୍ରୀପୁରୁଷୋତ୍ତମସ୍ୟ ଗୃଣବତ୍
ଗୋବିନ୍ଦ-ଦୋଲାଦିନେ ।" **

---

* ଲକ୍ଷ୍ମଣ ପଣ୍ଡାଙ୍କ ରିପୋର୍ଟ (ଶ୍ରୀମନ୍ଦିର ହସ୍ତଲିପି) 'ରତ୍ନ-ବେଦୀରେ ବିଜେ ହୋଇଥିବା ଠାକୁରମାନଙ୍କର ଦୈନିକ ନୀତି' ପୃ ୧୧୦-୧୧୨ ଦ୍ରଷ୍ଟବ୍ୟ ।

ମାଦଳାପାଞ୍ଜି ପୃଷ୍ଠା ୭୯-୮୦, ଶ୍ରୀକେଦାରନାଥ ମହାପାତ୍ରଙ୍କ 'ଖୁରୁଧା ଇତିହାସ' (୧୯୬୮), ପୃ. ୨୦୭ ଦେଖ ।

** Inscriptions of the temples of Puri and Origin of SriPuruṣottama—Jagannath, Vol. I, pt. I No. 12.

ଅର୍ଥାତ୍, ଶାକାବ୍ଦ ବସୁ (୮), ବାଣ (୫) ଖ (୦) ଇନ୍ଦୁ (୧)= ୧୦୫୮ (୧୧୩୬ ଖ୍ରୀଷ୍ଟାବ୍ଦ)ରେ କୃଷ୍ଣଦ୍ୱିତୀୟାତିଥି ଆରମ୍ଭରେ ଅନୁଷ୍ଠିତ 'ଗୋବିନ୍ଦ ଦୋଳାଦିନ କାମଦେବ ସୁଧୀ ନାମକ ଜଣେ ଭକ୍ତ ଶ୍ରୀପୁରୁଷୋତ୍ତମଙ୍କ ପାଇଁ ଦୀପଦାନ କରିଥିଲେ । ବୋଧହୁଏ 'ଗୋବିନ୍ଦଦୋଳ' ଏକ ସୁପ୍ରସିଦ୍ଧ 'ଉତ୍ସବ' ହୋଇଥିବାରୁ ଉପରୋକ୍ତ ଶ୍ଳୋକରେ ମାସର ନାମ ଦିଆଯାଇନାହିଁ । ଏପରି ସୁପ୍ରସିଦ୍ଧ ଉତ୍ସବ ପାଇଁ ଅଭିଲେଖରେ ମାସର ନାମ ଦିଆ ନଯିବା ଦର୍ଶିତ ରହିଛି । ଯଥା, ଭଞ୍ଜ-ବଂଶୀୟ ରାଜା ଶତ୍ରୁଭଞ୍ଜ ତାଙ୍କର ଗୋଟିଏ ଅନୁଶାସନରେ 'ଦେବୋତ୍ସବ ଦ୍ୱାଦଶୀ' ଅର୍ଥାତ୍ 'ଦେବ-ଉତ୍ଥାପନ ଦ୍ୱାଦଶୀ' ଉଲ୍ଲେଖ କରି ସେଥିରେ କାର୍ତ୍ତିକ ମାସର ନାମ ଦେଇ ନଥିଲେ । (*) ଏ ଦୃଷ୍ଟିରୁ ବିଗ୍ଭର କଲେ ଜଣାଯାଉଛି ଯେ, ''ଗୋବିନ୍ଦ ଦୋଳାଦିନ' ଅର୍ଥାତ୍ ଫାଲ୍‌ଗୁନ ମାସରେ ଅନୁଷ୍ଠିତ 'ଦୋଳଗୋବିନ୍ଦ' ଉତ୍ସବର ଉଲ୍ଲେଖ ନୃସିଂହ ମନ୍ଦିରସ୍ଥ ଶିଳାଲେଖରେ ଉଲ୍ଲେଖ କରାଯାଇଛି; କିନ୍ତୁ ଯେହି ଉତ୍ସବ କୃଷ୍ଣପକ୍ଷ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ହୋଇଥିବା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ । ଫାଲ୍‌ଗୁନ ମାସର ଶୁକ୍ଳ ଦଶମୀଠାରୁ ପୌର୍ଣ୍ଣମୀ ପର୍ଯ୍ୟନ୍ତ ଓଡ଼ିଶାରେ ଦୋଳଉତ୍ସବ ହୋଇଥାଏ । ତା'ପରେ ଚୈତ୍ରକୃଷ୍ଣ ପ୍ରତିପଦା ଦିନ ଶ୍ରୀମନ୍ଦିରରେ 'ହୋଲି' ଉତ୍ସବ ପାଳିତ ହୁଏ । ଓଡ଼ିଶାରେ 'ପଞ୍ଚଦୋଳ-ଉତ୍ସବ' ଚୈତ୍ର କୃଷ୍ଣ ପ୍ରତିପଦା ଠାରୁ ୫ ଦିନ ପାଳିତ ହେବାବିଧି ଅନୁସୃତ ହେଉଅଛି ।

ବୋଧହୁଏ ଖ୍ରୀ ଦ୍ୱାଦଶ ଶତାବ୍ଦୀରେ ଶ୍ରୀପୁରୁଷୋତ୍ତମଙ୍କ ଶ୍ରୀମନ୍ଦିରରେ 'ପଞ୍ଚ-ଦୋଳ-ଉତ୍ସବ' ମହାସମାରୋହରେ ପାଳିତ ହେଉଥିଲା । ସେଥିରେ ଦକ୍ଷିଣ ଭାରତରୁ କମ୍ପା କଳଙ୍ଗରୁ ସମାଗତ କାମଦେବ ସୁଧୀ ନାମକ ଜଣେ ଭକ୍ତ ଶ୍ରୀପୁରୁଷୋତ୍ତମଙ୍କ ପାଇଁ ଗୋଟିଏ 'ଅଖଣ୍ଡ-ଦୀପ' ଦାନ କରିଥିଲେ । ଦୋଳ-ପୂର୍ଣ୍ଣିମା ପରଦିନଠାରୁ ଅର୍ଥାତ୍ ଚୈତ୍ର-କୃଷ୍ଣ-ପ୍ରତିପଦାଠାରୁ ଆରମ୍ଭକରି ପଞ୍ଚମୀ ପର୍ଯ୍ୟନ୍ତ 'ପଞ୍ଚଦୋଳ' ଶ୍ରୀମନ୍ଦିରରେ ପାଳିତ ହେଉଥିବା ସମ୍ଭବ । ତେଲୁଗୁ-ପଞ୍ଜିକାରେ ଚାନ୍ଦ୍ରମାନର ମାସ 'ଅମାନ୍ତ' ପଦ୍ଧତିରେ ଗଣନା କରାଯାଏ ।

---

* Orissa Historical Research Journal, vol. IV, Nos. 3 & 4 pp. 67-67 f

ତେଣୁ ଓଡ଼ିଶାରେ 'ପଞ୍ଚଦୋଳ' ଉତ୍ସବ ଚୈତ୍ରମାସ କୃଷ୍ଣ-ପ୍ରତିପଦାଠାରୁ ଗଣା-ଯାଉଛି, ତାହା ଅନ୍ୟ ପ୍ରଦେଶରେ ଫାଲ୍‌ଗୁନ ମାସର ଦ୍ୱିତୀୟ ପକ୍ଷ (କୃଷ୍ଣ-ପକ୍ଷ) ପ୍ରତିପଦା ଅର୍ଥାତ୍ ସେହି ମାସର ଆରମ୍ଭ ତିଥି । ତାହାହିଁ 'ବସନ୍ତୋତ୍ସବ'ର ଆଦ୍ୟଦିନ ରୂପେ ଦକ୍ଷିଣ-ଭାରତରେ ପରିଚିତ । ସୁତରାଂ 'ପଞ୍ଚଦୋଳ-ଉତ୍ସବ'ର ପ୍ରବୃତ୍ତି ବୋଧହୁଏ ସେହି ଅମାନ୍ତ ମାସଗଣନାକୁ ଭିତ୍ତିକରି ଓଡ଼ିଶାରେ ପୂର୍ବ-କାଳରୁ ପ୍ରବର୍ତ୍ତିତ ହୋଇଥିଲା; କିନ୍ତୁ ଓଡ଼ିଶାର ପାଞ୍ଜିରେ ମାସ ଗଣନା ପକ୍ଷରି ପୂର୍ଣ୍ଣିମାନ୍ତ ହେବାଯୋଗୁଁ ପରବର୍ତ୍ତୀ କାଳରେ 'ପଞ୍ଚଦୋଳ'-ଉତ୍ସବ ଚୈତ୍ର-କୃଷ୍ଣ ପ୍ରତିପଦାଠାରୁ ବନ୍ଦ ହୋଇଗଲା । ବର୍ତ୍ତମାନ ପ୍ରଶ୍ନ ହେଉଛି, କେବେ ଓ କେଉଁ କାରଣରୁ ସେହି ପୂର୍ବ ପ୍ରଚଳିତ ଉତ୍ସବଟି ବନ୍ଦ ହୋଇଥିବା ସମ୍ଭବ ?

ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁପରେ ବଙ୍ଗର ସୁଲତାନ୍ ତଥା କଳା ପାହାଡ଼ର ଉପଦ୍ରବ ହେତୁ ବହୁକାଳ ପର୍ଯ୍ୟନ୍ତ ପୁଣ୍ୟ ଶ୍ରୀମନ୍ଦିର ଦେବତାଶୂନ୍ୟ ହୋଇ ରହିଲେ । ଖ୍ରୀ: ୧୫୭୬ ସାଲରେ ବଙ୍ଗର ସୁଲତାନ୍ ଦାଉଦ୍‌ଖାଁଙ୍କ ମୃତ୍ୟୁପରେ ଗଜପତି ରାମଚନ୍ଦ୍ରଦେବ (୧ମ) ଶ୍ରୀମନ୍ଦିରରେ ପୂର୍ବଶ୍ରୀ ଫେରାଇବାକୁ ଯାଇ ଯେତେବେଳେ ସମସ୍ତ ନୀତି, ନିୟମ ସଙ୍ଗେ ଭୋଗ-ରାଗ ଓ ଉତ୍ସବାଦି ପ୍ରବର୍ତ୍ତନ କଲେ, ସେତେବେଳେ ଓଡ଼ିଶାରେ ପ୍ରଚଳିତ ପଞ୍ଜିକା ଓ ବ୍ରତାଦି ଉତ୍ସବଗୁଡ଼ିକୁ ଭିତ୍ତିକରି ମହା-ସମାରୋହରେ 'ରଥଯାତ୍ରା' ସମେତ ଅନ୍ୟାନ୍ୟ ଉତ୍ସବମାନ ଶ୍ରୀମନ୍ଦିରରେ ପାଳିତ ହେଲା । ସେଥି ମଧ୍ୟରେ 'ଦୋଳ-ପୂର୍ଣ୍ଣିମା'ରେ 'ବସନ୍ତୋତ୍ସବ' ତଥା ଚନ୍ଦନଯାତ୍ରା ଦୁଇଟି ଋତୁଭିତ୍ତିକ ଉତ୍ସବ ପ୍ରଧାନ କହିଲେ ଚଳେ । ସୁପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ମହୋତ୍ସବକୁ ଭିତ୍ତିକରି'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ଅଙ୍କିତ ଗଜପତି ରାମଚନ୍ଦ୍ର ଦେବ (୧ମ)ଙ୍କ ନାମରେ ଯେପରି ଗୋଟିଏ ସଂସ୍କୃତ-ନାଟକ ରଚିତ ହୋଇଥିଲା, ସେପରି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଅନୁଷ୍ଠିତ ଦୋଳୋତ୍ସବକୁ ଭିତ୍ତିକରି 'ବସନ୍ତ-ମହୋତ୍ସବ-ମହା-କାବ୍ୟମ୍' ନାମକ ଗୋଟିଏ ସଂସ୍କୃତ କାବ୍ୟ କେହି ଜଣେ ପଣ୍ଡିତ ରଚନା କରିଥିଲେ । ସେଥିରୁ ଗୋଟିଏ ଶ୍ଳୋକ ନିମ୍ନରେ ଉଦ୍ଧୃତ ହେଲା—

"ସ୍ୱବିକଳ ଧର୍ମତଳୋଽଖିଳବିପକ୍ଷକକ୍ଷାନଳୋ,
ଜରନ୍ତ୍ରବ ଧର୍ମସ୍ଥୁର-ପ୍ରକରରକ୍ଷଣେ-ଦକ୍ଷିଣଃ ।
ଦସ୍ମାନଧି ରୁଦ୍ରାମ୍ବୁଧୋଽଜନି ସର୍ମଚନ୍ଦ୍ରାଭିଧୋ ।
ବଧୋଃ-ପଦ ହରେର୍ବ୍ରହ୍ମ ଦ୍ୱିଜାସ୍ୱଦର୍ଦ୍ଧଚନ୍ଦ୍ରୋ ନୃପଃ । (*)

ଗଜପତି ରାମଚନ୍ଦ୍ର ଦେବଙ୍କ ପ୍ରଶସ୍ତି ଏଥିରେ ଦିଆଯାଇଥିଲେ ସୁଦ୍ଧା ଏହି ମହାକାବ୍ୟଟି ପରବର୍ତ୍ତୀ କାଳର ରଚନା ବୋଲି ଅନୁମିତ ହୁଏ । ତଥାପି 'ବସନ୍ତୋତ୍ସବ' (ଦୋଳୋତ୍ସବ)ର ବୈଶିଷ୍ଟ୍ୟ ଏବଂ ପୁରୀରେ ସେଥିର ଆଡ଼ମ୍ବର—ବିଶିଷ୍ଟ ଅନୁଷ୍ଠାନ ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ।



* ଓଡ଼ିଶା ମ୍ୟୁଜିୟମ୍ ପୋଥି ସଂଗ୍ରହାଳୟରେ ସଂରକ୍ଷିତ ଏକ ଅପ୍ରକାଶିତ ତାଳପତ୍ର ପୋଥିରୁ ସଂଗୃହୀତ (କେଦାରନାଥ ମହାପାତ୍ର, "ଖୁର୍ଦ୍ଧା-ଇତିହାସ" ପୃଷ୍ଠା ୧୬-୧୭ ଦ୍ରଷ୍ଟବ୍ୟ)